

ନନ୍ଦନକାନନରେ ବନ ମହୋତ୍ସବ ଉପଲକ୍ଷେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଚାରାରୋପଣ କରୁଛନ୍ତି



ଜେଭିଅର୍ ପରିଚାଳନା ପ୍ରତିଷ୍ଠାନର ସମାବର୍ତ୍ତନ ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ
ଉଦ୍‌ବୋଧନ

# ଉତ୍କଳ ପ୍ରସଙ୍ଗ

ବୈଶାଖ ୧୯୧୨ ଶକାବ୍ଦ ୪୬ ଭାଗ ୧୦ମ ସଂଖ୍ୟା ମେ ୧୯୯୦



**ପ୍ରକାଶନ :** ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

*Type setting by Phototype Setter process*

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ଓଡ଼ିଶା ସରକାରଙ୍କ ବଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେଭଳି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।

"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ ସ୍ଥଳରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ସୂଚୀ



# ମଇ ଦିବସ ଉପଲକ୍ଷେ ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା

ପବିତ୍ର ମଇ ଦିବସରେ ଓଡ଼ିଶାର ଚାଷୀ, ମୂଲିଆ, କଳକାରଖାନା, ଶିଳ୍ପ ଓ ଖଣିରେ କାମ କରୁଥିବା ପ୍ରିୟ ଭାଇ ଭଉଣୀମାନଙ୍କୁ ମୋର ହାର୍ଦ୍ଦିକ ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି । ଗରିବ ଶ୍ରମିକମାନଙ୍କୁ ଉଚିତ ମଜୁରି ପ୍ରଦାନ କରିବା ନିମନ୍ତେ ମୋ ସରକାର ସଂକଳ୍ପବଦ୍ଧ । ସର୍ବନିମ୍ନ ମଜୁରି ପ୍ରଦାନରେ ଅବହେଳା କରିବା ଅର୍ଥ ସେମାନଙ୍କର ଦାନାପାଣିର ହକ୍ ଛଡ଼ାଇ ନେବା । ମୋ ସରକାର ଏଥି ନିମନ୍ତେ ଦୃଢ଼ ପଦକ୍ଷେପ ଗ୍ରହଣ କରୁଛି ଏବଂ ତା'ର ପ୍ରଥମ ପଦକ୍ଷେପ ସ୍ୱରୂପ ବହୁ ଦିନରୁ ବୃଦ୍ଧି ହୋଇ ନଥିବା ସର୍ବନିମ୍ନ ମଜୁରିକୁ ବର୍ଦ୍ଧିତ ଖାଉଟି ମୂଲ୍ୟସୂଚୀକୁ ଆଖି ଆଗରେ ରଖି ବୃଦ୍ଧି କରିବା ନିମନ୍ତେ ବ୍ୟବସ୍ଥା ଗ୍ରହଣ କରାଯାଇଛି । ଅସଂଗଠିତ ଶ୍ରମିକମାନେ ଏହାଦ୍ୱାରା ବିଶେଷ ଉପକୃତ ହୋଇ ପାରିବେ । ଏହା ସଙ୍ଗେ ସଙ୍ଗେ କଳକାରଖାନା, ଶିଳ୍ପ ତଥା ଖଣି ଶ୍ରମିକମାନଙ୍କର ସାମାଜିକ ସୁରକ୍ଷା ନିମନ୍ତେ ବିଧିବଦ୍ଧ ଯୋଜନା ପ୍ରସ୍ତୁତ କରିବା ସଙ୍ଗେ ସଙ୍ଗେ ଶିଳ୍ପ ପରିଚାଳନା କ୍ଷେତ୍ରରେ ଶ୍ରମିକଙ୍କ ପ୍ରତ୍ୟକ୍ଷ ଅଂଶ ଗ୍ରହଣ ନିମନ୍ତେ ଆଇନ ପ୍ରଣୟନ ବ୍ୟବସ୍ଥା ତ୍ୱରାନ୍ୱିତ କରାଯାଉଛି । ଏହା ଫଳରେ, ଶ୍ରମିକମାନଙ୍କର ଗୌରବ ତଥା ଦାୟିତ୍ୱ ବୃଦ୍ଧି ପାଇବ ଏବଂ ଶିଳ୍ପର ହାନିଲାଭରେ ସେମାନେ ଅଂଶୀଦାର ହୋଇପାରିବେ ।

ଆଜିର ଏହି ଐତିହାସିକ ଶ୍ରମିକ ଦିବସରେ ମୋର ପ୍ରିୟ ଶ୍ରମିକ ଭାଇ ଭଉଣୀମାନଙ୍କୁ ମୁଁ ପୁନର୍ବାର ଆନ୍ତରିକ ଶୁଭକାମନା ଜଣାଉଛି ।

ବିଜୁ ପଟ୍‌ନାୟକ



## ମଇ ଦିବସ ଉପଲକ୍ଷେ
## ରାଷ୍ଟ୍ରମନ୍ତ୍ରୀଙ୍କ ବାର୍ତ୍ତା

"ମଇ ଦିବସ ଶ୍ରମିକମାନଙ୍କର ଏକ ପବିତ୍ର ଦିବସ । ଆଜିର ଏହି ଶୁଭ ଦିବସରେ ଆମ ଦେଶର ଖଟିଖିଆ ମେହନତି ମଣିଷଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି । ଆମ ଦେଶର ଅର୍ଥନୀତି ମୁଖ୍ୟତଃ ଶ୍ରମ ସର୍ବସ୍ୱ ହୋଇଥିବାରୁ ଏ ଦେଶ ଗଠନରେ ସେମାନଙ୍କର ଏକ ଗୁରୁ ଭୂମିକା ରହିଛି । ଆମ ଦେଶର ଦୁଇ ତୃତୀୟାଂଶ ଶ୍ରମିକ ଗାଁ ଗହଳିରେ ରହୁଛନ୍ତି ଏବଂ ସେମାନେ ମୁଖ୍ୟତଃ ଅସଂଗଠିତ । ସେମାନଙ୍କୁ ନ୍ୟାଯ୍ୟ ମଜୁରି ପ୍ରଦାନ କରିବା ନିମନ୍ତେ ଆମ ସରକାର ସଂକଳ୍ପବଦ୍ଧ । ସେମାନେ ନିଜର ଅଧିକାର ଏବଂ କର୍ତ୍ତବ୍ୟ ବିଷୟରେ ସଚେତନ ହେବା ନିମନ୍ତେ ଆମ ଦେଶର ଶ୍ରମନୀତିକୁ ଗ୍ରାମାଭିମୁଖୀ କରାଯାଉଅଛି । ଶିଳ୍ପ ପରିଚାଳନାରେ ଶ୍ରମିକମାନେ ନିଜର ଉଚିତ ସ୍ଥାନ ପାଇବା ନିମନ୍ତେ ଦୀର୍ଘ ଦିନ ଧରି ସଂଗ୍ରାମ କରି ଆସୁଥିଲେ । ଆମେ ବର୍ତ୍ତମାନ ଏଥି ନିମନ୍ତେ ବିଧିବଦ୍ଧ ଭାବେ ଏକ ଆଇନ ପ୍ରଣୟନ ପାଇଁ ଉଦ୍ୟମ କରୁଛୁ । ଏହା ଫଳରେ ଶ୍ରମିକ ଏବଂ ମାଲିକଙ୍କ ମଧ୍ୟରେ ରହିଥିବା ବିଦ୍ୱେଷ କ୍ରମେ ହ୍ରାସ ପାଇବ । ଶ୍ରମିକମାନଙ୍କର ନୂତନ ପ୍ରଭାତ ଆସନ୍ନ । ମଇ ଦିବସ ପ୍ରଭାତରେ ପୁଣି ସେମାନଙ୍କୁ ଶୁଭେଚ୍ଛା ଜଣାଇ ନିଜକୁ ଗୌରବାନ୍ୱିତ ମନେ କରୁଛି ।"

ଶ୍ରୀ ପ୍ରଫୁଲ୍ଲ ସାମଲ
ଶ୍ରମ ଓ ନିଯୋଜନ ରାଷ୍ଟ୍ରମନ୍ତ୍ରୀ

• ବସୁଧୈବ କୁଟୁମ୍ବକମ୍

# ତୃତୀୟ ବିଶ୍ୱରେ ଦାରିଦ୍ର୍ୟର ହେତୁ

ପ୍ରଫେସର୍ ଅବଦୁସ୍ ସଲାମ୍
ଭାଷାନ୍ତର—ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ

ତୃତୀୟ ବିଶ୍ୱ ଅନ୍ତର୍ଭୁକ୍ତ ରାଷ୍ଟ୍ରମାନଙ୍କର ଏବେ ମାତ୍ର ଚେତା ପଶୁଛି । ଫଳେ ସେମାନଙ୍କର ହୃଦ୍‌ବୋଧ ହେଉଛି ଯେ ଉତ୍ତର ଗୋଲାର୍ଦ୍ଧ ଓ ଦକ୍ଷିଣ ଗୋଲାର୍ଦ୍ଧର ପାର୍ଥକ୍ୟ ପାଇଁ ବିଜ୍ଞାନ ଓ ଶିଳ୍ପବିଦ୍ୟା ହିଁ ମୁଖ୍ୟତଃ ଦାୟୀ । କୌଣସି ଦେଶର ଜୀବନଧାରଣର ମାନ ବିଜ୍ଞାନ ଓ ଶିଳ୍ପଜ୍ଞାନ ଉପରେ ହିଁ ନିର୍ଭରଶୀଳ । ଏହି ପରିପ୍ରେକ୍ଷୀରେ ଦେଖିଲେ ଉତ୍ତର ଓ ଦକ୍ଷିଣ ଗୋଲାର୍ଦ୍ଧର ଦେଶମାନଙ୍କ ମଧ୍ୟରେ ରହିଥିବା କ୍ରମବର୍ଦ୍ଧିଷ୍ଣୁ ଆର୍ଥିକ ତାରତମ୍ୟ ହିଁ ବାସ୍ତବରେ "ବିଜ୍ଞାନର ବ୍ୟବଧାନ" ।

"ନେଚର୍" ଏକ ବିଜ୍ଞାନ ପତ୍ରିକା । ଏହି ପତ୍ରିକାଟିରେ ଉଚ୍ଚକୋଟୀର ଗବେଷଣାମୂଳକ ପ୍ରବନ୍ଧମାନ ପ୍ରକାଶ ପାଇଥାଏ । କିନ୍ତୁ "ନେଚର୍"ର ପୃଷ୍ଠା ଓଲଟାଇଲେ ହିଁ ଆପଣମାନେ "ବିଜ୍ଞାନର ବ୍ୟବଧାନ" ବିଷୟରେ ସମ୍ୟକ ଧାରଣା କରି ପାରିବେ । "ନେଚର୍"ରେ ପ୍ରକାଶ ପାଉଥିବା ପ୍ରବନ୍ଧମାନଙ୍କ ମଧ୍ୟରୁ ଶତକଡ଼ା ମାତ୍ର ଦୁଇ କିମ୍ବା ତା'ଠାରୁ କମ୍ ସଂଖ୍ୟକ ଲେଖାର ଲେଖକ ହେଉଛନ୍ତି ଦକ୍ଷିଣ ଗୋଲାର୍ଦ୍ଧର ବୈଜ୍ଞାନିକ । ଏଥିରୁ ତୃତୀୟ ବିଶ୍ୱର ବୈଜ୍ଞାନିକ ବ୍ୟୁତ୍ପତ୍ତି ସମ୍ବନ୍ଧରେ କ'ଣ କିଛି ଆଭାସ ମିଳୁ ନାହିଁ ?

ବୈଜ୍ଞାନିକ ଗବେଷଣା ଓ ବିକାଶ ପାଇଁ ଦକ୍ଷିଣର ରାଷ୍ଟ୍ରମାନେ ଯେଉଁ ଅର୍ଥ ବରାଦ କରିଥାନ୍ତି, ସେଥିପ୍ରତି ମୁଁ ଆପଣଙ୍କର ଦୃଷ୍ଟି ଆକର୍ଷଣ କରୁଛି । ଉନ୍ନତ ଓ ଅନୁନ୍ନତ ଉଭୟ ଗୋଷ୍ଠୀର ରାଷ୍ଟ୍ରମାନଙ୍କର ଜାତୀୟ ଆୟର ଶତକଡ଼ା ୫-୬ ଭାଗ ପ୍ରତିରକ୍ଷା ଉଦ୍ଦେଶ୍ୟରେ ବ୍ୟୟ କରିଥାନ୍ତି । ଶିକ୍ଷାର ବିକାଶ ପାଇଁ ଉଦ୍ଦିଷ୍ଟ ଅର୍ଥ ବରାଦରେ ମଧ୍ୟ ବିଶେଷ ତାରତମ୍ୟ ପରିଲକ୍ଷିତ ହୁଏ ନାହିଁ । ଶିଳ୍ପୋନ୍ନତ ଦେଶମାନଙ୍କରେ ଏହା ଶତକଡ଼ା ୫-୬ ଭାଗ ଓ ବିକାଶଶୀଳ ଦେଶମାନଙ୍କରେ ଏହା ଶତକଡ଼ା ୩-୪ ଭାଗ । ସ୍ୱାସ୍ଥ୍ୟ ଶିକ୍ଷା ତଥା ସ୍ୱାସ୍ଥ୍ୟ ବ୍ୟବସ୍ଥା ନିମନ୍ତେ ଉନ୍ନତ ଓ ଅନୁନ୍ନତ ରାଷ୍ଟ୍ରମାନେ ଜାତୀୟ ଆୟର ଯଥାକ୍ରମେ ୪-୮ ଓ ୧-୫ ପ୍ରତିଶତ ଅର୍ଥ ଖର୍ଚ୍ଚ କରିଥାନ୍ତି । କିନ୍ତୁ ବିଜ୍ଞାନ ଓ ଶିଳ୍ପ ଜ୍ଞାନର ଅବଦାନ ସମୀକ୍ଷା କଲେ ନିରାଶ ହେବାକୁ ହୁଏ । ଗବେଷଣା ଓ ବିକାଶ ପାଇଁ ଉନ୍ନତ ରାଷ୍ଟ୍ରମାନେ ଜାତୀୟ ଆୟର ୨ରୁ ୨-୫ ପ୍ରତିଶତ ଅର୍ଥ ବ୍ୟୟ କରୁଥିବା ବେଳେ ବିକାଶଶୀଳ ଦେଶମାନେ ସେମାନଙ୍କର ଜାତୀୟ ଆୟର ମାତ୍ର ୦-୨ ପ୍ରତିଶତ ଅର୍ଥ ବ୍ୟୟ କରୁଛନ୍ତି । ଶିଳ୍ପୋନ୍ନତ ଦେଶମାନେ ବିଜ୍ଞାନର ପୃଷ୍ଠପୋଷକତା ପାଇଁ ୧୦ରୁ ୧୨ ଗୁଣ ଅଧିକ ଅର୍ଥ ବିନିଯୋଗ କରୁଥିବା ତଥ୍ୟ ତୃତୀୟ ବିଶ୍ୱ ବିଜ୍ଞାନ ଓ ଟେକ୍‌ନୋଲୋଜିର ବିକାଶ ପ୍ରତି ଆଦୌ ଗୁରୁତ୍ୱ ଆରୋପ କରୁ ନଥିବା ବିଷୟରେ ସୂଚାଇ ଦେଉଛି । କିନ୍ତୁ ଏଭଳି ଅସମତାର ହେତୁ କ'ଣ ?

## ସାମ୍ପ୍ରତିକ ଅସମତା :

ଉତ୍ତର ଓ ଦକ୍ଷିଣ ଗୋଲାର୍ଦ୍ଧ ମଧ୍ୟରେ ରହିଥିବା ଏହି ଅସମତା ତ ଗତ କେଇ ଦଶନ୍ଧି ମଧ୍ୟରେ ମାତ୍ର ଉଦ୍ଭବ ହୋଇଛି । ଉଦାହରଣ ସ୍ୱରୂପ, ଚୀନ୍ ଦେଶରେ ଖ୍ରୀଷ୍ଟଜନ୍ମ ପୂର୍ବରୁ ବିଜ୍ଞାନର ଯଥେଷ୍ଟ ବିକାଶ ଘଟିଥିଲା । ପ୍ରାୟ ୧୬୦୦ ମସିହା ପର୍ଯ୍ୟନ୍ତ ଚୀନ୍ ହିଁ ସାରା ବିଶ୍ୱରେ ଶିଳ୍ପଜ୍ଞାନର କ୍ଷେତ୍ରରେ ଅଗ୍ରଣୀ ଥିଲା । ଚୀନାମାଟିର ପାତ୍ର ପ୍ରସ୍ତୁତ କରିବା, କାଗଜ ତିଆରି କରିବା, ମୁଦ୍ରାଯନ୍ତ୍ର ପ୍ରଚଳନ କରିବା, ରେଶମ ବସ୍ତ୍ର ବୟନ କରିବା, ଶକ୍ତିଶାଳୀ ଭାତି ଏବଂ ପମ୍ପର ପ୍ରଚଳନ କରିବା, ଯନ୍ତ୍ରଘଡ଼ି ଉଦ୍ଭାବନ କରିବା ଏବଂ ଅନ୍ୟ ବହୁ ବିଭିନ୍ନ ଧରଣର ଯାନ୍ତ୍ରିକ କୌଶଳ ଅବଲମ୍ବନ କରିବାରେ ଚୀନ୍ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କୁ ବଳି ଯାଇଥିଲା । ଚୀନାମାନେ ବାରୁଦ ଉଦ୍ଭାବନ କରିବାରେ ମଧ୍ୟ ସଫଳ ହୋଇ ପାରିଥିଲେ । ମାନବ ସେବାରେ ଶିଳ୍ପ ବିଦ୍ୟାର ପ୍ରୟୋଗ କରିବାରେ ଏହା ହିଁ ଥିଲା କନ୍‌ଫ୍ୟୁସିଆନ୍ ପରମ୍ପରାର ଏକ ଅଂଶ ବିଶେଷ ।

କେବଳ ଯେ ଶିଳ୍ପ ବିଦ୍ୟା କ୍ଷେତ୍ରରେ ଏଭଳି ବିକାଶ ସାଧିତ ହୋଇଥିଲା, ତାହା ନୁହେଁ; ଏକ ବିଜ୍ଞାନ ସମ୍ମତ ଦାର୍ଶନିକ ଚିନ୍ତାଧାରାର ମଧ୍ୟ ଉନ୍ମେଷ ଘଟିଥିଲା ଚୀନ୍‌ରେ । ତାହାକୁ "ଟାଓଇଜମ୍" ବୋଲି କୁହାଯାଉଛି । ଚୀନ୍ ଦେଶରେ ବୀଜଗଣିତର ଅଭୂତପୂର୍ବ ବିକାଶ ଘଟିଥିଲା । ଚୀନା ଗଣିତଜ୍ଞମାନେ ଋଣାତ୍ମକ ରାଶି ସହ ପରିଚିତ ଥିଲେ । ସେମାନେ ସୌର କଳଙ୍କ ଓ ସୁପର୍ ନୋଭା ବିଷୟରେ ଅବଗତ ଥିଲେ । ଚୀନାମାନଙ୍କ ଦ୍ୱାରା ସୁପର୍ ନୋଭା ସମ୍ବନ୍ଧୀୟ ୧୦୦୬ ଓ ୧୫୭୨ ମସିହାରେ ପ୍ରଦତ୍ତ ତଥ୍ୟ ବିଶ୍ୱର ପ୍ରଥମ ପ୍ରାମାଣିକ ତଥ୍ୟ ବୋଲି ସ୍ୱୀକୃତ । ତାହା ଛଡ଼ା ଖ୍ରୀଷ୍ଟପୂର୍ବ ୬୧୩ରୁ ୧୬୨୧ ଖ୍ରୀଷ୍ଟାବ୍ଦ ମଧ୍ୟରେ ସେମାନେ ଧୂମକେତୁ ସମ୍ବନ୍ଧରେ ଏକ ପୂର୍ଣ୍ଣାଙ୍ଗ ତାଲିକା ପ୍ରସ୍ତୁତ କରିବାକୁ ସକ୍ଷମ ହୋଇଥିଲେ ।

ମୃତ୍ତିକା ବିଜ୍ଞାନ ସମ୍ବନ୍ଧରେ ମଧ୍ୟ ସେମାନଙ୍କର ବ୍ୟୁତ୍ପତ୍ତି କିଛି କମ୍ ନଥିଲା । ଜୀବାଣୁର ପ୍ରକୃତି ସମ୍ବନ୍ଧରେ ସେମାନଙ୍କର ଯଥେଷ୍ଟ ଜ୍ଞାନ

ଥିଲା । ଭବିଷ୍ୟତରେ ଭୂମିକମ୍ପ ସମ୍ବନ୍ଧରେ ସେମାନେ ଆଗୁଆ ସନ୍ଦେଶ ଦେବାରେ ସକ୍ଷମ ହୋଇ ପାରୁଥିଲେ । ରସାୟନ ବିଦ୍ୟାରେ ସେମାନେ ଥିଲେ ବେଶ୍ ପାରଙ୍ଗମ । ବସ୍ତୁର ରୂପାନ୍ତର ପରିବର୍ତ୍ତେ ବସ୍ତୁର ଅକ୍ଷୟତ୍ୱ ପ୍ରତିପାଦନ କରିବାରେ ସେମାନଙ୍କର ପ୍ରଚେଷ୍ଟା ଅବ୍ୟାହତ ରହିଥିଲା । ପାକଦୋଳ ମାଉଲୁ ଫସଲର ସଂରକ୍ଷଣ ପାଇଁ ସେମାନେ କୀଟପତଙ୍ଗ–ମାନଙ୍କୁ ବ୍ୟବହାର କରୁଥିବାର ପ୍ରମାଣ ମିଳିଛି । ଚୀନ୍ ଦେଶରେ ହିଁ ପ୍ରଥମେ ଚୁମ୍ବକ ଆବିଷ୍କୃତ ହୋଇଥିଲା ।

ତୃତୀୟ ବିଶ୍ୱର ଅନ୍ୟ ରାଷ୍ଟ୍ରମାନେ ଯେ ସେତେବେଳେ ବିଜ୍ଞାନ ଓ ଶିଳ୍ପ ବିଦ୍ୟା କ୍ଷେତ୍ରରେ ପଛରେ ପଡ଼ି ଯାଇଥିଲେ, ତାହା ନୁହେଁ । ଆପଣମାନେ ହୁଏତ ଜର୍ଜ ସାର୍ଟନ୍‌ଙ୍କ ନାଁ ଶୁଣିଥିବେ । ସେ ହେଉଛନ୍ତି "ବିଜ୍ଞାନର ଇତିହାସ" ଶୀର୍ଷକ ପୁସ୍ତକର ପ୍ରଣେତା । ପାଞ୍ଚଟି ଖଣ୍ଡରେ ସମ୍ପାଦିତ "ବିଜ୍ଞାନର ଇତିହାସ" ଏକ ଅକ୍ଷୟ କୀର୍ତ୍ତି । ବିଭିନ୍ନ ସମୟରେ ଲାଭ ହୋଇଥିବା ବିଜ୍ଞାନର ସଫଳତାକୁ ଜର୍ଜ ସାର୍ଟନ୍ ବିଭିନ୍ନ ଯୁଗରେ ବର୍ଣ୍ଣନା କରିଛନ୍ତି । ପ୍ରତି ଯୁଗର ବ୍ୟାପ୍ତି ମାତ୍ର ପଚାଶ ବର୍ଷ । ଏହିଭଳି ଗଠିତ ହୋଇଥିବା ପ୍ରତି ଅର୍ଦ୍ଧ ଶତାବ୍ଦୀ ସେତେବେଳକାର ମୁଖ୍ୟ ବୈଜ୍ଞାନିକଙ୍କ ନାମରେ ନାମିତ । ଯେପରିକି ଖ୍ରୀଷ୍ଟପୂର୍ବ ୪୫୦ରୁ ୪୦୦ – ଏହି ଅର୍ଦ୍ଧ ଶତାବ୍ଦୀକୁ ସାର୍ଟନ୍ "ପ୍ଲାଟୋ ଯୁଗ" ନାମରେ ଅଭିହିତ କରିଛନ୍ତି । ଏହାର ପରବର୍ତ୍ତୀ ଅର୍ଦ୍ଧ ଶତକଗୁଡ଼ିକ କ୍ରମାନ୍ୱୟରେ ଆରିଷ୍ଟୋଟଲ୍, ୟୁକ୍ଲିଡ୍, ଆର୍କିମେଡିସ୍ ଯୁଗ ନାମରେ ନାମିତ ।

୬୦୦ରୁ ୬୫୦ ଖ୍ରୀଷ୍ଟାବ୍ଦର ବ୍ୟବଧାନ ଚୀନର ହିଉଏନ୍ ସାଙ୍ଗ୍ (Hsciun Tsang) ଓ ଭାରତୀୟ ଗଣିତଜ୍ଞ ବ୍ରହ୍ମଗୁପ୍ତ ଉଭୟଙ୍କ ନାମାନୁସାରେ ନାମିତ । ୬୫୦ରୁ ୭୦୦ ଖ୍ରୀଷ୍ଟାବ୍ଦକୁ ଆଇ–ସିଙ୍ଗ୍ (I-Ching) ଯୁଗ ଓ ପରବର୍ତ୍ତୀ ଯୁଗଗୁଡ଼ିକ ଜବିର୍, ଖ୍ୱାରଜମି, ରାଜି, ମାସୁଦି, ୱାଫା, ବିରୁଣୀ, ଆବିସିନା ତଥା ଓମର୍ ଖାୟାମ୍ ଯୁଗ ନାମରେ ପରିଚିତ । ତେଣୁ ଚୀନା, ହିନ୍ଦୁ, ଆରବୀ, ପାର୍ସୀ, ତୁର୍କ ଏବଂ ଆଫଗାନ୍, ତୃତୀୟବିଶ୍ୱର କୌଣସି ଜାତି ଏଥିରୁ ବାଦ୍ ପଡ଼ି ନାହାନ୍ତି । ଦୀର୍ଘ ୪୫୦ ବର୍ଷ ଧରି ତୃତୀୟ ବିଶ୍ୱର ମନୀଷୀମାନେ ଯେ ବିଜ୍ଞାନର ବିକାଶ ଓ ପୃଷ୍ଠପୋଷକତା କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ, ଇତିହାସ ହିଁ ତା'ର ସାକ୍ଷୀ ।

୧୧୦୦ ମସିହା ପରେ ହିଁ ତାଲିକାରେ ପାଶ୍ଚାତ୍ୟ ବୈଜ୍ଞାନିକମାନଙ୍କର ନାମ ସ୍ଥାନ ପାଇଲା । କ୍ରେମୋନାର୍ ଜେରାର୍ଡ, ରୋଜର୍ ବେକନ୍‌ଙ୍କ ସହ ତୃତୀୟ ବିଶ୍ୱର ଇବନ ରସଦ୍ ଆଭେରୋସ୍‌ରୋଦ୍ ଏବଂ, ତୁସି ଏକତ୍ର ହୋଇ ଏହି ସମ୍ମାନର ଅଧିକାରୀ ହୋଇଥିଲେ ।

କିନ୍ତୁ କେହି ହେଲେ ଆଫ୍ରିକାର ବୈଜ୍ଞାନିକ ପ୍ରଗତି ଓ ବୈଜ୍ଞାନିକ ସୃଜନଶୀଳତାର ଇତିହାସ ପ୍ରତି ବିଶେଷ ଧ୍ୟାନ ଦେଇ ନାହାନ୍ତି । ଏପରିକି କେନ୍ୟାର ମୂଳ ଅଧିବାସୀ "ମାସ୍ୱା" ଏବଂ "ଆବ୍‌ବେବ୍" ସମ୍ପ୍ରଦାୟ ଯେ ନିଜ ପ୍ରଚେଷ୍ଟାରେ "ଶୂନ୍ୟ"ର ଉଦ୍ଭାବନ କରି ପାରିଥିଲେ, ଚନ୍ଦ୍ର ଓ ସୂର୍ଯ୍ୟର ଗତିବିଧି ସଂପର୍କୀୟ କ୍ୟାଲେଣ୍ଡର୍ ପ୍ରସ୍ତୁତ କରି ପାରିଥିଲେ, ବ୍ୟବହାରୋପଯୋଗୀ ବୃକ୍ଷଲତାମାନଙ୍କର ଅନନ୍ୟ ଔଷଧ ଗୁଣ ସମ୍ବନ୍ଧରେ ଅବଗତ ଥିଲେ, ତାହା ବିଶେଷ ଭାବରେ ସ୍ୱୀକୃତି ପାଉନାହିଁ । ସେମାନଙ୍କର ଏହି ଅବଦାନକୁ କ'ଣ ବିଜ୍ଞାନ ଓ ଟେକ୍‌ନୋଲୋଜିର ଉଲ୍ଲେଖଯୋଗ୍ୟ ସଫଳତାର ମାନ୍ୟତା ମିଳିବ ନାହିଁ ?

ଚକ ଘୁରିଗଲା । ୧୬୦୦ ମସିହା ପରେ ତୃତୀୟ ବିଶ୍ୱରେ ବିଜ୍ଞାନର ବିକାଶ ପ୍ରକ୍ରିୟାରେ ଭଟ୍ଟା ପଡ଼ି ଆସିଲା । ୧୯୫୦ ମସିହାରେ ଚନ୍ଦ୍ରଶେଖର ଭେଙ୍କଟରମଣଙ୍କ ନାତି ସୁବ୍ରମଣ୍ୟନ ଚନ୍ଦ୍ରଶେଖରଙ୍କୁ ଛାଡ଼ିଦେଲେ ଆଉ କେହି ବିଜ୍ଞାନ କ୍ଷେତ୍ରକୁ କୌଣସି ଉଲ୍ଲେଖନୀୟ ଅବଦାନ ଦେଇ ପାରିଲେ ନାହିଁ କି ଏହି ଅବକ୍ଷୟ ପ୍ରକ୍ରିୟାରେ କୌଣସି ପରିବର୍ତ୍ତନ ପରିଲକ୍ଷିତ ହେଲା ନାହିଁ । ଆମେ ସବୁ ତୃତୀୟ ବିଶ୍ୱର ରାଷ୍ଟ୍ରବର୍ଗ ସେହିଭଳି ପଙ୍ଗୁ ହୋଇ ଚଳିତ ଶତାବ୍ଦୀରେ ପଦାର୍ପଣ କରିବା କାରଣରେ କି ଅପୂର୍ବ ବିଡ଼ମ୍ବନା ! ଦିନ ଥିଲା, ଯେତେବେଳେ ଆରିଷ୍ଟୋଟଲ୍, ରାଜି ଏବଂ ଆବିସିନାଙ୍କ ନିକଟରୁ ଜ୍ଞାନ ଲାଭ କରିବା ପାଇଁ ସ୍କଟ୍‌ଲ୍ୟାଣ୍ଡବାସୀ ମାଇକେଲ୍ ଦକ୍ଷିଣକୁ ଯାତ୍ରା କରିଥିଲେ । କିନ୍ତୁ ଆଜି ଆମେ ସବୁ ବିକାଶଶୀଳ ଦେଶର ଅଧିବାସୀମାନେ ବିଜ୍ଞାନ ଓ ଟେକ୍‌ନୋଲୋଜିର କୌଶଳ ଟିକେ ଜାଣିବା ପାଇଁ ଶିଳ୍ପୋନ୍ନତ ଦେଶମାନଙ୍କର ହାତ ଟେକାକୁ ଚାହିଁ ବସିଛେ ।

## ପରମ୍ପରାରେ ଅଂଶୀଦାର :

୧୧୦୦ ବର୍ଷ ପୂର୍ବେ ଆଲ୍–କିଣ୍ଡି ଲେଖିଥିଲେ, "ସତ୍ୟକୁ ସ୍ୱୀକାର କରିଯିବାରେ ଆମେ ଲଜ୍ଜିତ ନହେବା ହିଁ ଗ୍ରହଣୀୟ । ତେଣୁ ସତ୍ୟ ଯେଉଁ ଉତ୍ସରୁ ବାହାରିତ ହେଉ ପଛେ ଏହାକୁ ସ୍ୱାଗତ କରିବା ହିଁ କାମ୍ୟ । ଯିଏ ସତ୍ୟକୁ କଳନା କରି ପାରିଛି, ତାହା ପାଖରେ ସତ୍ୟଠାରୁ ବଳି ମୂଲ୍ୟବାନ କିଛି ନାହିଁ । ସତ୍ୟ ସନ୍ଧାନୀର ଛଳନ ନାହିଁ କି ତା'ର ଅମର୍ଯ୍ୟାଦା ହୁଏ ନାହିଁ ।"

ଏହି ପରିପ୍ରେକ୍ଷୀରେ ମୁଁ ଏଠାରେ ପରିଷ୍କାର କରି ଦେବାକୁ ଚାହେଁ ଯେ ବିଜ୍ଞାନର କେହି ପ୍ରଭୁ ନାହାନ୍ତି । ବିଜ୍ଞାନର ବିକାଶରେ ଆମ ସମସ୍ତଙ୍କର ସମାନ ଅଧିକାର ରହିଛି । ପୂର୍ବ, ପଶ୍ଚିମ, ଉତ୍ତର, ଦକ୍ଷିଣର ବୈଜ୍ଞାନିକମାନଙ୍କର ସମାନ ଅବଦାନରେ ଆଧୁନିକ ବିଜ୍ଞାନ ସମୃଦ୍ଧ । କିନ୍ତୁ ଆଜି ତୃତୀୟ ବିଶ୍ୱରେ ବିଜ୍ଞାନ ଓ ଟେକ୍‌ନୋଲୋଜିର ସ୍ଥିତି କେଉଁଠି ?

ମୋ ବିଶ୍ୱାସରେ ଏହି ଅବକ୍ଷୟର ତିନୋଟି କାରଣ ରହିଛି । ପ୍ରଥମ କଥା ହେଲା ମୌଳିକ କି ପ୍ରୟୋଗାତ୍ମକ ବିଜ୍ଞାନର ପ୍ରକୃତ ବିକାଶ ପ୍ରତି ପୂର୍ଣ୍ଣ ଆନ୍ତରିକତା ସହ ଆମେ ପ୍ରତିଶ୍ରୁତିବଦ୍ଧ ନୋହୁଁ । ଦ୍ୱିତୀୟରେ ଆମର ବୈଜ୍ଞାନିକ ଉଦ୍ୟୋଗର ଧାରା ଆଦୌ ସନ୍ତୋଷଜନକ ନୁହେଁ । ତୃତୀୟରେ ଟେକ୍‌ନୋଲୋଜି କ୍ଷେତ୍ରରେ ଆତ୍ମନିର୍ଭରଶୀଳ ହେବା ପାଇଁ ଆମଠାରେ ଆଗ୍ରହର ଯଥେଷ୍ଟ ଅଭାବ ରହିଛି ।

ଅଳ୍ପ କେତୋଟି ଦେଶକୁ ଛାଡ଼ିଦେଲେ ତୃତୀୟ ବିଶ୍ୱର ରାଷ୍ଟ୍ର ତଥା ଶାସକବର୍ଗ ବୈଜ୍ଞାନିକ ଜ୍ଞାନ ପରିପ୍ରସାର ପାଇଁ କୌଣସି ସନ୍ତୋଷଜନକ ପଦକ୍ଷେପ ନେଇଥିବାର ପ୍ରମାଣ ମିଳୁନାହିଁ । କିନ୍ତୁ ଏଥିପାଇଁ କାହା ମୁଣ୍ଡରେ ଅଠା ବୋଳିବା ଠିକ୍ ହେବ ? ଶାସକବର୍ଗଙ୍କୁ ଦୋଷ ଦେବା ନା ବୈଜ୍ଞାନିକ ଗୋଷ୍ଠୀଙ୍କର ନେତୃତ୍ୱ ନେଉଥିବା ତୁଙ୍ଗ ବୈଜ୍ଞାନିକମାନଙ୍କୁ ଦାୟୀ କରିବା ? ମୋଟାମୋଟି ଭାବରେ ଦେଖିଲେ ବିଜ୍ଞାନର ପ୍ରୟୋଗ ଯେ ରାଷ୍ଟ୍ର ତଥା ଜନସାଧାରଣଙ୍କର ବିକାଶ ପାଇଁ ଅପରିହାର୍ଯ୍ୟ, ତାହା ବୋଧହୁଏ ଆମର ହୃଦ୍‌ବୋଧ ହେଉନାହିଁ । ଏଠାରେ ଗୋଟିଏ ଉଦାହରଣର ଉପସ୍ଥାପନା କରୁଛି । ୧୮୭୦ ମସିହାର "ମେଇଜି" ରାଜତ୍ୱର ପୁନଃପ୍ରତିଷ୍ଠା କାଳରେ ଜାପାନର ସମ୍ରାଟ ଦେଶର ସମ୍ବିଧାନ ଅନୁସାରେ ପାଞ୍ଚଟି ଶପଥ ନେଇଥିଲେ । ସେଥିମଧ୍ୟରୁ ଗୋଟିଏ ହେଲା–

"ଯେତେ ମୂଲ୍ୟ ଦେବାକୁ ପଡୁ ପଛେ, ଜାପାନର ମଙ୍ଗଳ ସୁରକ୍ଷା ପାଇଁ ଯେ କୌଣସି ସୂତ୍ରରୁ ଜ୍ଞାନ ଆହରଣ କରିବା ନିମନ୍ତେ ସମସ୍ତ ପ୍ରକାର ଚେଷ୍ଟା କରାଯିବ ।" ଏବେ କୁହନ୍ତୁ ତ, ତୃତୀୟ ବିଶ୍ୱର କେତେଜଣ ଶାସକ ସମ୍ବିଧାନ ସମ୍ମତ ଏହିଭଳି ଶପଥ ନେବାପାଇଁ ପଦକ୍ଷେପ ଗ୍ରହଣ କରି ପାରିଛନ୍ତି ?

## ତୁଙ୍ଗ ବ୍ୟକ୍ତିତ୍ୱର ଅବଦାନ :

ବିଜ୍ଞାନ ନିଜର ପ୍ରଗତି ପାଇଁ ତୁଙ୍ଗ ବ୍ୟକ୍ତିତ୍ୱର ଅବଦାନ ଉପରେ ହିଁ ନିର୍ଭରଶୀଳ । ବିଜ୍ଞାନର ବିକାଶ କେବଳ ସକ୍ରିୟ ବୈଜ୍ଞାନିକମାନଙ୍କ

ଉତ୍ପାଦନରେ ହିଁ ସମ୍ଭବ । ଅମଲାତାନ୍ତ୍ରିକ ନିଗଡ଼ରୁ ମୁକ୍ତ ନହେଲେ ବିଜ୍ଞାନ ଉପରେ ଉଠିପାରିବ ନାହିଁ । ତାହା ଛଡ଼ା ଏକଦା ସକ୍ରିୟ ଓ ଅଧୁନା ନିଷ୍କ୍ରିୟ ହୋଇ ପଡ଼ିଥିବା ବୈଜ୍ଞାନିକମାନଙ୍କ ପାଖରେ ମଧ୍ୟ ବିଜ୍ଞାନ ଅବହେଳିତ । ଇଟ୍ଟାଏଲ୍ସିତ ଫ୍ରେଇବ୍ୟାନ୍ ଇନ୍‌ଷ୍ଟିଚ୍ୟୁଟ୍‌ର ତଦାନୀନ୍ତନ ନିର୍ଦ୍ଦେଶକ ସ୍ବର୍ଗତ ଆମୋସ୍ ଡି: ସାଲିଡ୍‌ଙ୍କୁ ଜାତିସଂଘ କମିଟି ତରଫରୁ "ଇସ୍ରାଏଲ୍‌ର ବିଜ୍ଞାନ ବିଷୟକ ନୀତିର ରୂପରେଖ କ'ଣ" ବୋଲି ଥରେ ପ୍ରଶ୍ନ କରାଯାଇଥିଲା । ସାଲିଡ୍ ଉତ୍ତର ଦେଇଥିଲେ, "ବିଜ୍ଞାନର ବିକାଶ ପାଇଁ ଆମର ନୀତି ଖୁବ୍ ସହଜ ଓ ସୁସ୍ପଷ୍ଟ । ଆମର ନୀତି ହେଲା କୌଣସି ଜଣେ ସକ୍ରିୟ ବୈଜ୍ଞାନିକ ଯେଉଁ ମତ ପୋଷଣ କରନ୍ତି, ତାହା ସବୁବେଳେ ଠିକ୍ ଏବଂ ତାଙ୍କର ବୟସ ଯେତେ କମ୍, ସେ ସେତେ ଠିକ୍ ବୋଲି ଆମେ ଧରି ନେଇଥାଉ ।" କିନ୍ତୁ ବଡ଼ ବିଡ଼ମ୍ବନାର ବିଷୟ ଏହି ଯେ, ଆମର ଅଧିକାଂଶ ବିଜ୍ଞାନ ପ୍ରତିଷ୍ଠାନରେ ଏଭଳି ମାନଦଣ୍ଡକୁ ସ୍ୱୀକୃତି ମିଳୁନାହିଁ ।

ଆତ୍ମନିର୍ଭରଶୀଳ ହେବା ପାଇଁ ଉଦ୍ୟମୀ ହେବାରେ ଟେକ୍‌ନୋଲୋଜି ଯେ ମୁଖ୍ୟ ଅବଲମ୍ବନ, ତାହା ଏ ପର୍ଯ୍ୟନ୍ତ ଏକ ଜାତୀୟ ଲକ୍ଷ୍ୟ ହିସାବରେ ବହୁ ଦେଶରେ ଗୃହୀତ ହୋଇପାରୁ ନାହିଁ । ତାହାଛଡ଼ା ଯାନ୍ତ୍ରିକତାର ବୈଜ୍ଞାନିକ ଭିତ୍ତିଭୂମି ସମ୍ବନ୍ଧରେ ଆମେ ଅତ୍ୟନ୍ତ ବୀତସ୍ପୃହ । "ଟେକ୍‌ନୋଲୋଜି" ଆମଦାନୀ କରି ତାହାର ସମ୍ପୂର୍ଣ୍ଣ ବିନିଯୋଗ କରିବା ନିମନ୍ତେ "ବିଜ୍ଞାନ"ର ଆମଦାନୀ ଯେ ଅପରିହାର୍ଯ୍ୟ, ତାହା ଆମେ ହୃଦୟଙ୍ଗମ କରିପାରୁ ନାହୁଁ । ତେଣୁ ଆମର ଶାସକ କିମ୍ବା ଶିଳ୍ପପତିମାନେ ଯେଉଁ ଶିଳ୍ପ ବିଦ୍ୟାର ସ୍ଥାନାନ୍ତର ବିଷୟ ଉପସ୍ଥାପନ କରିଛନ୍ତି ବାସ୍ତବରେ ତାହା କେବଳ କେତେକ ଡିଜାଇନ, ମେସିନ, ଟ୍ରେନିଂପ୍ରାପ୍ତ କାରିଗର ତଥା ସଂସାଧିତ କଞ୍ଚାମାଲର ଆମଦାନୀକୁ ଲକ୍ଷ୍ୟ କରି ହିଁ କହୁଛନ୍ତି ।

ଦକ୍ଷିଣସ୍ଥ ରାଷ୍ଟ୍ର ସମୂହରେ ବିଜ୍ଞାନ ତଥା ବିଜ୍ଞାନଭିତ୍ତିକ ଶିଳ୍ପ ବିଦ୍ୟାକୁ ପୁନର୍ଜୀବନ ଦେବାକୁ ହେଲେ ଆମର ଏହି ଦୃଷ୍ଟିଭଙ୍ଗୀକୁ ଆମୂଳଚୂଳ ପରିବର୍ତ୍ତନ କରିବାକୁ ପଡ଼ିବ ।

ଆଜିର ବିଜ୍ଞାନ ଯେ ଆସନ୍ତା କାଲିର ଟେକ୍‌ନୋଲୋଜି, ତାହା ମାତ୍ର ଅଳ୍ପ କେତୋଟି ବିକାଶଶୀଳ ଦେଶରେ ହିଁ ସ୍ୱୀକୃତି ପାଇଛି । ଆମେ ଯେତେବେଳେ ବିଜ୍ଞାନ ବିଷୟରେ ଆଲୋଚନା କରୁଛେ, ଏହାର ବ୍ୟାପ୍ତି ସମ୍ବନ୍ଧରେ ମଧ୍ୟ ଆମର ଧାରଣା ରହିଥିବା ଦରକାର । ବିଜ୍ଞାନର ପ୍ରୟୋଗାତ୍ମକ ମୂଲ୍ୟ ନ ରହିଲେ, ସେ କି ବିଜ୍ଞାନ ? ତେଣୁ ପାଶ୍ଚାତ୍ୟ ଦେଶମାନେ ଯେତେବେଳେ ଆମକୁ ଉପଯୋଗୀ ବିଜ୍ଞାନ ଜ୍ଞାନ ରପ୍ତାନୀ ନ କରି ଶିଳ୍ପ ବିଦ୍ୟା ରପ୍ତାନୀ କରିବାରେ ଆଗ୍ରହ ପ୍ରକାଶ କରିଥାନ୍ତି, ମୁଁ ସେମାନଙ୍କର ମନ୍ଦ ଉଦ୍ଦେଶ୍ୟକୁ ସନ୍ଦେହ କରିବାକୁ ଆପଣମାନଙ୍କୁ ପରାମର୍ଶ ଦେଉଛି । ଧନୀ ରାଷ୍ଟ୍ରମାନେ ଯେତେବେଳେ "ସୁସଙ୍ଗତ ବିଜ୍ଞାନ" ବିଷୟରେ କଣ୍ଠ ପଠାଇ ଚିତ୍କାର କରନ୍ତି, ଆମ ତୃତୀୟ ବିଶ୍ୱର ରାଷ୍ଟ୍ରମାନଙ୍କ ପାଇଁ ତାହାଠାରୁ ଅଧିକ ବେଦନାଦାୟକ କିଛି ନାହିଁ ବୋଲି ମୋର ହୃଦ୍‌ବୋଧ ହୋଇଛି । ବଡ଼ କ୍ଷୋଭର କଥା ଯେ ଆମେ ନିର୍ବିଘ୍ନରେ ସେହି କୂଟ ସ୍ଲୋଗାନ୍ ପ୍ରତି ଆମର ସମର୍ଥନ ଜଣାଇ ଚାଲିଛେ । ଏହା ଫଳରେ ଆମ ଦେଶମାନଙ୍କରେ ବିଜ୍ଞାନର କଣ୍ଠରୋଧ ହେବାକୁ ବସିଲାଣି ।

ତେବେ ଆମେ ବିଜ୍ଞାନ ପ୍ରତି ଏତେ ନିଷ୍ଠୁର ଭାବରେ ବୀତସ୍ପୃହ କାହିଁକି ? ଆପଣମାନେ କ'ଣ ନିଜ ନିଜର ଜାତୀୟ ସ୍ୱାର୍ଥ ପ୍ରତି ସଚେତନ ନୁହଁନ୍ତି ? ମୁଁ ଏଠାରେ ଦ୍ୱିଧାହୀନ ଭାବରେ କହିରଖେ ଯେ, ମୋ ଦେଶ ଭଳି ବହୁ ଦେଶରେ ମଧ୍ୟ ଜାତୀୟ ପ୍ରଗତିକୁ ତ୍ୱରାନ୍ୱିତ କରିବା ନିମନ୍ତେ ବୈଜ୍ଞାନିକ ସମ୍ପ୍ରଦାୟକୁ ପ୍ରୋତ୍ସାହନ ମିଳୁନାହିଁ । କାରଣ ଏଭଳି ଏକ ସମ୍ପ୍ରଦାୟ ସକ୍ରିୟ ହୋଇ ଉଠୁ ବୋଲି ଆମେ ଚାହୁଁନା । ବିଜ୍ଞାନକୁ କରଗତ କରିବା ପାଇଁ ଆମଠାରେ ଆଗ୍ରହର ଦାରିଦ୍ର୍ୟ ରହିଛି, ଏହା ପ୍ରତି ରହିଛି ଏକ ହୀନମନ୍ୟ ଭାବ ଓ ଏପରିକି କେତେକ କ୍ଷେତ୍ରରେ ବିଜ୍ଞାନ ପ୍ରତି ଆମର ଯେ ବୈରିତା ନରହିଛି ତାହା ନୁହେଁ ।

## ଜ୍ଞାନର ସନ୍ଧାନେ :

ମୁଁ ଯେତେବେଳେ ଜାତୀୟ ଲକ୍ଷ୍ୟ ବିଷୟରେ ଅବତାରଣା କରେ, ସେତେବେଳେ ଜାପାନ୍ କଥା ସ୍ୱତଃ ମୋ ମନକୁ ଆସିଯାଏ । ଗତ ଶତାବ୍ଦୀର ଶେଷ ଭାଗରେ ଜାପାନ୍‌ରେ ପ୍ରଣୟନ ହେଲା ନୂତନ ମେଇଜି ସମ୍ବିଧାନ । ଆଗରୁ କହିଛି ଯେ ମେଇଜି ସମ୍ରାଟ ପାଞ୍ଚଟି ଶପଥ ନେଇଥିଲେ, ସେଥିମଧ୍ୟରୁ ଗୋଟିଏ ଶପଥରେ ବିଜ୍ଞାନ ବା ଜ୍ଞାନକୁ ସମୃଦ୍ଧ କରିବା ପ୍ରକ୍ରିୟାକୁ ଏକ ଜାତୀୟ ନୀତି ରୂପେ ସ୍ୱୀକାର କରାଯାଉଥିଲା ।

ତେବେ ଜ୍ଞାନର ସ୍ୱରୂପ କ'ଣ ? ମୁଁ ଏଠାରେ ଜାପାନୀ ପଦାର୍ଥ ବିଜ୍ଞାନୀ ହାଣ୍ଟାରୋ ନାଗାଓକାଙ୍କର ଉକ୍ତିକୁ ଉଦ୍ଧାର କରିବାର ଲୋଭ ସମ୍ବରଣ କରି ପାରୁନାହିଁ । ନାଗାଓକା ଚୁମ୍ବକତ୍ୱ କ୍ଷେତ୍ରରେ ବ୍ୟୁତ୍ପତ୍ତି ଅର୍ଜନ କରିଥିଲେ । ଏହି ଶାଖାର ତାତ୍ତ୍ୱିକ ଏବଂ ଅଭିଜ୍ଞତାପକ କ୍ଷେତ୍ରରେ ଜାପାନୀମାନଙ୍କର ଅବଦାନ ସର୍ବଜନ ସ୍ୱୀକୃତ । ଅଧିକତର ଗବେଷଣା ପାଇଁ ଜାପାନ ସରକାର ନାଗାଓକାଙ୍କୁ ଗ୍ଲାସ୍‌ଗୋ ବିଶ୍ୱବିଦ୍ୟାଳୟକୁ ପଠାଇଲେ । ୧୮୮୮ ମସିହାରେ ନିଜର ପ୍ରଫେସର୍ ଟାନାକାଡେଟ୍‌ଙ୍କୁ ନାଗାଓକା ଦେଇଥିବା ପତ୍ରରେ ଉଲ୍ଲେଖ ଥିଲା, "ଚକ୍ଷୁ ଉନ୍ମୀଳନ କରି, ତୀକ୍ଷ୍ଣବୋଧ ପ୍ରୟୋଗ କରି, ପ୍ରତ୍ୟୁତ୍ପନ୍ନମତି ହୋଇ, ଅକ୍ଲାନ୍ତ ଭାବରେ ନିରବଚ୍ଛିନ୍ନ ପ୍ରୟାସ କରିଯିବା ନିମନ୍ତେ ଆମେ ଜାପାନୀମାନେ ସଙ୍କଳ୍ପବଦ୍ଧ ହେବା ଉଚିତ । କେବଳ ୟୁରୋପୀୟମାନେ କାହିଁକି ଯେ ସବୁ କ୍ଷେତ୍ରରେ ଶ୍ରେଷ୍ଠତ୍ୱ ପ୍ରତିପାଦନ କରୁଥିବେ, ତା'ର କାରଣ ମୁଁ କିଛି ବୁଝିପାରୁନାହିଁ । ଆପଣ ଯାହା ଲେଖିଛନ୍ତି ....... ଆମେ ନିଶ୍ଚୟ ....... ନିଶ୍ଚୟ ବିଜ୍ଞାନ କ୍ଷେତ୍ରରେ ସେହି ଆଖ୍ୟାଳକମାନଙ୍କର ଆଶ୍ୱର୍ଯ୍ୟକୁ ପ୍ରତିହତ କରିଦେବା । ମାତ୍ର ୧୦ରୁ ୨୦ ବର୍ଷ ଭିତରେ ହିଁ ଆମକୁ ଏହା ସମ୍ଭବ କରାଇବାକୁ ପଡ଼ିବ ।"

ମାତ୍ର ସତୁରି ବର୍ଷ ତଳେ ରୁଷିଆରେ ମଧ୍ୟ ଅନୁରୂପ ପଦକ୍ଷେପ ନିଆଗଲା । ରୁଷିଆର ମହାନ୍ ବୈଜ୍ଞାନିକ ପିଟର୍ ପ୍ରତିଷ୍ଠା କରିଥିବା "ସୋଭିଏଟ୍ ଏକାଡେମୀ ଅଫ୍ ସାଇନ୍‌ସ"କୁ ଆହ୍ୱାନ ଜଣାଇ କୁହାଗଲା, "ଆମେ ଉଚ୍ଚକୋଟୀର ବୈଜ୍ଞାନିକ ଚାହୁଁ । ସେମାନଙ୍କର ସଂଖ୍ୟା ବଢ଼େଇବାକୁ ଚାହୁଁ । ବିଜ୍ଞାନର ପ୍ରତି ଶାଖାରେ ଆମେ ଅପ୍ରତିଦ୍ୱନ୍ଦ୍ୱୀ ହେବାକୁ ଚାହୁଁ ।" ଆଜି ରୁଷିଆର ବିଭିନ୍ନ ବିଜ୍ଞାନ ପ୍ରତିଷ୍ଠାନମାନଙ୍କରେ କାମ କରୁଥିବା ବୈଜ୍ଞାନିକମାନଙ୍କର ସଂଖ୍ୟା ପ୍ରାୟ ଅଢ଼େଇ ଲକ୍ଷ । ସେମାନଙ୍କୁ ମିଳୁଥିବା ସମ୍ମାନ ଓ ସୁବିଧା ସୁଯୋଗ ଅନ୍ୟମାନଙ୍କଠାରେ ଈର୍ଷା ଜାଗ୍ରତ କରିଥାଏ ।

ଏଠାରେ ବିଶିଷ୍ଟ ଶିକ୍ଷାବିତ୍ ମାଲ୍‌ସେଭ୍‌ଙ୍କ ଉକ୍ତିକୁ ଉଦ୍ଧାର କରୁଛି । ସେ ଉଲ୍ଲେଖ କରିଥିଲେ ଯେ, "୧୯୪୫ ମସିହା ବେଳକୁ ଯୁଦ୍ଧ ଯୋଗୁଁ ରୁଷିଆର ଅର୍ଥନୀତି ଏକରକମ ଭୁଶୁଡ଼ି ପଡ଼ିଥିଲା" । ତେଣୁ ବିଜ୍ଞାନକୁ ଅଗ୍ରାଧିକାର ଦେବା ପାଇଁ ଷ୍ଟାଲିନ୍ ନିଷ୍ପତ୍ତି ନେଲେ । କାହା ସହିତ ପରାମର୍ଶ ନକରି ସେ ସୋଭିଏଟ୍ ଏକାଡେମୀ ସହ ସମ୍ପୃକ୍ତ ସମସ୍ତ ବୈଜ୍ଞାନିକ ଓ ଟେକ୍‌ନିସିଆନ୍‌ଙ୍କର ବେତନ ତିନିଗୁଣ ବଢ଼ାଇ ଦେଲେ । ଦେଶର ବୈଜ୍ଞାନିକମାନଙ୍କୁ ଗବେଷଣା ପ୍ରତି ଆକୃଷ୍ଟ କରାଇବା ହିଁ ଥିଲା ତାଙ୍କର ଲକ୍ଷ୍ୟ । ବିଜ୍ଞାନ କ୍ଷେତ୍ରରେ ରୁଷିଆ ଦେଶର ଅଭୂତପୂର୍ବ ସଫଳତା ପାଇଁ ଷ୍ଟାଲିନ୍‌ଙ୍କ ଦୂରଦୃଷ୍ଟିକୁ ହିଁ ଧନ୍ୟବାଦ ଦେବା କଥା ।

ତେବେ ବଡ଼ ଆଶ୍ୱାସନାର କଥା ଯେ, ବିଜ୍ଞାନ ଓ ବିଜ୍ଞାନଭିତ୍ତିକ ଶିଳ୍ପ ବିଦ୍ୟା ଆୟତ୍ତ କରିବା ଏତେ କଠିନ ନୁହେଁ ବୋଲି କେତେକଙ୍କର

ଧାରଣା । ବିଶିଷ୍ଟ ଔପନ୍ୟାସିକ ସି: ପି: ସ୍ନୋ ତାଙ୍କର ପ୍ରଖ୍ୟାତ "ଦୁଇ ସଂସ୍କୃତି" ଶୀର୍ଷକ ଭାଷଣ ପ୍ରସଙ୍ଗରେ କହିଥିଲେ, "ବିଜ୍ଞାନ ଓ ଯାନ୍ତ୍ରିକୀ ହିଁ ମଣିଷର ଅନୁଭୂତିର ଶାଖା ସଦୃଶ । ମଣିଷ ନିଜେ ପୂର୍ବାବଧାରିତ କିମ୍ବା ପୂର୍ବସୂଚିତ ପ୍ରଣାଳୀରେ ଏଭଳି ଅନୁଭୂତି ଅର୍ଜନ କରିପାରିବାକୁ ସମର୍ଥ । ବହୁ କାଳ ଧରି ପାଶ୍ଚାତ୍ୟ ଦେଶମାନେ ଏହି ପ୍ରସଙ୍ଗକୁ ଉଚିତ ଢଙ୍ଗରେ କଳନା କରିପାରିଲେ ନାହିଁ । ତେବେ ବହୁ ଇଂରେଜ ପରିବାର ତ ପୁଣି ପାଞ୍ଚ ଛଅ ପୀଢ଼ି ଧରି ବିଭିନ୍ନ ଯାନ୍ତ୍ରିକ କଳକୌଶଳରେ ବ୍ୟୁତ୍ପତ୍ତି ଅର୍ଜନ କରିପାରିଛନ୍ତି । ତେଣୁ ଶିଳ୍ପ ବିଦ୍ୟାକୁ ଯେ ପ୍ରାୟତଃ ହସ୍ତାନ୍ତର କରାଯାଇ ପାରିବ ନାହିଁ, ଏଭଳି ଧାରଣା ପୋଷଣ କରିବାର ଯୌକ୍ତିକତା କାହିଁ ?"

ମୁଁ ମୋର ନିଜ ଅନୁଭୂତିରୁ କିଛି କୁହେ । ଇଟାଲୀର ଟ୍ରିଏଟିଷ୍ଟିତ ଯେଉଁ "ଇଣ୍ଟରନ୍ୟାସନାଲ୍ ସେଣ୍ଟର୍ ଫର୍ ଥିଓରେଟିକାଲ୍ ଫିଜିକ୍ସ"ରେ ମୁଁ କାମ କରୁଛି, ଗତ ୨୩ ବର୍ଷ ଧରି ତୃତୀୟ ବିଶ୍ୱ ଅନ୍ତର୍ଭୁକ୍ତ ୯୦ଟି ଦେଶରୁ ୨୪,୦୦୦ରୁ ଊର୍ଦ୍ଧ୍ୱ ଉଚ୍ଚ ପଦାଧିଷ୍ଠିତ ପଦାର୍ଥବିତ୍ ସେହି ଅନୁଷ୍ଠାନକୁ ପରିଦର୍ଶନ କରିଛନ୍ତି । ସେମାନଙ୍କ ସହ ଆଳାପ ଆଲୋଚନା କରିବା ତଥା ସେମାନଙ୍କର ଗବେଷଣା ବିଷୟରେ କିଛି ଜାଣିବା ପାଇଁ ମୁଁ ଆଗ୍ରହ ପ୍ରକାଶ କରିଛି । କିନ୍ତୁ ମୋର ଧାରଣା ଯେ ତୃତୀୟ ବିଶ୍ୱର ସେହି ଦେଶମାନଙ୍କ ମଧ୍ୟରେ ହୁଏତ ପାଞ୍ଚ କିମ୍ବା ଖୁବ୍ ବେଶୀରେ ଆଠଟି ଦେଶରେ ବୈଜ୍ଞାନିକମାନଙ୍କ ସଂଖ୍ୟା ତଥା ବିଜ୍ଞାନ ପ୍ରତି ସେମାନଙ୍କ ଦୃଷ୍ଟିଭଙ୍ଗୀ ସନ୍ତୋଷଜନକ । ସେମାନଙ୍କ ମଧ୍ୟରେ ଲାଟିନ୍ ଆମେରିକା ଅନ୍ତର୍ଭୁକ୍ତ ଆର୍ଜେଣ୍ଟିନା, ମେକ୍ସିକୋ ଏବଂ ବ୍ରାଜିଲ୍, ଏସିଆର ଚୀନ୍, ଭାରତ ଏବଂ ଦକ୍ଷିଣ କୋରିଆ ଏବଂ ଆଫ୍ରିକାର ମିଶର ତଥା ନାଇଜେରିଆ ଦେଶର ନାମ ଉଲ୍ଲେଖଯୋଗ୍ୟ ।

ଆଙ୍ଗୁଠି ଅଗରେ ଗଣିହୋଇ ଯାଉଥିବା ଏହି କେତୋଟି ଦେଶକୁ ଛାଡ଼ିଦେଲେ ଅନ୍ୟମାନେ ବିଜ୍ଞାନର ବିକାଶ ପ୍ରତି ବିଶେଷ ଧ୍ୟାନ ଦେଉନାହାନ୍ତି । ଦେଶର ସ୍ଥିତି ଏବଂ ଆର୍ଥିକ ପ୍ରଗତି ଯେ ବିଜ୍ଞାନ ଓ ଶିଳ୍ପ ବିଦ୍ୟା ସହ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ, ଏହା ଜାଣି ସୁଦ୍ଧା ସେମାନେ ବିଜ୍ଞାନ ଓ ଶିଳ୍ପ ଜ୍ଞାନର ପୃଷ୍ଠପୋଷକତା କରିବାରେ ଆଶାନୁରୂପ ଆଗ୍ରହ ପ୍ରକାଶ କରୁଥିବା ଜଣାପଡ଼ୁନାହିଁ ।

ବଡ଼ ବିଡ଼ମ୍ବନାର ବିଷୟ ଯେ ଦରିଦ୍ର ରାଷ୍ଟ୍ରମାନଙ୍କୁ ସାହାଯ୍ୟ ଯୋଗାଉଥିବା ଧନୀ ରାଷ୍ଟ୍ର ତଥା ଜାତିସଂଘ ମଧ୍ୟ ଏ ଦିଗରେ ନୀରବଦ୍ରଷ୍ଟା ସାଜିଛନ୍ତି ।

ଦେଶର ପ୍ରଗତି ପାଇଁ ବିଜ୍ଞାନ ଯେ ମୁଖ୍ୟ ଅବଲମ୍ବନ, ଏ ବିଷୟରେ ମୋ ସହ ଆପଣମାନେ ଏକମତ ବୋଲି ଧରିନେଇ ମୁଁ ପଚାରୁଛି ଯେ ବିକାଶଶୀଳ ଦେଶମାନଙ୍କରେ ବିଜ୍ଞାନର ବିକାଶକୁ ନାମକୁ ମାତ୍ର ସ୍ୱୀକୃତି ମିଳିଛି ବୋଲି ମୁଁ ଦୋହରାଇ ଚାଲିଛି କାହିଁକି ?

## ଆମେ ବୈଜ୍ଞାନିକ ଗଢ଼ୁଁ :

ଏହାର କାରଣ ହେଲା ଯେ ବିଜ୍ଞାନ ଓ ଶିଳ୍ପ ବିଦ୍ୟାର ଅନ୍ତରଣ ବା **transfer** ପ୍ରକ୍ରିୟାରେ ବୈଜ୍ଞାନିକ ଗୋଷ୍ଠୀ ହିଁ ସମ୍ପୃକ୍ତ । ଏହି ପ୍ରକ୍ରିୟାରେ ସେମାନେ ହିଁ ଦାତା, ସେଇମାନେ ହିଁ ଗ୍ରହୀତା । ତେଣୁ ସେମାନଙ୍କ ଭିତ୍ତିକୁ ସୁଦୃଢ଼ କରିବା ନିମନ୍ତେ ବୈଜ୍ଞାନିକମାନଙ୍କ ସଂଖ୍ୟା ତଥା ସେମାନଙ୍କ ଗୁଣାତ୍ମକ ମାନର ବୃଦ୍ଧି ଘଟାଇବା ଅପରିହାର୍ଯ୍ୟ । ଉପଯୁକ୍ତ ଶିକ୍ଷା ଓ ତାଲିମ ବିନା ତାହା ସମ୍ଭବ ହୋଇ ପାରିବ ନାହିଁ । ତେବେ ଆମେ ସେମାନଙ୍କର ଗୋଷ୍ଠୀକୁ ବୃଦ୍ଧି କରି ପାରିବୁ କିପରି ? ଏଥିପାଇଁ ଏକ ସୁଦୂରପ୍ରସାରୀ ବିଜ୍ଞାନ ନୀତି ପ୍ରଣୟନର ଆବଶ୍ୟକତା ରହିଛି । ଏହି ବିଜ୍ଞାନ ନୀତି ତିନୋଟି ମୁଖ୍ୟ ବିଭାବକୁ ଆଶ୍ରୟ କରି କାର୍ଯ୍ୟକାରୀ ହେବା ବାଞ୍ଛନୀୟ । ପ୍ରଥମତଃ ଏକ ସୁଦୂରପ୍ରସାରୀ ଲକ୍ଷ୍ୟ ନିର୍ଦ୍ଧାରଣ କରି ଦେଶର ପ୍ରଗତିମୂଳକ କାର୍ଯ୍ୟ ତଥା ଯୋଜନାରେ ବୈଜ୍ଞାନିକମାନଙ୍କୁ ସକ୍ରିୟ ଭାବରେ ସମ୍ପୃକ୍ତ କରାଇବା, ଦ୍ୱିତୀୟରେ ସେମାନଙ୍କୁ ଅକୁଣ୍ଠିତ ପ୍ରୋତ୍ସାହନ ଯୋଗାଇ ଦେବା ଓ ତୃତୀୟରେ ବୈଜ୍ଞାନିକ ଗୋଷ୍ଠୀ ନିଜକୁ ନିଜେ ଶାସନ ତଥା ନିୟନ୍ତ୍ରଣ କରିବାର ସୁଯୋଗ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଆନ୍ତର୍ଜାତିକ ବୈଜ୍ଞାନିକ ଗୋଷ୍ଠୀ ସହ ସେମାନଙ୍କର ସମ୍ପର୍କ ରକ୍ଷାକୁ ପୃଷ୍ଠପୋଷକତା କରିବା ଦ୍ୱାରା ବିଜ୍ଞାନ ବିକାଶର ଧାରା ତ୍ୱରାନ୍ୱିତ ହୋଇପାରିବ । ଏହି ତିନୋଟି ବିଭାବ ମଧ୍ୟରୁ ପ୍ରଥମ ଦୁଇଟି ପ୍ରତ୍ୟକ୍ଷ ଭାବରେ ଦେଶର ଦାୟିତ୍ୱ । ତୃତୀୟଟିରେ ଆମ ବୈଜ୍ଞାନିକ ଗୋଷ୍ଠୀମାନଙ୍କର ଦାୟିତ୍ୱକୁ ଉପେକ୍ଷା କରି ହେବ ନାହିଁ । ବିଜ୍ଞାନକୁ ଏହି ଦୁଃସ୍ଥିତିରୁ ମୁକ୍ତି ଦେବା ପାଇଁ ମୁଁ କର୍ତ୍ତୃପକ୍ଷଙ୍କ ନିକଟରେ ମୋର ନିବେଦନ ଜଣାଉଛି ।

ବିଜ୍ଞାନ ତଥା ଟେକ୍‌ନୋଲୋଜିର ବିକାଶ ତଥା ପୃଷ୍ଠପୋଷକତା ଦିଗରେ ଶିଳ୍ପୋନ୍ନତ ଦେଶମାନେ କିଭଳି ମାନଦଣ୍ଡ ସ୍ଥିର କରିଛନ୍ତି, ଏଠାରେ ତା'ର ଏକ ଆଭାସ ଦେବା ମୁଁ ଅପ୍ରାସଙ୍ଗିକ ମନେ କରୁନାହିଁ ।

ବହୁ ଶିଳ୍ପୋନ୍ନତ ଦେଶର ଜାତୀୟ ଆୟର ଶତକଡ଼ା ୨ରୁ ୨.୫ ଭାଗ ବୈଜ୍ଞାନିକ ଗବେଷଣା ତଥା ଉନ୍ନୟନ ପାଇଁ ବ୍ୟୟିତ ହେଉଛି । ସାଧାରଣତଃ ତିନୋଟି ମୁଖ୍ୟ କ୍ଷେତ୍ରରେ ହିଁ ଏଭଳି ଉପଯୋଗ ପାଇଁ ଅଗ୍ରାଧିକାର ଭିତ୍ତିରେ ପଦକ୍ଷେପ ନିଆଯାଉଛି । ଯଥା –

● ବିଶ୍ୱବିଦ୍ୟାଳୟ ତଥା ଅନ୍ୟ ଗବେଷଣା ପ୍ରତିଷ୍ଠାନମାନଙ୍କରେ ମୌଳିକ ବିଜ୍ଞାନ ବିଷୟରେ ଗବେଷଣା, ଆନ୍ତର୍ଜାତିକ ସ୍ତରରେ ବିଜ୍ଞାନର ପ୍ରୋତ୍ସାହନ ଓ ଗବେଷଣା ସଂକ୍ରାନ୍ତୀୟ ତାଲିମ ପ୍ରଦାନ – ଏଭଳି ଦାୟିତ୍ୱ ସାଧାରଣତଃ ଜାତୀୟ ବିଜ୍ଞାନ ପ୍ରତିଷ୍ଠାନ କିମ୍ବା ବିଜ୍ଞାନ ଏକାଡେମୀମାନଙ୍କ ଉପରେ ନ୍ୟସ୍ତ ।

● ପ୍ରୟୋଗାତ୍ମକ ବିଜ୍ଞାନ ଭିତ୍ତିକ ଗବେଷଣା – "ପ୍ରୟୋଗାତ୍ମକ ଗବେଷଣା କାଉନ୍‌ସିଲ୍"ର ଆନୁକୂଲ୍ୟରେ ଏହା କାର୍ଯ୍ୟକାରୀ ହୋଇଥାଏ । ସ୍ୱାସ୍ଥ୍ୟ, କୃଷି, ଶକ୍ତି ଉତ୍ପାଦନ, ପରିବେଶ, ପାଣିପାଗ ଏବଂ ମୃତ୍ତିକା ବିଜ୍ଞାନ ଶାଖାରେ ଗବେଷଣା ତଥା ବୈଜ୍ଞାନିକ ପଦ୍ଧତିର ପ୍ରୟୋଗ କରିବା ହିଁ ଏହାର ଦାୟିତ୍ୱ । ତେବେ ରାଷ୍ଟ୍ରର ଆବଶ୍ୟକତାକୁ ଅଗ୍ରାଧିକାର ଭିତ୍ତିରେ ବିଶ୍ଳେଷଣକୁ ନେଇ ପ୍ରୟୋଗାତ୍ମକ ଗବେଷଣାର କ୍ଷେତ୍ର ନିର୍ବାଚନ କରାଯାଇଥାଏ ।

● ଟେକ୍‌ନୋଲୋଜିରେ ଗବେଷଣା ତଥା ବିକାଶ– ପେଟ୍ରୋକେମିକାଲ୍‌ସ, ଇଞ୍ଜିନିୟରିଂ ଟେକ୍‌ନୋଲୋଜି, ଟ୍ରାନ୍ସପୋର୍ଟ, ଟେଲିକମ୍ୟୁନିକେସନ୍, ମାଇକ୍ରୋ ଇଲେକ୍ଟ୍ରୋନିକ୍ସ ଏବଂ ବାୟୋଟେକ୍‌ନୋଲୋଜି ଇତ୍ୟାଦି ବିଷୟରେ ଗବେଷଣାକୁ ସାଧାରଣତଃ ଅଗ୍ରାଧିକାର ଦିଆଯାଉଛି । ଏଭଳି ଉଦ୍ୟୋଗ ପାଇଁ ବେସରକାରୀ ସଂସ୍ଥାମାନେ ମଧ୍ୟ ଅନୁଦାନ ଯୋଗାଇଥାନ୍ତି ।

ତେବେ ଏହି ତିନୋଟି କ୍ଷେତ୍ରରେ ବ୍ୟୟିତ ହେଉଥିବା ଅର୍ଥର ଅନୁପାତ ହେଉଛି ୧:୨:୨ ।

ଏହି ଉଦ୍ଦେଶ୍ୟରେ ସ୍ୱେ ସବୁ ରାଷ୍ଟ୍ରର ଶିକ୍ଷା ବିଭାଗର ବ୍ୟୟ ବରାଦକୁ ମୁଁ ଉଦାହରଣ ରୂପେ ବ୍ୟବହାର କରୁଛି ।

ରାଷ୍ଟ୍ରର ଶିକ୍ଷା ବିଭାଗ ଉଦ୍ଦେଶ୍ୟରେ ନିର୍ଦ୍ଧାରିତ ବଜେଟ୍‌ର ଶତକଡ଼ା ୨୦ ୨୦ ଭାଗ ମୌଳିକ ବିଜ୍ଞାନ ବିଷୟକ ଗବେଷଣା ପାଇଁ, ପ୍ରାୟ ସେତିକି

ପରିମିତ ଅର୍ଥ, ପ୍ରୟୋଗାତ୍ମକ ବିଜ୍ଞାନ ସଂକ୍ରାନ୍ତୀୟ ଗବେଷଣା ପାଇଁ ଓ ଏହାର ଦୁଇଗୁଣ ପରିମାଣର ଅର୍ଥ ଶିଳ୍ପ ବିଦ୍ୟା ଏବଂ ଉଚ୍ଚତର ଶିଳ୍ପ ବିଦ୍ୟା ସଂକ୍ରାନ୍ତୀୟ ଗବେଷଣା ତଥା ଉନ୍ନୟନ ପାଇଁ ବ୍ୟୟିତ ହୋଇଥାଏ ।

ତେଣୁ ଶିଳ୍ପୋନ୍ନତ ଦେଶମାନଙ୍କ ଡାଙ୍ଗର ଅବଲମ୍ବନରେ ବିକାଶଶୀଳ ଦେଶମାନଙ୍କରେ ଶିକ୍ଷା ବଜେଟ୍‌ର ଅନ୍ତତଃ ଶତକଡ଼ା ୪ ଭାଗ ଅର୍ଥ ମୌଳିକ ବିଜ୍ଞାନ ବିଷୟରେ ଗବେଷଣା କରିବା ପାଇଁ ଉଦ୍ଦିଷ୍ଟ ହେବା ଦରକାର । ଏହି ବଜେଟ୍ ଭିତରେ ଗବେଷଣା, ଗବେଷଣା ପାଇଁ ତାଲିମ ତଥା ଆନ୍ତର୍ଜାତିକ ବିଜ୍ଞାନର ପୃଷ୍ଠପୋଷକତାକୁ ମଧ୍ୟ ଅନ୍ତର୍ଭୁକ୍ତ କରାଯାଇ ପାରେ ।

ଆପଣମାନେ ହୁଏତ ଆଶ୍ଚର୍ଯ୍ୟ ହେବେ ଯେ ତୃତୀୟ ବିଶ୍ୱ ଅନ୍ତର୍ଭୁକ୍ତ ରାଷ୍ଟ୍ରମାନଙ୍କରେ ଶିକ୍ଷା ପାଇଁ ବ୍ୟୟିତ ହେଉଥିବା ଅର୍ଥର ଶତକଡ଼ା ଚାରିଭାଗକୁ ହିସାବକୁ ନେଲେ ଏହାର ପରିମାଣ ହେବ ୩.୬ ବିଲିୟନ୍ (୩.୬ ଲକ୍ଷ କୋଟି) ଡଲାର୍ । କିନ୍ତୁ କେବଳ ମୌଳିକ ବିଜ୍ଞାନ ସଂକ୍ରାନ୍ତୀୟ ଗବେଷଣା ନିମନ୍ତେ ଆମେ କ'ଣ ଏତେ ଅର୍ଥ ବ୍ୟୟ କରି ପାରିବା ? ପ୍ରୟୋଗାତ୍ମକ ଗବେଷଣା ପାଇଁ ଆହୁରି ଶତକଡ଼ା ଚାରିଭାଗ ଅର୍ଥ ମିଶାଇ ଦେଲେ ତ ଦକ୍ଷିଣ ଗୋଲାର୍ଦ୍ଧ ପାଇଁ ଏହା ସାତ ବିଲିୟନ୍ ଡଲାର୍‌ରେ ପହଞ୍ଚିଯିବ ।

ଆପଣଙ୍କର ଦେଶ ଯଦି ମୌଳିକ ତଥା ପ୍ରୟୋଗାତ୍ମକ ବିଜ୍ଞାନ ଗବେଷଣା ପାଇଁ ଏହି ଅନୁପାତରେ ବ୍ୟୟ ବରାଦ କରିଛି, ତେବେ ମୁଁ ଆପଣଙ୍କୁ ଅଭିନନ୍ଦନ ଜଣାଉଛି । କିନ୍ତୁ ଏଥିରେ ବ୍ୟତିକ୍ରମ ହେଉଥିଲେ ଆପଣ ଏହି ଲକ୍ଷ୍ୟ ପୂରଣ ପାଇଁ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ନିମନ୍ତେ ମୁଁ ଆପଣଙ୍କୁ ଅନୁରୋଧ କରୁଛି । ଏଥିରେ ଆଦୌ ହେଳା କରନ୍ତୁ ନାହିଁ । ଖୁବ୍ କମ୍‌ରେ ଅନ୍ତତଃ ଏହି ପରିମାଣର ଅର୍ଥ ବିନିଯୋଗ କରି ନପାରିଲେ ବିଜ୍ଞାନକୁ ବଞ୍ଚେଇ ହେବ ନାହିଁ ।

ତେବେ ବିଜ୍ଞାନର ବିକାଶ ତଥା ପୃଷ୍ଠପୋଷକତା ପାଇଁ ଏହା ଗୋଟିଏ ଦିଗ ମାତ୍ର । ଅନ୍ୟ ଦିଗଟି ପ୍ରାୟତଃ ଅବହେଳିତ । ରାଷ୍ଟ୍ରର ସମସ୍ତ ପ୍ରଗତିମୂଳକ ଯୋଜନାରେ ଯୋଜନା ପ୍ରଣୟନକାରୀ ତଥା ଅର୍ଥନୀତିଜ୍ଞମାନଙ୍କୁ ମୁଖ୍ୟତଃ ଅଗ୍ରାଧିକାର ଦେଇ ବୈଜ୍ଞାନିକମାନଙ୍କୁ ହେୟଜ୍ଞାନ କରାଯାଉଛି । ତେଣୁ ବୈଜ୍ଞାନିକ ଗୋଷ୍ଠୀ ଦେଶର ପ୍ରଗତି ସଂକ୍ରାନ୍ତୀୟ ଯୋଜନାମାନଙ୍କ ସମ୍ବନ୍ଧରେ ଆଦୌ ଅବଗତ ହୋଇ ପାରୁନାହିଁ । ଏହା ଆଦୌ ଶୁଭ ସୂଚନା ନୁହେଁ ।

## ବିଜ୍ଞାନ ସାର୍ବଜନୀନ :

ଏକ ମୁକ୍ତ ଏବଂ ଅକୁଣ୍ଠିତବିହୀନ ଆନ୍ତର୍ଜାତିକ ସମ୍ପର୍କ ରକ୍ଷା ଉପରେ ମୁଁ ପୁଣି ଥରେ ଗୁରୁତ୍ୱ ଆରୋପ କରୁଛି । ବିଜ୍ଞାନ ସାର୍ବଜନୀନ । ବର୍ତ୍ତମାନ ପରିପ୍ରେକ୍ଷୀରେ ଏହା ମୁଖ୍ୟତଃ ଆମ ଦେଶର ବାହାରେ ହିଁ ବିକାଶ ଲାଭ କରୁଛି । ତେଣୁ ଆମେ ଅନ୍ୟ ଦେଶମାନଙ୍କର ବୈଜ୍ଞାନିକ ଗୋଷ୍ଠୀ ସହ ସମ୍ବନ୍ଧ ସ୍ଥାପନ କରି ନପାରିଲେ ଆମ ରାଷ୍ଟ୍ରରେ ବିଜ୍ଞାନ ପଙ୍ଗୁ ହୋଇଯିବ ଓ କିଛି କାଳ ପରେ ଆପେ ଆପେ ମରିଯିବ । ଦ୍ୱିତୀୟରେ ଯୁବ ପ୍ରତିଭାର ସନ୍ଧାନ ନେଇ ଓ ସେମାନଙ୍କର ପୃଷ୍ଠପୋଷକତା କରି ସେମାନଙ୍କୁ ରାଷ୍ଟ୍ରର ବିଜ୍ଞାନ ବିକାଶର ଦାୟିତ୍ୱ ଅର୍ପଣ କରିବାକୁ ପଡ଼ିବ । ବିଜ୍ଞାନକୁ ପୁନର୍ଜୀବନ ଦେବା ଉଦ୍ଦେଶ୍ୟରେ ଯେଉଁ ଆନ୍ତର୍ଜାତିକ ମାନଦଣ୍ଡ ସ୍ଥିର କରାଯାଇଛି, ବିଜ୍ଞାନ ନୀତି ପ୍ରଣୟନରେ ତା'ର ମୁଖ୍ୟ ବିଭାବ ସମ୍ବନ୍ଧରେ ମୁଁ ଆପଣଙ୍କୁ ସୂଚନା ଦେଉଛି ।

ନଅ ଶହ ବର୍ଷ ତଳେ ବୋଖାରାରେ ବାସ କରୁଥିଲେ ଜଣେ ପ୍ରଖ୍ୟାତ ମୁସଲମାନ୍ ଚିକିତ୍ସକ । ତାଙ୍କ ନାମ ଥିଲା ଆଲ୍ ଆସୁଲି । ସେ ମେଡିକାଲ୍ ଫାର୍ମାକୋପିଆ ବିଷୟରେ ଏକ ପୁସ୍ତକ ରଚନା କରିଥିଲେ । ଉକ୍ତ ପୁସ୍ତକଟି ଦୁଇ ଖଣ୍ଡରେ ବିଭକ୍ତ ହୋଇଥିଲା । ସେ ପ୍ରଥମ ଖଣ୍ଡର ନାମ ରଖିଥିଲେ "ଥିଲାବାଲାଙ୍କ ରୋଗ" ଓ ଦ୍ୱିତୀୟ ଖଣ୍ଡର ନାମ ରଖିଥିଲେ "ନଥିଲାବାଲାଙ୍କ ରୋଗ" । ଆଜି ଯଦି ଆଲ୍ ଆସୁଲି ଜୀବିତ ଥାଆନ୍ତେ ଏବଂ ମାନବ ଜାତି ନିଜେ ନିଜ ଉପରକୁ ଆମନ୍ତ୍ରଣ କରି ଆଣିଥିବା ସମସ୍ୟା ସମ୍ବନ୍ଧରେ ପୁସ୍ତକ ରଚନା କରିବାକୁ ମନସ୍ଥ କରନ୍ତେ, ତେବେ ସେ ନିଜର ଫାର୍ମାକୋପିଆକୁ ଠିକ୍ ସେହି ନାମରେ ଦୁଇଟି ଖଣ୍ଡରେ ବିଭକ୍ତ କରି ଯେ ପ୍ରକାଶ କରନ୍ତେ, ଏଥିରେ ମୋର କୌଣସି ସନ୍ଦେହ ନାହିଁ ।

ପ୍ରଥମ ଖଣ୍ଡରେ ଉଲ୍ଲେଖ ରହନ୍ତା ମାନବ ଜାତିକୁ ଆଣବିକ ଅସ୍ତ୍ରରେ ସମ୍ପୂର୍ଣ୍ଣ ନିଶ୍ଚିହ୍ନ କରିଦେବା ନିମନ୍ତେ ଶିଳ୍ପୋନ୍ନତ ଦେଶମାନଙ୍କର ହୀନ ଚକ୍ରାନ୍ତର ବିବରଣୀ । ଦ୍ୱିତୀୟ ଖଣ୍ଡରେ ବର୍ଣ୍ଣିତ ହୁଅନ୍ତା ଅଭାବ, ଅନାହାର ଓ ଦୁର୍ଭିକ୍ଷ ପ୍ରପୀଡ଼ିତ ଦରିଦ୍ର ଗୋଷ୍ଠୀର କାହାଣୀ । ସେ ହୁଏତ ଉଲ୍ଲେଖ କରନ୍ତେ ଯେ ଏହି ଦୁଇ ବ୍ୟାଧିର ଉତ୍ସ ସେହି ବିଜ୍ଞାନ ଓ ଶିଳ୍ପ ବିଦ୍ୟା । ଧନୀମାନଙ୍କ କ୍ଷେତ୍ରରେ ଏହାର ବ୍ୟବହାର ମାତ୍ରାତିରିକ୍ତ ଓ ଦରିଦ୍ରମାନଙ୍କ କ୍ଷେତ୍ରରେ ଏହାର ଉପଯୋଗ ମାତ୍ରାନ୍ୟୂନ ।

ସେ ହୁଏତ ମତ ଦେଇଥାନ୍ତେ ଯେ ଲୋକେ ଦାରିଦ୍ର୍ୟ, ଅଜ୍ଞତା ତଥା ଅନୁନ୍ନତ ଅବସ୍ଥାରେ କାଳାତିପାତ କରିବାର ହେତୁ ନିର୍ଦ୍ଧାରଣ କରିବା ଅପେକ୍ଷାକୃତ ଦୁରୂହ ବ୍ୟାପାର । କାରଣ ସମଗ୍ର ବିଶ୍ୱରୁ ଦାରିଦ୍ର୍ୟ, ଅସୁସ୍ଥତା ଏବଂ ଅକାଳ ମୃତ୍ୟୁର ସମ୍ପୂର୍ଣ୍ଣ ନିବାରଣ ପାଇଁ ପୃଥିବୀରେ ବୈଷୟିକ, ବୈଜ୍ଞାନିକ ଏବଂ ଭୌତିକ ଉତ୍ସର ଯଥେଷ୍ଟ ପ୍ରାଚୁର୍ଯ୍ୟ ରହିଛି । କିନ୍ତୁ ସେହି ସବୁ ଉତ୍ସକୁ ସୁଚିନ୍ତିତ ତଥା ସୁନିୟନ୍ତ୍ରିତ ଭାବରେ ଉପଯୋଗ କଲେ ସିନା ତାହା ସମସ୍ୟା ସମାଧାନରେ ସହାୟକ ହୋଇ ପାରିବ ।

ମୁଁ ଏ ବିଷୟରେ ଦୃଢ଼ ନିଶ୍ଚିତ ଯେ, ବିଶ୍ୱରେ ଆଣବିକ ଅସ୍ତ୍ରଶସ୍ତ୍ରର ଭୟ ଅପସରି ଯାଇ ପ୍ରତିଷ୍ଠିତ ହେବ ଆଣବିକ ଶାନ୍ତି । କାରଣ ଆଣବିକ ଅସ୍ତ୍ରଶସ୍ତ୍ରର ଭୟାବହତା ପ୍ରତି ମଣିଷ ଜାତି ଏବେ ସଚେତନ ହୋଇ ଉଠୁଛି । ଶିଳ୍ପୋନ୍ନତ ଦେଶମାନେ ଆଣବିକ ଶକ୍ତିର ଅପବ୍ୟବହାର ସମ୍ବନ୍ଧରେ ଅବଗତ ହେଲେଣି । ତେଣୁ ଭବିଷ୍ୟତ ପ୍ରତି ଆଶା ପୋଷଣ କରିବାରେ ଅସ୍ୱାଭାବିକତା କିଛି ନାହିଁ ।

ଆଣବିକ ଶାନ୍ତି ପ୍ରତିଷ୍ଠା ସମ୍ଭବ ହେଲେ ବିଶ୍ୱ ବାର୍ଷିକ ୧୦୦ ବିଲିୟନ ଡଲାର୍‌ର ପୁଞ୍ଜି ସଞ୍ଚୟ କରିବାକୁ ସମର୍ଥ ହୋଇପାରିବ । ବର୍ତ୍ତମାନ ପୃଥିବୀର ସାମରିକ ବ୍ୟୟର ଏହା ଏକ ଦଶମାଂଶ । ଏହି ଅର୍ଥର ଏକ ଦଶମାଂଶ ବା ୧୦ ବିଲିୟନ ଡଲାର୍ ବିକାଶଶୀଳ ଦେଶମାନଙ୍କୁ ସାହାଯ୍ୟ ଆକାରରେ ଯୋଗାଇ ଦେବାକୁ ମୁଁ ଶିଳ୍ପୋନ୍ନତ ରାଷ୍ଟ୍ରର ରାଷ୍ଟ୍ରନାୟକମାନଙ୍କୁ ନିବେଦନ କରୁଛି । ଏହି ଦଶ ବିଲିୟନ ଡଲାର୍ ମଧ୍ୟରୁ ପାଞ୍ଚ ବିଲିୟନ ଡଲାର୍ ବିକାଶଶୀଳ ଦେଶମାନଙ୍କରେ ବିଜ୍ଞାନ ଓ ବିଜ୍ଞାନ ଶିକ୍ଷା ଉଦ୍ଦେଶ୍ୟରେ ବ୍ୟୟିତ ହେବା ବାଞ୍ଛନୀୟ ।

## ଦୁଇ ହଜାର ମସିହା ପାଇଁ ଅନ୍ୟ ଏକ ଲକ୍ଷ୍ୟ :

ମୋର ଏକାନ୍ତ ନିବେଦନ ଯେ ମଣିଷ ବିଶ୍ୱରେ ଏବେ ପ୍ରକୃତ ଶାନ୍ତି ସ୍ଥାପନ ନିମନ୍ତେ ପ୍ରୟାସ କରୁ । ଶାନ୍ତି ସ୍ଥାପନ ଉଦ୍ୟମରେ ଯେଉଁ ଅର୍ଥ ବଞ୍ଚିଯିବ, ତାକୁ ବିଜ୍ଞାନର ବିକାଶ ଉଦ୍ଦେଶ୍ୟରେ ବିନିଯୋଗ କରାଯାଉ । କିନ୍ତୁ ପାଶ୍ଚାତ୍ୟ ଦେଶମାନଙ୍କର ବୈଜ୍ଞାନିକ ଗୋଷ୍ଠୀଙ୍କ ସକ୍ରିୟ ସହଯୋଗ ବିନା ତାହା ସମ୍ଭବ ହୋଇପାରିବ ନାହିଁ ।

ଏ ସବୁ ସତ୍ତ୍ୱେ ମୁଁ ଦ୍ୱିଧାହୀନ ଭାବରେ କହିବାକୁ ଚାହେଁ ଯେ ବିକାଶଶୀଳ ଦେଶମାନଙ୍କରେ ବିଜ୍ଞାନକୁ ବଳାତ୍କାରରେ ଅକ୍ତିଆର କରି

ନେବାର କୌଣସି ପ୍ରଚେଷ୍ଟା ମୁଁ ଲକ୍ଷ୍ୟ କରିପାରୁ ନାହିଁ। ବିଜ୍ଞାନ ଯେ ଜୀବନର ଏକ ମୁଖ୍ୟ ବିଭାବ, ଏ ସମ୍ପର୍କରେ ଆମର ହୃଦ୍‌ବୋଧ ହେଉନାହିଁ। ଏହି ପରିପ୍ରେକ୍ଷୀରେ ବିଚାର କଲେ, ଆମ ଶାସକମାନଙ୍କର ଦରବାର ବୈଜ୍ଞାନିକମାନଙ୍କ ଦ୍ୱାରା ଅଳଙ୍କୃତ ହେବାର ସମୟ ଉପସ୍ଥିତ ହୋଇଗଲାଣି ବୋଲି ମୋର ମତ।

ଆପଣମାନେ କିମ୍ବଦନ୍ତୀ ବର୍ଣ୍ଣିତ ସେହି ମହାନ୍ ବ୍ୟକ୍ତିତ୍ୱ ରାଜା ଆର୍ଥରଙ୍କ ବିଷୟରେ ଶୁଣିଥିବେ। ତାଙ୍କ ଦରବାରରେ ଥିଲେ ମେର୍‌ଲିନ୍ ନାମକ ଜଣେ ଯାଦୁକର। ଯାଦୁ ବିଦ୍ୟାର ସାହାଯ୍ୟ ନେଇ ମେର୍‌ଲିନ୍ ଷ୍ଟିଲର୍ ତରବାରୀ ତିଆରି କରି ପକାଉଥିଲେ ଓ ଔଷଧ ଗୁଣ ଥିବା ମନ୍ତ୍ରପୂତ ଜଳ ବ୍ୟବହାର କରିବାକୁ ଦେଇ ରୋଗ ଭଲକରି ଦେଉଥିଲେ। ମୋର ଧାରଣା ଯେ ଆମେ ସବୁ ଆଜିକାର ବୈଜ୍ଞାନିକ ଗୋଷ୍ଠୀ ସେହି ଯାଦୁକର ମେର୍‌ଲିନ୍‌ଙ୍କ ସହ ତୁଳନୀୟ। କିମ୍ବଦନ୍ତୀର ମେର୍‌ଲିନ୍ ହୁଏତ ଯେଉଁଭଳି ଯାଦୁ ବିଦ୍ୟାର କଳ୍ପନା ବି କରିପାରି ନଥିଲେ, ଆମେ ତାହାଠାରୁ ଯଥେଷ୍ଟ ଉଚ୍ଚକୋଟୀର ଯାଦୁ କରିପାରିବାକୁ ସମର୍ଥ। ମେର୍‌ଲିନ୍ ସିନା ବସ୍ତୁର ରୂପାନ୍ତର କରି ପାରୁଥିଲେ। ଆମେ କିନ୍ତୁ ସମାଜକୁ ରୂପାନ୍ତରିତ କରିଦେବା ପାଇଁ ସମର୍ଥ।

କିନ୍ତୁ ବଡ଼ ବିଡ଼ମ୍ବନାର ବିଷୟ ଏହି ଯେ, ବିକାଶଶୀଳ ଦେଶମାନଙ୍କର ଦରବାରରେ ଆମ ଭଳି ମେର୍‌ଲିନ୍‌ଙ୍କୁ ନ୍ୟାଯ୍ୟ ମର୍ଯ୍ୟାଦା ମିଳି ନାହିଁ। ହେଲେ ଏବେ ବି କ'ଣ ଆପଣମାନଙ୍କୁ ଆମନ୍ତ୍ରଣ କରାଇ ହେବନାହିଁ? କେହି କେହି ହୁଏତ କହିପାରନ୍ତି, ସମ୍ଭବତଃ ଠିକ୍ ବି କହିପାରୁଥାନ୍ତି ଯେ ବିକାଶଶୀଳ ଦେଶମାନଙ୍କର ମେର୍‌ଲିନ୍‌ମାନେ ହେଉଛନ୍ତି ସୌଖୀନ ମେର୍‌ଲିନ୍। ସେମାନେ ନିଜର ପ୍ରୟୋଗାତ୍ମକ କଳା ସମ୍ପର୍କରେ ଅନଭିଜ୍ଞ। ସେମାନେ ନିଜ ନିଜର ହସ୍ତୀଦନ୍ତ ନିର୍ମିତ ଦୁର୍ଗ ମଧ୍ୟରେ ବିଳାସରେ କାଳାତିପାତ କରିବାକୁ ଅଧିକ ପସନ୍ଦ କରୁଥିବାରୁ ଦକ୍ଷିଣ ଗୋଲାର୍ଦ୍ଧର ଏହି ବିକାଶଶୀଳ ଦେଶମାନେ ଉତ୍ତର ଗୋଲାର୍ଦ୍ଧରୁ ବାସ୍ତବ ମେର୍‌ଲିନ୍‌ମାନଙ୍କୁ ଆମଦାନୀ କରିବାକୁ ବାଧ୍ୟ ହେଉଛନ୍ତି। ଏହା ହୁଏତ ସତ୍ୟ, କିନ୍ତୁ କାହିଁକି?

ବିକାଶଶୀଳ ଦେଶମାନଙ୍କରେ ମେର୍‌ଲିନ୍‌ମାନଙ୍କର ସଂଖ୍ୟା ଯଥେଷ୍ଟ ନହେବା କ'ଣ ଏହି ନମ୍ବୁସକତ୍ୱର କାରଣ? ତଥାପି ସେହି କତିପୟ ମେର୍‌ଲିନ୍‌ମାନଙ୍କୁ ନିଜ ଦେଶର ପ୍ରଗତି ପାଇଁ ଅବଦାନ ଦେବା ନିମନ୍ତେ ତ ନିମନ୍ତ୍ରଣ କରାଯାଇ ପାରନ୍ତା? ଶାସକ କିମ୍ବା ଦେଶର ଅର୍ଥନୀତିକୁ ନିୟନ୍ତ୍ରଣ କରୁଥିବା ଅର୍ଥନୀତିଜ୍ଞ, କେହି ହେଲେ ବି ବୈଜ୍ଞାନିକମାନଙ୍କର ଭୂମିକାକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି। କିନ୍ତୁ ବାସ୍ତବରେ ଦେଖିବାକୁ ଗଲେ ପ୍ରଗତି ରଥର ପ୍ରକୃତ ସାରଥୀ ବୈଜ୍ଞାନିକ ନୁହେଁ ତ ଆଉ କିଏ?

ବିଜ୍ଞାନୀମାନେ ବିଜ୍ଞାନ ବିଶାରଦ ସତ! କିନ୍ତୁ ସାମୂହିକ ପ୍ରଗତି ହାସଲ କରିବା ନିମନ୍ତେ ଯେଉଁ ସମସ୍ୟାମାନ ଉଦ୍ଭବ ହୋଇଥାଏ, ସେଗୁଡ଼ିକୁ ସମାଧାନ କରିବାର କଳାରେ ବ୍ୟୁତ୍ପତ୍ତି ଅର୍ଜନ କରିବା ପାଇଁ ଏହି ମେର୍‌ଲିନ୍ ବୈଜ୍ଞାନିକ ଗୋଷ୍ଠୀ ଅଧିକ ଅନୁଭୂତିସମ୍ପନ୍ନ ହେବା ଆବଶ୍ୟକ। ଦୁଇ ହଜାର ମସିହା ପୂର୍ବରୁ ପାରସ୍ପରିକ ଅବିଶ୍ୱାସର ଏହି ଖଳବଚି ଧ୍ୱଂସ କରି ଦିଆଯାଇ ପାରିବ ବୋଲି ମୁଁ ଆଶା କରୁଛି। ଦୁଇ ହଜାର ମସିହା ଏକ ମହାନ୍ ସମାହାରରେ ପରିଣତ ହେଉ। ଉକ୍ତ ବର୍ଷଟିରେ ବିଜ୍ଞାନକୁ ତା'ର ନ୍ୟାଯ୍ୟ ମର୍ଯ୍ୟାଦା ମିଳୁ। ପ୍ରଗତି ପାଇଁ ବିଜ୍ଞାନର ଯଥୋଚିତ ବିନିଯୋଗ କରିବାର ସମସ୍ତ ସୁଯୋଗ ସୃଷ୍ଟି ହେଉ। ଚାଲନ୍ତୁ, ଆମେ ସମସ୍ତେ ମିଳିମିଶି ଏହି ସ୍ୱପ୍ନର ସାର୍ଥକତା ନିମନ୍ତେ ପ୍ରୟାସ କରିଯିବା* ।

ସହକାରୀ ଅଧ୍ୟାପକ,
ଜୀବ ରସାୟନ ବିଭାଗ,
ବୀର ସୁରେନ୍ଦ୍ରସାଏ ଚିକିତ୍ସା ମହାବିଦ୍ୟାଳୟ,
ବୁର୍ଲା, ସମ୍ବଲପୁର–୭୬୮ ୦୧୭ ।

[*ନୋବେଲ୍ ପୁରସ୍କାର ବିଜେତା ପାକିସ୍ତାନୀ ବୈଜ୍ଞାନିକ ପ୍ରଫେସର୍ ଅବଦୁସ୍ ସଲାମ୍ (ଇଟାଲୀର ଟ୍ରିଏଷ୍ଟସ୍ଥିତ International Centre for Theoretical Physicsର ନିର୍ଦ୍ଦେଶକ ଏବଂ Third World Academy of Sciencesର ମୁଖ୍ୟ)ଙ୍କ ରେଡ଼ିଓରେ ପ୍ରଦତ୍ତ Why the devel.ping world remains a poor third : closing the gap in science and technology ଭାଷଣର ଅନୁବାଦ – ସଂ]



## ଅତ୍ୟାଧୁନିକ ଓଡ଼ିଆ ଲିପିରେ ଡେସ୍କ ଟପ୍ ପବ୍ଲିଶିଂ

ମୁଦ୍ରଣଶିଳ୍ପରେ ଅତ୍ୟାଧୁନିକ ଅକ୍ଷର ସଂଯୋଜନ ପ୍ରଣାଳୀ, ଡେସ୍କ୍ ଟପ୍ ପବ୍ଲିଶିଙ୍ଗ୍ (D.T.P.) ପାଇଁ ଓଡ଼ିଆ ଅକ୍ଷର ପ୍ରସ୍ତୁତି ବର୍ତ୍ତମାନ ଦ୍ରୁତ ଗତିରେ ଆଗେଇ ଚାଲିଛି। ନୂଆଦିଲ୍ଲୀସ୍ଥିତ ଆଇଇ ସିଷ୍ଟମସ୍ ଲିମିଟେଡ୍ ଆନୁକୂଲ୍ୟରେ ଓଡ଼ିଆ ଅକ୍ଷରର ଉନ୍ନତ ରୂପ ଶ୍ରୀ ଅରବିନ୍ଦ ସରକୁଆଲ୍, ଫଣ୍ଟ ଡିଜାଇନରଙ୍କ ଦ୍ୱାରା ହେବାକୁ ଯାଉଛି। ଏଇ ଉତ୍ତରପ୍ରଦେଶ ବାସିନ୍ଦା, ଓଡ଼ିଆ ଅକ୍ଷର ପ୍ରସ୍ତୁତି କ୍ଷେତ୍ରରେ ତାଙ୍କର କୃତିତ୍ୱ ପ୍ରତିପାଦିତ କରିଛନ୍ତି।

• ମଇ ପହିଲା ଉପଲକ୍ଷେ

# ଶିଳ୍ପ ଓ ଶ୍ରମିକ

ଶ୍ରୀ ମୁରାରୀ ଜେନା

ଉତ୍ପାଦନରୁ ହିଁ ସମୃଦ୍ଧିର ଜନ୍ମ । ଏଇ ଉତ୍ପାଦନର ସାଧନ ହେଲା ଚାରିଗୋଟି — ମାଲ, ପୁଞ୍ଜି, ଶ୍ରମ ଓ ବ୍ୟବସ୍ଥା । ଏଇ ଚାରିଗୋଟି ମଧ୍ୟରୁ ଦୁଇଟି ପ୍ରଧାନ, ପୁଞ୍ଜି ଏବଂ ଶ୍ରମ । ପୁଞ୍ଜି ମାଲ କିଣି ପାରେ, ଶ୍ରମିକ ଓ ବ୍ୟବସ୍ଥାପକ ନିଯୁକ୍ତି କରିପାରେ । ତେଣୁ ପୁଞ୍ଜି ଗୁହେଁ ସର୍ବମୟ କର୍ତ୍ତୃତ୍ୱ । ମାଲ ନିର୍ଜୀବ, ତେଣୁ ପୁଞ୍ଜି ମାଲକୁ ଯେପରି ବ୍ୟବହାର କରିପାରେ, ସେଥିରେ ମାଲ ପ୍ରତିବାଦ କରି ପାରିବ ନାହିଁ । କିନ୍ତୁ ସଚେତନ ଶ୍ରମିକ ଓ ବ୍ୟବସ୍ଥାପକ ସବୁ ସମୟରେ ପୁଞ୍ଜିର ମେଣ୍ଟୀଗାମ୍ଭୀର୍ଯ୍ୟ ହୁଏତ ସ୍ୱୀକାର କରି ନପାରନ୍ତି । ତେବେ ଅନେକ ସମୟରେ ଯେ ପୁଞ୍ଜିର ମାଲିକ, ସେ ନିଜେ ବ୍ୟବସ୍ଥାପକ ହୋଇଯାଏ । ତେଣୁକରି ବହୁ କ୍ଷେତ୍ରରେ ପୁଞ୍ଜି ଓ ବ୍ୟବସ୍ଥାପକ ମଧ୍ୟରେ ବିରୋଧ ଉତ୍କଟ ହୁଏ ନାହିଁ । ଅସଲ ବିରୋଧ ହୁଏ ପୁଞ୍ଜିପତି ଓ ଶ୍ରମିକ ମଧ୍ୟରେ ।

ଶ୍ରମରୁ ହିଁ ପୁଞ୍ଜିର ଜନ୍ମ ଓ ବିକାଶ । ତେଣୁ ଶ୍ରମିକ ଗୁହେଁ, ଉତ୍ପନ୍ନ ସମୃଦ୍ଧିରେ ପୁଞ୍ଜିପତିର ଯେତିକି ଭାଗ, ତା'ର ମଧ୍ୟ ସେତିକି ଭାଗ ରହିଛି । ଉତ୍ପାଦନର ନିୟନ୍ତ୍ରଣରେ ତା'ର ମଧ୍ୟ ପ୍ରମୁଖ ଭାଗ ରହିବା ବିଧେୟ । ମାଲିକ ହୁଏତ ଶ୍ରମିକର ଏ ଆଶା ଆକାଂକ୍ଷାକୁ ପୂରଣ କରିବାକୁ ପ୍ରସ୍ତୁତ ନୁହେଁ ।

ଏଇ କ୍ଷୁବ୍ଧବୋଧ ଊନବିଂଶ ଶତାବ୍ଦୀର ଶ୍ରମିକ ସଙ୍ଗଠନକୁ ଜନ୍ମ ଦେଲା । ମାଲିକ ତରଫରୁ ଯଦି ଆଗରୁ ଶ୍ରମିକମାନଙ୍କ ପ୍ରତି ସହକର୍ମୀର ଆଦର ଦେଖାଯାଇଥାନ୍ତା, ତା'ହେଲେ ମାଲିକ ଶ୍ରମିକ ସଂଘର୍ଷ ହୁଏତ କୌଣସି ଦିନ ତୀବ୍ର ହୋଇ ନଥାନ୍ତା । ଉତ୍ପାଦନ ଅବ୍ୟାହତ ରହିବାରେ ଅତ୍ୟନ୍ତ ସହାୟକ ହୋଇଥାନ୍ତା ଓ ଦେଶର ସାମୁହିକ ସମୃଦ୍ଧି ବଢ଼ି ବଢ଼ି ଚାଲିଥାନ୍ତା । ପାରସ୍ପରିକ ସହୃଦୟତାର ଅଭାବରୁ ଯେତେବେଳେ ଶିଳ୍ପ ସମ୍ପର୍କର ତିକ୍ତତା ଉତ୍ପାଦନକୁ ବ୍ୟାହତ କଲା, ତାହା ସମଗ୍ର ଦେଶର ସମୃଦ୍ଧିକୁ ବ୍ୟାହତ କରିବାକୁ ବସିଲା । ଠିକ୍ ସେତିକିବେଳେ ଶିଳ୍ପପତି ଓ ଶ୍ରମିକ ମଧ୍ୟରେ ଐକାନ୍ତିକ ଅନୁରକ୍ତି ଆଣିବା ପାଇଁ ବିଜ୍ଞାନୀକ ଲୋକେ ଚେଷ୍ଟାବାନ୍ ହେଲେ । ଉତ୍ସାହୀ ମଜୁରୀ ପ୍ରଥା ଏଇ ଚେଷ୍ଟାର ଫଳ । କିନ୍ତୁ ପରେ ଦେଖାଗଲା ଅର୍ଥ କେବଳ ଶ୍ରମିକର ଶିଳ୍ପ ଅନୁରକ୍ତିର ଆକର୍ଷଣ ନୁହେଁ । ତେଣୁ ଅର୍ଥ ସର୍ବାପେକ୍ଷା ଶକ୍ତିଶାଳୀ ଆକର୍ଷଣ ବୋଲି କହିବା ସବୁ କ୍ଷେତ୍ରରେ ଯୁକ୍ତିଯୁକ୍ତ ହେଲା ନାହିଁ । ଏଣୁ ଯାହା ଶ୍ରମିକର ମନ ଉପରେ ସର୍ବାପେକ୍ଷା ବେଶୀ ପ୍ରଭାବ ପକାଏ, ସେଇ ସେଇ ବସ୍ତୁ ଶିଳ୍ପ ପ୍ରତି ଶ୍ରମିକର ଅନୁରକ୍ତି ସୃଷ୍ଟି କରିବାର ମୁଖ୍ୟ ଉପାଦାନ ହୁଏ । ଏଇ ମନସ୍ତାତ୍ତ୍ୱିକ ଦୃଷ୍ଟିକୋଣରୁ ଦେଖିବାକୁ ଗଲେ, ଶିଳ୍ପ ପ୍ରତି ଶ୍ରମିକ ମନରେ ସ୍ୱକୀୟତା ବା ଆତ୍ମୀୟତା ବୋଧ ସୃଷ୍ଟି କରି ପାରିଲେ ଶିଳ୍ପ ଅନୁଷ୍ଠାନ ପ୍ରତି ତା'ର ଅନୁରାଗ ଅବିଛେଦ୍ୟ ରହିବ । ଏହି ସ୍ୱକୀୟତା ବା ଆତ୍ମୀୟତା ବୋଧ ଶ୍ରମିକ ମନରେ ସୃଷ୍ଟି କରାଯିବ କିପରି ? ଏ ଉଦ୍ଦେଶ୍ୟରେ ଶିଳ୍ପରେ ଶ୍ରମିକର ଭାଗଦାରୀ ଓ ନିୟନ୍ତ୍ରଣ ଅଧିକାର ଦିଓଟି ପ୍ରଧାନ ଅବଲମ୍ବନ ବୋଲି ବିଚାର କରାଯାଇ ପାରେ । ଶିଳ୍ପରେ ଶ୍ରମିକର ଭାଗଦାରୀ ହୁଏତ ସମୟ ସାପେକ୍ଷ ହୋଇପାରେ, କିନ୍ତୁ ଶିଳ୍ପ ନିୟନ୍ତ୍ରଣରେ ଶ୍ରମିକର ସହଯୋଗ ଦିଗରେ କୌଣସି ପ୍ରତିବନ୍ଧକ ହୁଏତ ରହିବ ନାହିଁ । ପ୍ରଥମ ୟୁରୋପୀୟ ମହାଯୁଦ୍ଧ ସମୟରେ ଉତ୍ପାଦନର ବୃଦ୍ଧି ନିମନ୍ତେ ଶ୍ରମିକ ଓ ମାଲିକର ସୁସମ୍ପର୍କ ରକ୍ଷା କରିବାର ଉପାୟ ଚିନ୍ତା କରିବା ପାଇଁ ୧୯୧୬ ମସିହା ମାର୍ଚ୍ଚରେ WHITLEY କମିଟି ଆହୂତ ହୋଇଥିଲା । ଏଇ WHITLEY COMMITTEE ପାଞ୍ଚୋଟି ରିପୋର୍ଟ ଦେଇଥିଲେ । ତନ୍ମଧ୍ୟରୁ ପ୍ରଥମଟି ପ୍ରଧାନ । ତାହା ହ୍ୱିଟ୍‌ଲେ ରିପୋର୍ଟ (WHITLEY REPORT) ନାମରେ ପ୍ରଖ୍ୟାତ । ଏଇ ରିପୋର୍ଟରେ ଶ୍ରମିକ ଓ ମାଲିକ ମଧ୍ୟରେ ସ୍ଥାୟୀ ସୁସମ୍ପର୍କ ଆଣିବା ନିମନ୍ତେ ଅର୍ଥ ଅପେକ୍ଷା ଅନ୍ୟ ଭିତ୍ତିର ଆଶ୍ରୟ ନେବାକୁ ପଡ଼ିବ ବୋଲି କମିଟି ସୁପାରିଶ କରିଥିଲେ ଏବଂ ଯେଉଁ ଶିଳ୍ପ ଶ୍ରମିକର ଭାଗ୍ୟ ନିୟନ୍ତ୍ରଣ କରୁଛି, ସେ ଶିଳ୍ପର ଗତି ନିୟନ୍ତ୍ରଣ ପାଇଁ ସମସ୍ତ ଆଲୋଚନାରେ ଶ୍ରମିକର ମାଲିକ ସହିତ ସୁଯୋଗ ରହିବାର ଆବଶ୍ୟକତା, କମିଟି ଅନୁଭବ କରିଥିଲେ । ଏଇ କମିଟିଙ୍କ ସୁପାରିଶ ଅନୁସାରେ ବିଭିନ୍ନ ଶିଳ୍ପ ପାଇଁ ଜାତୀୟ–ମିଳିତ–ଶିଳ୍ପ ସଭା ସୃଷ୍ଟି ହେଲା । ଏଇ ଶିଳ୍ପ ସଭାଗୁଡ଼ିକରେ ଶ୍ରମିକ ଓ ମାଲିକଙ୍କର ପ୍ରତିନିଧିମାନେ ଏକତ୍ର ବସି ବିଭିନ୍ନ ବିଷୟରେ ଚର୍ଚ୍ଚା କରିବା ପାଇଁ ବ୍ୟବସ୍ଥା ରହିଲା । ଏଇ ସଭା ଧାରାବାହିକ ଭାବେ ଆହୂତ ହୋଇ ଶ୍ରମିକମାନଙ୍କ ଅଭିଜ୍ଞତାର ଉପଯୋଗ କରିବା, ନିଯୁକ୍ତି ଓ ମଜୁରୀ ବିଷୟରେ ନିଷ୍ପତ୍ତି କରିବା, ବୈଜ୍ଞାନିକ ଶିକ୍ଷା ବିଷୟରେ ଯୋଜନା କରିବା ପାଇଁ ସୁପାରିଶ କରିଥିଲେ । ଏଇଠାରୁ ଶିଳ୍ପ ସଂସ୍ଥାମାନଙ୍କରେ କାରଖାନା କମିଟିର ଉତ୍ପତ୍ତି ହୋଇଥିଲା । ଉତ୍ପାଦନ ପ୍ରଣାଳୀର ଉତ୍କର୍ଷ ସାଧନ, ଗବେଷଣା ଓ ପରିଚାଳନା ଇତ୍ୟାଦି ବିଷୟରେ ଶ୍ରମିକର ଅଭିଜ୍ଞତାକୁ ଗୁରୁତ୍ୱ ଦେବାକୁ ହ୍ୱିଟଲେ (WHITLEY) କମିଟିଙ୍କର ସୁପାରିଶ ଥିଲା । କିନ୍ତୁ ବାସ୍ତବିକ୍ ଖୁବ୍ ଅଳ୍ପ ସଂଖ୍ୟକ କାରଖାନା କମିଟି

ଉତ୍ପାଦନର ଉତ୍କର୍ଷ ପାଇଁ ବିଶେଷ ମତାମତ ଦେଇପାରି ଥିଲେ । ଶ୍ରମିକର ସ୍ୱାର୍ଥରକ୍ଷା ଦିଗରେ ଏଇ କାରଖାନା କମିଟିଗୁଡ଼ିକ ପ୍ରାୟ ମିଳାମିଶା ମନୋଭାବ ନେଇ ଚାଲୁଥିଲେ ମଧ୍ୟ, ସଫଳତା ଲାଭ କରି ପାରିଲେ ନାହିଁ । ଏଇ କମିଟିଗୁଡ଼ିକର ବିଫଳତାର ମୁଖ୍ୟ କାରଣ ହେଉଛି, ମାଲିକମାନେ ଶ୍ରମିକମାନଙ୍କୁ ଆଲୋଚନାରେ ସମାନ ଆସନ ଦେବାକୁ କୁଣ୍ଠିତ ହେଉଥିଲେ ଏବଂ ସେମାନେ ଅନେକ ଗୁରୁତ୍ୱପୂର୍ଣ୍ଣ ବିଷୟକୁ ମାଲିକର ଖାସ୍ ବିଶ୍ୱରର ବିଷୟ ରଖି, ସମସ୍ତ ବିଷୟ ଆଲୋଚନା ପାଇଁ କାରଖାନା କମିଟି ହାତକୁ ଛାଡ଼ିଦେଉ ନଥିଲେ ।

ଭାରତବର୍ଷରେ ଏଇ ହ୍ୱିଟଲେ କମିଟିର ଆଦର୍ଶରେ ୧୯୪୭ ମସିହାରେ ଶିଳ୍ପ ବିବାଦ ଆଇନ୍ ଅନୁଯାୟୀ ଶିଳ୍ପାନୁଷ୍ଠାନମାନଙ୍କରେ କାରଖାନା କମିଟି ଗଢ଼ିବାର ଆଇନଗତ ବ୍ୟବସ୍ଥା କରାଗଲା । ବିଲାତରେ ଯେଉଁ କାରଣରୁ କାରଖାନା କମିଟି ପୂର୍ଣ୍ଣ ସାଫଲ୍ୟ ଲାଭ କରିପାରି ନଥିଲା, ଭାରତବର୍ଷରେ ସେହି କାରଣରୁ କେତେକ କାରଖାନାରେ, କାରଖାନା କମିଟି ଅତି ସୁନ୍ଦର ରୂପେ କାର୍ଯ୍ୟ କରୁଥିଲେ ମଧ୍ୟ ବହୁ କ୍ଷେତ୍ରରେ ବିଶେଷ କିଛି କାର୍ଯ୍ୟ କରିପାରିଲା ନାହିଁ । କାରଖାନା କମିଟିର ନିଷ୍ପତ୍ତିରେ କୌଣସି ଆଇନଗତ ଅଧିକାର ନଥିବାରୁ ଏବଂ ଏହା ଅନେକ ସମୟରେ ଶ୍ରମିକ ସଙ୍ଘର ଆବଶ୍ୟକତାକୁ ଖର୍ବିତ କରୁଥିବା ହେତୁ କାରଖାନା କମିଟିଗୁଡ଼ିକ ପ୍ରତି ଶ୍ରମିକ ସଙ୍ଘର ବୈମନସ୍ୟ ବିଫଳତାର କାରଣ । କାରଖାନା କମିଟିଗୁଡ଼ିକ ଏ ପର୍ଯ୍ୟନ୍ତ ଏ ବିଷୟରେ ପ୍ରଥମ ଭାବୁକମାନଙ୍କର କଳ୍ପିତ ଲକ୍ଷ୍ୟରେ ଉପନୀତ ହୋଇପାରି ନଥିଲେ ମଧ୍ୟ ଦେଶ ବିଦେଶରେ ସମାନତା ରକ୍ଷା କରିବା ଦିଗରେ ତଥା ଉତ୍ପାଦନର ଉତ୍କର୍ଷ ସାଧନ ପାଇଁ ଏକ ଉତ୍କୃଷ୍ଟ ପନ୍ଥା ବୋଲି ସାବ୍ୟସ୍ତ ହୋଇ ସାରିଛି । ଫ୍ରାନ୍ସ ଓ ସୁଇଡେନ୍ ପ୍ରଭୃତି ଦେଶମାନଙ୍କରେ ବିଲାତ କିମ୍ବା ଭାରତବର୍ଷ ଅପେକ୍ଷା ବହୁତ ବିଷୟରେ ଆଲୋଚନା କରିବା ପାଇଁ କାରଖାନା କମିଟିଗୁଡ଼ିକର ବୈଧାନିକ ଅଧିକାର ରହିଛି । ଏ ସମସ୍ତ ଦୃଷ୍ଟିରୁ କାରଖାନା କମିଟି ଅକାର୍ଯ୍ୟକାରୀ ବୋଲି ଭାବିବା ଭ୍ରମାତ୍ମକ ହେବ । ଯାହାହେଉ, ବର୍ତ୍ତମାନର କର୍ତ୍ତୃପକ୍ଷ କାରଖାନା କମିଟିଗୁଡ଼ିକ ନୂତନ ଭିତ୍ତି ଉପରେ ଅବସ୍ଥାପିତ କରି ଶିଳ୍ପ–ସମ୍ପର୍କର ପ୍ରତିଷ୍ଠା, ଉତ୍ପାଦନର ଉତ୍କର୍ଷ ଓ ଶ୍ରମିକର ସମୃଦ୍ଧି ଆଣିବା ପାଇଁ ଯତ୍ନଶୀଳ ହେଉଛନ୍ତି ।

---

ଭଗତପୁର,
କଟକ–୯ ।



ପାରାଦୀପଠାରେ ଦ୍ୱିତୀୟ ଇସ୍ପାତ କାରଖାନା ପ୍ରତିଷ୍ଠା କରିବା ନିମନ୍ତେ ଦକ୍ଷିଣ କୋରିଆରୁ ଆସିଥିବା ପ୍ରତିନିଧିମାନଙ୍କ ସହିତ ମୁଖ୍ୟମନ୍ତ୍ରୀଙ୍କ ଆଲୋଚନା

• ବିଶେଷ ନିବନ୍ଧ

# ଶ୍ରମହାର : ଏକ ଅର୍ଥନୈତିକ ବିଶ୍ଳେଷଣ

ଡଃ ଶାନ୍ତି ଦାସ

ଶ୍ରମିକ ସମାଜ ସବୁ ଯୁଗରେ, ସବୁ ସମାଜରେ ଅବହେଳିତ ଓ ଉପେକ୍ଷିତ । ଇତିହାସ ଏହାର ସାକ୍ଷୀ । ଇତିହାସରେ ବର୍ଣ୍ଣିତ ଯେଉଁ ପ୍ରଧାନ ପ୍ରଧାନ ବିପ୍ଳବ ସଂଘଟିତ ହୋଇଛି ସେସବୁରେ ଶ୍ରମିକ ସମାଜର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଅବହେଳିତ ଶ୍ରମିକଙ୍କୁ ସାମାଜିକ ନ୍ୟାୟ ଦେବା ପାଇଁ ଆମେରିକାର ଗୃହ ଯୁଦ୍ଧ (Civil war), ଫରାସୀ ବିପ୍ଳବ ଓ ରୁଷ୍ ବିପ୍ଳବ ହୋଇଛି । ହୁଏତ ବିପ୍ଳବର ଠିକ୍ ପରେ ପରେ ସେମାନେ କେତେକ ସୁବିଧା ହାସଲ କରିବାକୁ ସକ୍ଷମ ହୋଇଛନ୍ତି । କିନ୍ତୁ ପରବର୍ତ୍ତୀ କାଳରେ ସେମାନଙ୍କ ସଙ୍ଗଠନର ଅଭାବରୁ ପୁନଶ୍ଚ ଦୁରାବସ୍ଥା ସେମାନଙ୍କୁ ଭୋଗ କରିବାକୁ ପଡିଛି । କେତେକ ଅର୍ଥନୀତି ବିଶାରଦ ଶ୍ରମିକମାନଙ୍କର ନିମ୍ନ ଜୀବନ ଧାରଣର ମାନ ଓ ନିମ୍ନ ମଜୁରୀ ହାରକୁ ଅର୍ଥନୀତିର ତତ୍ତ୍ୱ ଦ୍ୱାରା ସମର୍ଥନ ଜଣାଇଥିଲେ । ସେମାନଙ୍କର ମତ ଦୁଇଟି ମୁଖ୍ୟ ଅର୍ଥନୀତି ତତ୍ତ୍ୱ ଉପରେ ଆଧାରିତ । ଗୋଟିଏ ହେଲା 'ସର୍ବନିମ୍ନ ଜୀବନ ଧାରଣ (Subsistence theory) ତତ୍ତ୍ୱ' ଓ ଅନ୍ୟଟି ହେଲା 'ମଜୁରୀ ପାଣ୍ଠି ତତ୍ତ୍ୱ' (Wage fund theory) । ପ୍ରଥମ ତତ୍ତ୍ୱର ଆଲୋଚକ ଥିଲେ (Adam Smith) ସ୍ମିଥ୍, ରିକାର୍ଡୋ (Ricardo) ଓ ମାଲ୍‌ଥସ୍ (Malthus) । ସେମାନଙ୍କର ମତର ସାରାଂଶ ହେଲା ଯେ ଶ୍ରମିକମାନେ ଏକ ନିର୍ଦ୍ଦିଷ୍ଟ ବେତନ ହାର ପାଇବେ ଯାହାକି ସେମାନଙ୍କୁ ଏକ ନିର୍ଦ୍ଦିଷ୍ଟ ସଂଖ୍ୟାରେ ସୀମିତ ରଖିବ, ଯଦ୍ୱାରାକି ସେମାନେ ଏକ ସର୍ବନିମ୍ନ ଜୀବନ ଧାରଣ (Subsistence) ମାନରେ ବଞ୍ଚି ପାରିବେ । ଯଦି କୌଣସି କାରଣରୁ ସେମାନଙ୍କର ବେତନ ହାର ଉକ୍ତ ବେତନ ହାରଠାରୁ ଅଧିକ ହୁଏ ତେବେ ସେମାନେ ଅପେକ୍ଷାକୃତ କମ୍ ବୟସରେ ବିବାହ କରିବେ ଓ ସେମାନଙ୍କର ଅଧିକ ସନ୍ତାନ ସନ୍ତତି ହେବେ । ଫଳରେ ବେତନ ହାର ନିର୍ଦ୍ଦିଷ୍ଟ ସ୍ଥିରକୁ କମିଯିବ । ସେହିପରି, ଯଦି ଶ୍ରମ ହାର ଉକ୍ତ ବେତନ ହାରଠାରୁ କମ୍ ହେବ, ତେବେ ସେମାନେ ଅଧିକ-ବୟସରେ ବିବାହ କରିବେ ଓ ସନ୍ତାନ ସନ୍ତତି କମ୍ ହେବେ । ଶ୍ରମିକ ସଂଖ୍ୟା କମ୍ ହେବ ଓ ମଜୁରୀ ହାର ନିର୍ଦ୍ଦିଷ୍ଟ ସ୍ଥିରକୁ ଫେରି ଆସିବେ ।

ସିନିୟର (Senior) ଓ ମିଲ୍ (Mill) ଦ୍ୱିତୀୟ ତତ୍ତ୍ୱରେ ବିଶ୍ୱାସ କରୁଥିଲେ । ସେମାନଙ୍କ ମତରେ କୌଣସି ଅର୍ଥନୀତିରେ (Economy) ଏକ ନିର୍ଦ୍ଦିଷ୍ଟ ପାଣ୍ଠି ଶ୍ରମିକ ପାଇଁ ଉଦ୍ଦିଷ୍ଟ ଥାଏ । ଶ୍ରମିକମାନଙ୍କର ସଂଖ୍ୟା ବୃଦ୍ଧି ହେଲେ ଉକ୍ତ ପାଣ୍ଠି ମୁଣ୍ଡପିଛା କମ୍ ହୁଏ । ତେଣୁ ମଜୁରୀ କମେ । ଅପର ପକ୍ଷେ ସେମାନଙ୍କର ସଂଖ୍ୟା କମ୍ ହେଲେ ମୁଣ୍ଡପିଛା ଆୟ ବେଶୀ ହୁଏ । ଅତୀତରେ ଉକ୍ତ ଦୁଇ ତତ୍ତ୍ୱ ସାମାଜିକ ଚିନ୍ତାଧାରାକୁ ବିଶେଷ ଭାବେ ପ୍ରଭାବିତ କରିଥିଲା । ଫଳରେ ଶ୍ରମିକମାନଙ୍କର ଜୀବନ ଧାରଣର ମାନର ଉନ୍ନତି କରିବାର କଳ୍ପନା କରାଯାଇ ପାରୁ ନଥିଲା ।

## ନୂତନ ଦିଗ୍‌ଦର୍ଶନ

କିନ୍ତୁ ପରବର୍ତ୍ତୀ କାଳରେ ଶ୍ରମିକମାନଙ୍କର ସମସ୍ୟାକୁ ନୂତନ ଦିଗ୍‌ଦର୍ଶନ ଦେଲେ କାର୍ଲ ମାର୍କ୍ସ । ସେ ତାଙ୍କର ସୁପ୍ରସିଦ୍ଧ ପୁସ୍ତକରେ ପ୍ରମାଣ କରିଥିଲେ ଯେ ଶ୍ରମିକମାନଙ୍କର ଦୁଃଖ ଦୁର୍ଦ୍ଦଶା ପାଇଁ ପୁଞ୍ଜିପତି ନିୟନ୍ତ୍ରିତ ପ୍ରଣାଳୀ (Capitalistic system) ଦାୟୀ । ପୁଞ୍ଜିପତି–ମାନେ ଅଧିକରୁ ଅଧିକ ଲାଭ ପାଇଁ ଶ୍ରମିକଙ୍କୁ ଶୋଷଣ କରନ୍ତି । ପୁଞ୍ଜିପତିମାନେ ସର୍ବଦା ଲାଭ ବୃଦ୍ଧି କରିବାରେ ଚେଷ୍ଟିତ ହୁଅନ୍ତି । କିନ୍ତୁ ଶେଷରେ ବିଭିନ୍ନ କାରଣରୁ ପୁଞ୍ଜିପତି ନିୟନ୍ତ୍ରିତ ପ୍ରଣାଳୀର ଧ୍ୱଂସ ସାଧିତ ହୁଏ (Collapse of capitalism) । ତେଣୁ ମାର୍କ୍ସ ଶ୍ରମିକମାନଙ୍କୁ ଏକାଠି ସଙ୍ଗଠିତ ହେବାକୁ ଆହ୍ୱାନ ଦେଇଥିଲେ ଏବଂ କହିଥିଲେ ଶ୍ରମିକମାନେ ସଙ୍ଗଠିତ ହେଲେ ସେମାନଙ୍କର ସର୍ବବିଧ ମଙ୍ଗଳ ହେବ ।

କେନ୍‌ସ (Keynes) ମଧ୍ୟ ଶ୍ରମିକମାନଙ୍କର ଜୀବନ ଧାରଣର ମାନ ବୃଦ୍ଧି କରିବାକୁ ଚାହିଁଥିଲେ । କିନ୍ତୁ ସେ ମାର୍କ୍ସଙ୍କ ପରି ପୁଞ୍ଜିପତି ନିୟନ୍ତ୍ରିତ ପ୍ରଣାଳୀର ଧ୍ୱଂସ ସାଧନ ପାଇଁ କହି ନଥିଲେ । ବରଂ ପୁଞ୍ଜିପତି ନିୟନ୍ତ୍ରିତ ପ୍ରଣାଳୀର ସୁରକ୍ଷା ପାଇଁ ଶ୍ରମିକମାନଙ୍କର ଜୀବନ ଧାରଣର ମାନର ଉନ୍ନତି ଯେ ଆବଶ୍ୟକ ତାହା ଦର୍ଶାଇଥିଲେ । ଯେତେବେଳେ ବେକାରୀ ସମସ୍ୟା ଅତ୍ୟନ୍ତ ତୀବ୍ର ହୋଇଥାଏ, ଜାତୀୟ ଉତ୍ପାଦନ ଅତ୍ୟନ୍ତ ନିମ୍ନସ୍ତରରେ ଥାଏ ଓ ଅନ୍ୟାନ୍ୟ ଉତ୍ପାଦକମାନେ ଅନିୟୋଜିତ ଅବସ୍ଥାରେ ଥାଆନ୍ତି, ସେତେବେଳେ ଶ୍ରମିକମାନଙ୍କୁ କର୍ମ ଯୋଗାଣ ଓ ଉଚ୍ଚ ବେତନ ହାର ଦେଲେ, ଦେଶରେ ଚାହିଦା (effective demand) ବୃଦ୍ଧି ହୁଏ ଓ ଅର୍ଥନୀତିର ଉତ୍ଥାନ ହୁଏ ।

ବର୍ତ୍ତମାନ ପରିସ୍ଥିତିରେ ଉକ୍ତ ବିଜ୍ଞବ୍ୟକ୍ତିମାନଙ୍କର ମତ ବିଶ୍ଳେଷଣ କରିବା ବିଧେୟ । ବିଭିନ୍ନ କାରଣରୁ 'ସର୍ବନିମ୍ନ ଜୀବନ ଧାରଣ ତତ୍ତ୍ୱ' ଓ 'ମଜୁରୀ ପାଣ୍ଠି ତତ୍ତ୍ୱ' ଗ୍ରହଣୀୟ ନୁହେଁ । ମାର୍କ୍ସଙ୍କର ତତ୍ତ୍ୱ ମଧ୍ୟ ତ୍ରୁଟିବିହୀନ ନୁହେଁ । କେନ୍‌ସଙ୍କ ମତବାଦ ଉନ୍ନତ ରାଷ୍ଟ୍ର ପାଇଁ ଉଦ୍ଦିଷ୍ଟ କାରଣ ସେ ସବୁ ରାଷ୍ଟ୍ରରେ ସେମାନଙ୍କର ଉତ୍ପାଦନ ବେଶୀ ଓ ଚାହିଦା ଅପେକ୍ଷାକୃତ କମ୍ ।

## ସମ୍ବଳ ଉପଯୋଗ

ଅନୁନ୍ନତ ବା ଉନ୍ନତିଶୀଳ ରାଷ୍ଟ୍ରମାନଙ୍କର ସମସ୍ୟା ଉନ୍ନତ ରାଷ୍ଟ୍ରର ସମସ୍ୟାଠାରୁ ପୃଥକ । ଆମ ଭାରତ ଭଳି ଉନ୍ନତିଶୀଳ ରାଷ୍ଟ୍ରରେ ଜନସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ପାଇବାରେ ଲାଗିଛି । ଆମର ସୀମିତ ସମ୍ବଳକୁ ଉପଯୁକ୍ତ ଭାବେ ବିନିଯୋଗ କରାଗଲେ ମଧ୍ୟ ଜନ ବହୁଳତା ହେତୁ ଉନ୍ନତ ରାଷ୍ଟ୍ରର ଜୀବନ ଧାରଣର ମାନ ହାସଲ କରିବା ସମ୍ଭବପର ନୁହେଁ । ତେଣୁ ଏହି ପରିପ୍ରେକ୍ଷୀରେ ଶ୍ରମିକ ମଜୁରୀ ହାର ବୃଦ୍ଧି ହେଲେ ବିଭିନ୍ନ ପ୍ରକାର ଫଳାଫଳ ଆଶା କରାଯାଇ ପାରେ । ଏକ ପକ୍ଷରେ, ଶ୍ରମ ହାର ବୃଦ୍ଧି ହେଲେ ଉତ୍ପାଦନ ଖର୍ଚ୍ଚ ବୃଦ୍ଧି ହେବ । ତେଣୁ ଉତ୍ପାଦନକାରୀ ଦ୍ରବ୍ୟର ମୂଲ୍ୟ ବୃଦ୍ଧି କରିବେ । ଫଳରେ ଦ୍ରବ୍ୟ ପାଇଁ ଚାହିଦା କମିବ । ଚାହିଦା କମିବା ଦ୍ୱାରା ଉତ୍ପାଦନକାରୀ କ୍ଷତିଗ୍ରସ୍ତ ହେବେ । ସେ ପୂର୍ବାପେକ୍ଷା କମ୍ ଉତ୍ପାଦନ କରିବେ ଓ କମ୍ ଶ୍ରମିକ ନିଯୁକ୍ତି କରିବେ । ବେକାରୀ ବୃଦ୍ଧି ହେବ ଓ ଶ୍ରମିକମାନେ ବାଧ୍ୟ ହୋଇ ଶ୍ରମ ହାର କମାଇବେ ।

ଅପର ପକ୍ଷେ, ମଜୁରୀ ହାର ବୃଦ୍ଧି ହେଲେ ଶ୍ରମିକମାନେ ଅଧିକ ବ୍ୟୟ କରିବେ । ତେଣୁ ଦ୍ରବ୍ୟ ପାଇଁ ଚାହିଦା ଅଧିକ ହେବ । ଶ୍ରମ ହାର ବୃଦ୍ଧି ହେଲେ ଦେଶରେ ଅର୍ଥ ବଣ୍ଟନର ପ୍ରକୃତିରେ ପରିବର୍ତ୍ତନ ହେବ କାରଣ ଜାତୀୟ ଆୟର ପୂର୍ବାପେକ୍ଷା ଅଧିକ ଅଂଶ ଶ୍ରମିକମାନେ ପାଇବେ । ଶ୍ରମ ହାର ବୃଦ୍ଧି ପୂର୍ବରୁ ସୌଖୀନ ଦ୍ରବ୍ୟର ଯାହା ଚାହିଦା ଥିଲା ତାହା ଶ୍ରମ ହାର ବୃଦ୍ଧି ପରେ ହ୍ରାସ ପାଇବ । କିନ୍ତୁ ଅତ୍ୟାବଶ୍ୟକୀୟ ଦ୍ରବ୍ୟର ଚାହିଦା ବୃଦ୍ଧି ପାଇବ । ଯଦି ଅତ୍ୟାବଶ୍ୟକୀୟ ଦ୍ର୍ୟ ର ଉତ୍ପାଦନ ବୃଦ୍ଧି ହୁଏ ତେବେ ଶ୍ରମିକମାନେ ଉପକୃତ ହେବେ । କିନ୍ତୁ ଯଦି ଅତ୍ୟାବଶ୍ୟକୀୟ ଦ୍ରବ୍ୟର ଉତ୍ପାଦନ ଯଥେଷ୍ଟ ବୃଦ୍ଧି ନହୁଏ, ତେବେ ଉକ୍ତ ଦ୍ରବ୍ୟମାନଙ୍କର ମୂଲ୍ୟ ବୃଦ୍ଧି ହେବ । ଅଧିକ ମଜୁରୀ ପାଇଁ ମଧ୍ୟ ଶ୍ରମିକମାନେ ଉପକୃତ ହେବେ ନାହିଁ ।

## ମଜୁରୀ ବୃଦ୍ଧିର ମନସ୍ତାତ୍ତ୍ୱିକ ଦିଗ

ମଜୁରୀ ହାର ବୃଦ୍ଧିର ଅନ୍ୟ ଏକ ଦିଗ ମଧ୍ୟ ବିଚାରଯୋଗ୍ୟ । ଅଧିକା ମଜୁରୀ ହାର ଯଦି ଶ୍ରମିକର ଜୀବନ ଧାରଣର ମାନ ଉନ୍ନତ କରିବାକୁ ସକ୍ଷମ ହୁଏ ତେବେ ତା'ର ଉତ୍ପାଦିକା ଶକ୍ତି ଅଧିକ ହେବ । ତା' ମନର ବଳରେ ମଧ୍ୟ ଉନ୍ନତି ପରିଲକ୍ଷିତ ହେବ ଓ ସେ ପୂର୍ବାପେକ୍ଷା ଅଧିକ ଆଗ୍ରହର ସହ କାର୍ଯ୍ୟ କରିବ । ଫଳରେ ଉତ୍ପାଦିକା ଶକ୍ତି ମଧ୍ୟ ପୂର୍ବାପେକ୍ଷା ଅଧିକ ହେବ । ଶ୍ରମିକର ସୀମାନ୍ତ ଉତ୍ପାଦିକା ଶକ୍ତି (Marginal productivity) ବୃଦ୍ଧି ହେବ । ଅଧିକ ଉତ୍ପାଦନ ହେତୁ ଉତ୍ପାଦନ ଖର୍ଚ୍ଚ ହ୍ରାସ ହୋଇପାରେ ଓ ଦ୍ରବ୍ୟର ମୂଲ୍ୟ ହ୍ରାସ ହୋଇପାରେ । ତେଣୁ ଚାହିଦାର ବୃଦ୍ଧି ହେବ ଓ ଉତ୍ପାଦନକାରୀ ମଧ୍ୟ ଅଧିକ ଲାଭ ପାଇ ପାରିବେ ।

ତେଣୁ ଶ୍ରମିକର ମଜୁରୀ ହାର ନିର୍ଣ୍ଣୟ କଲାବେଳେ ଏ ସବୁ ବିଷୟ ପ୍ରତି ଧ୍ୟାନ ଦେବା ଆବଶ୍ୟକ । ଶ୍ରମିକ ବଜାରରେ (Labour market) ଶ୍ରମିକ ପାଇଁ ଚାହିଦା ଓ ତାର ଯୋଗାଣ ଶ୍ରମ ହାର ନିର୍ଣ୍ଣୟ କରେ । ଶ୍ରମିକ ପାଇଁ ଚାହିଦା ତାର ସୀମାନ୍ତ ଉତ୍ପାଦିକା ଉପରେ ନିର୍ଭର କରେ । ସାଧାରଣତଃ କୌଣସି ଏକ ଉତ୍ପାଦନକାରୀ ସଂସ୍ଥାରେ (Production unit) ଶ୍ରମିକ ନିଯୁକ୍ତି ଅଧିକା ହେଲେ ତାର ସୀମାନ୍ତ ଉତ୍ପାଦିକା କ୍ରମେ ହ୍ରାସ ହୁଏ । ତେଣୁ ମଜୁରୀ ହାର ଅଧିକା ହେଲେ ଶ୍ରମିକ ପାଇଁ ଚାହିଦା କମ୍ ହେବ ଓ ମଜୁରୀ ହାର କମ୍ ହେଲେ ଶ୍ରମିକ ପାଇଁ ଚାହିଦା ଅଧିକ ହେବ । ପୁନଶ୍ଚ ଅଧିକା ମଜୁରୀ ହାର ହେଲେ ଶ୍ରମିକର ଉତ୍ପାଦିକା ଶକ୍ତିର ବୃଦ୍ଧି ହୋଇପାରେ, ତେଣୁ ଶ୍ରମିକ ପାଇଁ ଚାହିଦା ବିଭିନ୍ନ ମଜୁରୀ ହାରରେ ଅଧିକ ହୋଇପାରେ । କିନ୍ତୁ ଏହି ସମ୍ଭାବନା ସ୍ୱଳ୍ପ କାଳ ମଧ୍ୟରେ (Short-run) ପରିଲକ୍ଷିତ ହୋଇ ନପାରେ । ଶ୍ରମ ଯୋଗାଣ ମଧ୍ୟ ନିର୍ଦ୍ଦିଷ୍ଟ ନିୟମରେ ହୁଏ । ଯେତେବେଳେ ଶ୍ରମ ହାର ବେଶୀ ହେବ ସେତେବେଳେ ଶ୍ରମ ଯୋଗାଣ ବେଶୀ ହେବ ଓ ଶ୍ରମ ହାର କମ୍ ହେଲେ ଶ୍ରମ ଯୋଗାଣ କମ୍ ହେବ । ତେଣୁ ଅର୍ଥନୀତି ତତ୍ତ୍ୱ ଅନୁସାରେ ଯେଉଁ ମଜୁରୀ ହାରରେ ଶ୍ରମ ଯୋଗାଣ ଓ ଶ୍ରମିକ ପାଇଁ ଚାହିଦା ସମାନ ହେବ, ସେହି ହାରରେ ମଜୁରୀ ନିର୍ଦ୍ଧାରିତ ହେବ । ଯଦି ଶ୍ରମିକ ବଜାରରେ ମୁକ୍ତ ପ୍ରତିଦ୍ୱନ୍ଦ୍ୱିତା ଥାଏ (Perfect competition), ତା'ହେଲେ ଯୋଗାଣ ଓ ଚାହିଦାର ନିୟମାନୁସାରେ ଶ୍ରମ ହାର ନିର୍ଣ୍ଣୟ ହୁଏ । କିନ୍ତୁ ପ୍ରକୃତ କ୍ଷେତ୍ରରେ ଶ୍ରମିକ ବଜାରରେ ମୁକ୍ତ ପ୍ରତିଦ୍ୱନ୍ଦ୍ୱିତା ନଥାଇ ପାରେ । ଯଦି ଶ୍ରମିକ ସଙ୍ଗଠନ ଅତ୍ୟନ୍ତ ଶକ୍ତିଶାଳୀ ହୁଏ, ଶ୍ରମ ହାର ମୁକ୍ତ ପ୍ରତିଦ୍ୱନ୍ଦ୍ୱିତା ହାରଠାରୁ ଅଧିକ ହେବ । ଅପରପକ୍ଷେ ଯଦି ଉତ୍ପାଦନକାରୀମାନଙ୍କର ସଙ୍ଗଠନ ଶକ୍ତିଶାଳୀ ହୁଏ ତେବେ ଶ୍ରମ ହାର ମୁକ୍ତ ପ୍ରତିଦ୍ୱନ୍ଦ୍ୱିତା ହାରଠାରୁ କମ୍ ହେବ ।

ତେଣୁ ଶ୍ରମ ହାର ସ୍ଥିରୀକୃତ ହେବା ପୂର୍ବରୁ ଶ୍ରମିକର ସୀମାନ୍ତ ଉତ୍ପାଦିକା, ଉତ୍ପାଦନକାରୀ ସଙ୍ଗଠନର ଅବସ୍ଥା ଓ ଶ୍ରମିକ ସଙ୍ଗଠନର ଅବସ୍ଥା ବିଚାରକୁ ନେବା ବିଧେୟ । ଆମ ଦେଶରେ ଅଦକ୍ଷ (Unskilled) ଶ୍ରମିକ ସଙ୍ଗଠନ କେତେକ ବୃହତ୍ ଉତ୍ପାଦନ କ୍ଷେତ୍ରରେ ସୀମାବଦ୍ଧ । ସେହିପରି ଉତ୍ପାଦନକାରୀଙ୍କ ସଙ୍ଗଠନ ମଧ୍ୟ ସୀମିତ । ସାଧାରଣ କ୍ଷେତ୍ରରେ ଯେଉଁ ଶ୍ରମ ହାର ଦେଖାଯାଏ ତାହା ସାଧାରଣତଃ ମୁକ୍ତ ପ୍ରତିଦ୍ୱନ୍ଦ୍ୱିତା ଶ୍ରମ ହାର । ଯଦି ସ୍ଥିରୀକୃତ ଶ୍ରମହାର ଉକ୍ତ ମୁକ୍ତ ପ୍ରତିଦ୍ୱନ୍ଦ୍ୱିତା ଶ୍ରମ ହାରଠାରୁ ଅଧିକ ହୁଏ, ତେବେ ସ୍ଥିରୀକୃତ ଶ୍ରମ ହାରରେ ଶ୍ରମିକମାନେ କେବଳ ସରକାରୀ ସଂସ୍ଥା ଓ ସରକାରୀ ନିୟନ୍ତ୍ରିତ ସଂସ୍ଥାମାନଙ୍କରେ କର୍ମନିଯୁକ୍ତି ପାଇ ପାରିବେ । କିନ୍ତୁ ଉକ୍ତ ସଂସ୍ଥାମାନେ ସବୁ ଇଚ୍ଛୁକ ଶ୍ରମିକମାନଙ୍କୁ କର୍ମନିଯୁକ୍ତି ଦେଇପାରିବେ ନାହିଁ । ତେଣୁ ଅନ୍ୟ ଉପାୟ ନପାଇ ବେକାର ଶ୍ରମିକମାନେ ଘରୋଇ ସଂସ୍ଥାମାନଙ୍କରେ ନିଯୁକ୍ତି ପାଇବାକୁ ଚେଷ୍ଟା କରିବେ । ତେଣୁ ଘରୋଇ ସଂସ୍ଥାମାନଙ୍କରେ ମଜୁରୀ ହାର କମ୍ ହେବ । ଯଦି ଅପ୍ରାକୃତିକ ଭାବେ ଘରୋଇ ସଂସ୍ଥାମାନଙ୍କରେ ସ୍ଥିରୀକୃତ ମଜୁରୀ ହାର ଦିଆଯିବାକୁ ପଦକ୍ଷେପ ନିଆଯିବ ତେବେ ଉକ୍ତ ସଂସ୍ଥାମାନେ କ୍ଷତିଗ୍ରସ୍ତ ହେବେ ଓ ଉତ୍ପାଦନ ବ୍ୟାହତ ହେବ । ଅପରପକ୍ଷେ, ଯଦି ଶ୍ରମିକ ମୁକ୍ତ ପ୍ରତିଦ୍ୱନ୍ଦ୍ୱିତା ହାରଠାରୁ କମ୍ ପାଉଥାଆନ୍ତି, ତା'ହେଲେ ଉଚ୍ଚ ହାର ସେମାନଙ୍କର ମଙ୍ଗଳ ସାଧନ କରିବ । ଦ୍ରବ୍ୟଚାହିଦାର ବୃଦ୍ଧି ହେବ । ଉତ୍ପାଦନକାରୀ ଲାଭବାନ୍ ହେବେ ଓ ଉତ୍ପାଦନର ମଧ୍ୟ ବୃଦ୍ଧି ହେବ । ଅଧିକ କର୍ମସଂସ୍ଥାନ ହେବ ଓ ସମାଜର ମଙ୍ଗଳ ହେବ ।

ଯେହେତୁ ଶ୍ରମିକ ପାଇଁ ଚାହିଦା ଶ୍ରମିକର ଉତ୍ପାଦିକା ଶକ୍ତି ଉପରେ ନିର୍ଭର କରେ ଏବଂ ଉତ୍ପାଦିକା ଶକ୍ତି ମଧ୍ୟ ଶ୍ରମିକର ମଜୁରୀ ହାର ଉପରେ ଅନେକାଂଶରେ ନିର୍ଭର କରେ । ତେଣୁ ମଜୁରୀ ହାର ଓ ଉତ୍ପାଦିକା ଶକ୍ତି ମଧ୍ୟରେ ସମ୍ପର୍କ ଜାଣିବା ପାଇଁ ବହୁଳ କ୍ଷେତ୍ର ଗବେଷଣା (Empirical studies) ପ୍ରୟୋଜନ । କ୍ଷେତ୍ର ଗବେଷଣାର ଫଳାଫଳକୁ ପୁଙ୍ଖାନୁପୁଙ୍ଖ ଭାବେ ବିଶ୍ଳେଷଣ କରି ଶ୍ରମ ହାର ନିର୍ଣ୍ଣୟ କରିବା ବିଧେୟ ।

ପ୍ରାଧ୍ୟାପିକା, ଅର୍ଥନୀତି ବିଭାଗ, ରେଭେନ୍‌ସା କଲେଜ୍
କଟକ

• ଭାବ ପରିସର

# ଭାଷା ଓ ସାହିତ୍ୟ ମଧ୍ୟରେ ସମନ୍ୱୟର ପୁନଃପ୍ରତିଷ୍ଠା

*ମହାଜିତେଶ୍ୱର ଦାସ*

ସାହିତ୍ୟରେ ତାତ୍ତ୍ୱିକ ବିଗ୍ଭର ଓ ଭାଷା ଶିକ୍ଷା ମଧ୍ୟରେ ବିଗତ କିଛି କାଳ ପାଇଁ ଗ୍ଭଲୁଥିବା ଆଲୋଚନାଗୁଡ଼ିକରୁ ସ୍ପଷ୍ଟ ପ୍ରତୀୟମାନ ହେଉଛି ଯେ ଏହି ଦ୍ୱିବିଧ ଶୃଙ୍ଖଳା ମଧ୍ୟରେ ଏକ ଅଭିନବ ଓ ପରିପୂରକ ସମ୍ପର୍କ ପ୍ରତିଷ୍ଠିତ ହେବାର ଅବକାଶ ରହିଛି। ଭାଷା ଶିକ୍ଷା ଯେପରି ବିଶେଷ ଭାବରେ ଭାଷା ବିଜ୍ଞାନ ଦ୍ୱାରା ପ୍ରଭାବିତ ହୋଇଛି, ସାହିତ୍ୟ ସମ୍ପର୍କୀୟ ଅଧ୍ୟୟନ ମଧ୍ୟ ସେହିପରି ସମସାମୟିକ ବିଶ୍ଳେଷଣାତ୍ମକ ତାତ୍ତ୍ୱିକ ବିଗ୍ଭରଗୁଡ଼ିକ ଦ୍ୱାରା ପ୍ରଭାବିତ ହୋଇଛି। ଊନବିଂଶ ଶତାବ୍ଦୀ ପରଠାରୁ ପାଶ୍ଚାତ୍ୟ ଜଗତରେ ନୂତନ ଚିନ୍ତା ଓ ଚେତନାର ସୂତ୍ରପାତ ଘଟିବାଠାରୁ ପାଶ୍ଚାତ୍ୟ ସାହିତ୍ୟ ଏଗୁଡ଼ିକ ଦ୍ୱାରା ସମୃଦ୍ଧ ହୋଇଥିଲା। ପାଶ୍ଚାତ୍ୟ ଢାଞ୍ଚାରେ ଆମ ଦେଶରେ ମେକ୍‌ଲେ ପ୍ରବର୍ତ୍ତିତ ଶିକ୍ଷା ପଦ୍ଧତି ପ୍ରଚଳିତ ହେବା ପରଠାରୁ ଆମ ଦେଶର ଶିକ୍ଷିତ ଜନସାଧାରଣଙ୍କୁ ସେହି ଅଭିନବ ଧାରଣାଗୁଡ଼ିକ ସହ ପରିଚିତ କରାଇବା ଉଦ୍ଦେଶ୍ୟରେ ଚସର୍ ଓ ଲାଙ୍ଗ୍‌ଲାଣ୍ଡ୍‌ଙ୍କଠାରୁ ଆରମ୍ଭ କରି ଅନ୍ୟାନ୍ୟ ପାଶ୍ଚାତ୍ୟ ସାହିତ୍ୟିକମାନଙ୍କର କୃତିଗୁଡ଼ିକୁ ପାଠ୍ୟକ୍ରମର ଅନ୍ତର୍ଭୁକ୍ତ କରାଗଲା। ଭାରତୀୟ ଶିକ୍ଷିତ ଜନସାଧାରଣ ଏପରି ଶିକ୍ଷା ବ୍ୟବସ୍ଥା ଦ୍ୱାରା ପ୍ରଭାବିତ ହେବାର ଫଳ ସ୍ୱରୂପ ଆମ ଦେଶରେ ପାଶ୍ଚାତ୍ୟ ସଂସ୍କୃତିର ଆଦର ବୃଦ୍ଧି ଲାଭ କରିବ ବୋଲି ଆଶା କରାଯାଉଥିଲା। ନୂତନ ଚିନ୍ତା ଓ ଚେତନା ଦ୍ୱାରା ପ୍ରଭାବିତ ଶିକ୍ଷିତ ଗୋଷ୍ଠୀ ବିଦେଶୀ ଶାସକମାନଙ୍କୁ ଅମଲାତାନ୍ତ୍ରିକ ପ୍ରକ୍ରିୟାରେ ସାହାଯ୍ୟ ଓ ସହଯୋଗ କରିବେ ବୋଲି ବିଗ୍ଭର କରାଯାଇଥିଲା। ଏପରି ଆଶା ଅବଶ୍ୟ କେତେକାଂଶରେ ଫଳପ୍ରଦ ହେଲା; ମାତ୍ର ଏତଦ୍ୱାରା ଭାଷା ଓ ସାହିତ୍ୟର ସୁସ୍ଥ ସମୃଦ୍ଧି ସାଧିତ ହେବାର ଅବକାଶ ରହିଲା ନାହିଁ। ଆଶା କରାଯାଉଥିଲା ଯେ ପାଶ୍ଚାତ୍ୟ ପ୍ରବୀଣ ସାହିତ୍ୟିକମାନଙ୍କର ସାହିତ୍ୟିକ କୃତିଗୁଡ଼ିକୁ ଅଧ୍ୟୟନ କରିବା ଦ୍ୱାରା ବିଦ୍ୟାର୍ଥୀମାନେ ଭାଷାଗତ ବ୍ୟାପାରରେ ମଧ୍ୟ ଦକ୍ଷତା ପ୍ରଦର୍ଶନ କରିପାରିବେ। ସମକାଳୀନ ଭାବରେ ଅବଶ୍ୟ ବ୍ୟାକରଣ ଶିକ୍ଷାକୁ ପାରମ୍ପରିକ ଭିତ୍ତିରେ ପ୍ରଚଳନ କରାଯାଉଥିଲା। ମାତ୍ର ଏହି ଶିକ୍ଷା ଭାଷା ଓ ସାହିତ୍ୟ ମଧ୍ୟରେ କୌଣସି ଅର୍ଥସୂଚକ ସମ୍ପର୍କ ପ୍ରତିଷ୍ଠା କରିବା ଦିଗରେ ସହାୟକ ହୋଇ ନଥିଲା। ଏପରି ଶିକ୍ଷା ବ୍ୟବସ୍ଥା ପ୍ରଚଳିତ ହେବା ଫଳରେ ଅମଲାତାନ୍ତ୍ରିକ ବ୍ୟାପାରଗୁଡ଼ିକର ପରିଗ୍ଭଳନା ଦିଗରେ ଅବଶ୍ୟ ପଥ ସୁଗମ ହୋଇଗଲା, ମାତ୍ର ଏତଦ୍ୱାରା ଶିକ୍ଷିତ ଭାରତୀୟମାନେ ନିଜ ନିଜ ସୃଜନଶୀଳ ପ୍ରତିଭାର ସଦୁପଯୋଗ ବଳରେ ସାହିତ୍ୟର ଯଥାର୍ଥ ସମୃଦ୍ଧି ସାଧନ ନିମିତ୍ତ ଯେଉଁ ପ୍ରଚେଷ୍ଟା କରିଥିଲେ ସେଥିରେ ଏକ ବୌଦ୍ଧିକ ପ୍ରତିବନ୍ଧକ ସୃଷ୍ଟି ହେଲା। କାରଣ ସାହିତ୍ୟ ମାଧ୍ୟମରେ ନିଜ ଭାବ ବ୍ୟକ୍ତ କରିବା ପାଇଁ ଯେଉଁ ପ୍ରକାର ଭାଷାଗତ ଜ୍ଞାନ ଆବଶ୍ୟକ ତତ୍‌ସମ୍ପର୍କୀୟ ଶିକ୍ଷା ବା ତାଲିମ ପାଇବାରୁ ସେମାନେ ବଞ୍ଚିତ ହୋଇଥିଲେ।

ଇତ୍ୟବସରରେ ଆମର ମୂଲ୍ୟବୋଧର ପରିବର୍ତ୍ତନ ଘଟିଛି ଏବଂ ଆମ ଜାତୀୟ ଲକ୍ଷ୍ୟ ମଧ୍ୟ ବଦଳି ଯାଇଛି। ଏହି ପରିବର୍ତ୍ତିତ ପରିସ୍ଥିତିରେ ଭାଷା ଓ ସାହିତ୍ୟ ଶିକ୍ଷା ପାଇଁ ମଧ୍ୟ ପୂର୍ବ ପ୍ରଚଳିତ ବ୍ୟବସ୍ଥାରେ ସଂସ୍କାର ଅଣାଯାଇଛି। ମାତ୍ର ଅନ୍ୟ ସବୁ ବ୍ୟବସ୍ଥାଗୁଡ଼ିକ ପରି ଶିକ୍ଷା ବ୍ୟବସ୍ଥାର ଏହି ସଂସ୍କାର ଆମୂଳଚୂଳ ପରିବର୍ତ୍ତନ ଦିଗରେ ପ୍ରଣୋଦିତ ହୋଇନାହିଁ। ଏହାକୁ ଏପରି ଅଧାପନ୍ତାରିଆ ଭାବରେ କାର୍ଯ୍ୟକାରୀ କରାଯାଉଛି ଯେ ବିଦ୍ୟାର୍ଥୀମାନଙ୍କର କେବଳ ଭାଷାଗତ ଜ୍ଞାନରେ କିମ୍ବା ସାହିତ୍ୟ ଆଧାରିତ ଦକ୍ଷତାରେ କୌଣସି ଗୁରୁତର ପରିବର୍ତ୍ତନ ଘଟିବାର ସମ୍ଭାବନା ନାହିଁ। ଶିକ୍ଷା ବ୍ୟବସ୍ଥା ସହିତ ଜଡ଼ିତ କର୍ଣ୍ଣଧାରମାନେ ମାନସିକ ଜଡ଼ତ୍ୱ କବଳରୁ ମୁକ୍ତି ଲାଭ କରି ନଥିବା ପରି ଜଣାପଡୁଛି। ଭାଷା ଓ ସାହିତ୍ୟ ସମ୍ପର୍କୀୟ ଶିକ୍ଷା ଓ ତାଲିମ ଦିଗରେ ଯଥୋଚିତ ପ୍ରାଧାନ୍ୟ ଆରୋପିତ ହେଉଛି ସତ, ମାତ୍ର ଏହା ଆଶାନୁରୂପ ମାର୍ଗରେ ଫଳପ୍ରଦ ହେଉନାହିଁ।

ଚଳିତ ଶତାବ୍ଦୀର ପଞ୍ଚମ ଦଶକ ପରଠାରୁ ସ୍ୱାଧୀନୋତ୍ତର ଭାରତବର୍ଷରେ ଭାଷା ଓ ସାହିତ୍ୟ ସମ୍ପର୍କୀୟ ଅଧ୍ୟୟନ ପାଇଁ ଦ୍ୱିତୀୟ ପର୍ଯ୍ୟାୟରେ ଏକ ସଂସ୍କାରାଭିମୁଖୀ ଆଲୋଡ଼ନ ସୃଷ୍ଟି ହୋଇଥିଲା। ଏହି ଅଭିନବ ବ୍ୟବସ୍ଥାପନାର ସୁଫଳ ସମ୍ପର୍କରେ ପ୍ରଥମେ ଆଲୋକପାତ କରାଯାଉ।

ଭାଷା ବିଜ୍ଞାନ ଜଗତରେ ଗଠନାତ୍ମକ ପଦ୍ଧତିର (Structural Method) ଅଭ୍ୟୁଦୟ ଘଟିଛି। ଏହି ପଦ୍ଧତି ଅନୁଯାୟୀ ସାହିତ୍ୟିକ ଅଭିବ୍ୟକ୍ତିକୁ ସରଳ ସଂଗଠନଗୁଡ଼ିକରେ ବିଭକ୍ତ କରାଯାଏ। ଜଟିଳ ସାହିତ୍ୟକୁ ଅତି ସରଳ ସାହିତ୍ୟିକ ଅଭିବ୍ୟକ୍ତିର ସୁସମନ୍ୱିତ ତଥା ଅର୍ଥସୂଚକ ସମାହାର ଭାବରେ ବୁଝାଇ ଦିଆଯାଏ। ଏହି କୌଶଳକୁ ଆୟତ୍ତ କରିବା ଫଳରେ ତଥା ବାରମ୍ବାର ଅଭ୍ୟାସ କରିବା ଫଳରେ ଜଣେ ବିଦ୍ୟାର୍ଥୀ ଭାଷାଗତ ବ୍ୟାପାରରେ ପାରଦର୍ଶିତା ପ୍ରଦର୍ଶନ କରିବାର ଅବକାଶ ରହିଛି। ପୂର୍ବ ପ୍ରଚଳିତ ବ୍ୟାକରଣଗତ ଜ୍ଞାନ ଅର୍ଜନ କରିବା

ଦ୍ୱାରା କିମ୍ବା ଭାଷାକୁ କେବଳ ବ୍ୟାକରଣ ଆଧାରିତ ଜ୍ଞାନର ସମାହାର ଭାବରେ ବିଚାର କରିବା ଦ୍ୱାରା ଭାଷାଗତ ବ୍ୟାପାରରେ ଦକ୍ଷତା ପ୍ରଦର୍ଶନ ନ ହେବାର ପ୍ରମାଣ ମିଳିଛି । ସରଳତାଠାରୁ ଜଟିଳତା ଭିତ୍ତିରେ ତଥା ଶ୍ରେଣୀବଦ୍ଧ ସୁନିୟନ୍ତ୍ରିତ ସଙ୍ଗଠନଗୁଡ଼ିକ ମାଧ୍ୟମରେ ଭାଷାଗତ ଜ୍ଞାନ ଅର୍ଜନ କରିବା ପାଇଁ ଗଠନାତ୍ମକ ପଦ୍ଧତି ପ୍ରତି ଅଗ୍ରାଧିକାର ଆରୋପିତ ହେବା ପରଠାରୁ କେତେକ ଭାଷା ବିଜ୍ଞାନୀ ଅବଶ୍ୟ ସାହିତ୍ୟକୁ ଅଦରକାରୀ ଭାବରେ ବିଚାର କରୁଥିଲେ । ମାତ୍ର ଭାଷା ବିଜ୍ଞାନ ସହିତ ଜଡ଼ିତ ଅନେକ ସମ୍ବେଦନଶୀଳ ଶିକ୍ଷକ ଭାଷା ବିଜ୍ଞାନ ବ୍ୟାପାରରେ ସାହିତ୍ୟକୁ ଅବସ୍ଥାପନା ଭାବରେ ବିଚାର କରିବାକୁ ପ୍ରସ୍ତାବ ଦେଲେ । ଉଚ୍ଚକୋଟୀର ସାହିତ୍ୟକୁ ଛୋଟ ଛୋଟ ଶବ୍ଦ ସଙ୍ଗଠନ ଜରିଆରେ ବୁଝିବା ପାଇଁ ତଥା ଏହାଦ୍ୱାରା ଭାଷାଗତ ଦକ୍ଷତା ଅର୍ଜନ କରିବା ପାଇଁ ସେମାନଙ୍କ ସୁଚିନ୍ତିତ ପରାମର୍ଶ ହୃଦୟଗ୍ରାହୀ ହେଲା । ଏଣୁ ଭାଷାକୁ ସାହିତ୍ୟଠାରୁ ପୃଥକ ଭାବରେ ବିଚାର କରିବାର ଅବକାଶ ରହିଲା ନାହିଁ । ବରଂ ଏତଦ୍ୱାରା ସାହିତ୍ୟ ମାଧ୍ୟମରେ ଭାଷା ବା Language through literature ଶୀର୍ଷକ ଏକ ଅଭିନବ ଆଭିମୁଖ୍ୟର ଆବିର୍ଭାବ ଘଟିଲା । ସାହିତ୍ୟକୁ ଭାଷା ବିଜ୍ଞାନ ଶିକ୍ଷାର ମାଧ୍ୟମ ଭାବରେ ବ୍ୟବହାର କରାଯିବାର ଏହି ଆନୁଭବିକ ପଦ୍ଧତି (Empirical method)କୁ ପ୍ରବୀଣ ଭାଷାବିତ୍ Noam Chamsky ବିରୋଧ କଲେ । ସେ ଭାଷାକୁ ଏକ ସର୍ଜନାତ୍ମକ ତଥା ହେତୁବାଦୀ ଢାଞ୍ଚାରେ ବୁଝିବା ପାଇଁ ଯେଉଁ ମୌଳିକ ଚିନ୍ତାଧାରାର ସୂତ୍ରପାତ ଘଟାଇଲେ, ତଦ୍ଜନିତ ଭାଷା ଓ ସାହିତ୍ୟ ଜଗତରେ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି ହେଲା ।

ଭାଷା ବିଜ୍ଞାନ ଜଗତରେ ଏପରି ବୌଦ୍ଧିକ ପରୀକ୍ଷା ଚାଲିଥିବା ଅବସରରେ ସାହିତ୍ୟିକ ଆଲୋଚନା କ୍ଷେତ୍ରରେ ମଧ୍ୟ ଅଭିନବ ଧାରଣାଗୁଡ଼ିକର ସୂତ୍ରପାତ ଘଟିଲା । I. A. Richardsଙ୍କ ଭଳି ପ୍ରବୀଣ ସମାଲୋଚକମାନେ ପରୋକ୍ଷ ଭାବରେ ଗଠନାତ୍ମକ ପଦ୍ଧତି ଦ୍ୱାରା ପ୍ରଭାବିତ ହେଲେ । ସେମାନେ ଜଣାଇ ଦେଲେ ଯେ ସାହିତ୍ୟିକ କୃତିଗୁଡ଼ିକୁ ସମ୍ୟକ ଭାବରେ ବୁଝିବା ପାଇଁ ଏକ ଶୃଙ୍ଖଳିତ ପଦ୍ଧତିର ଆବଶ୍ୟକତା ରହିଛି । କୌଣସି ପାଠକ ଉପଯୁକ୍ତ ତାଲିମ ପାଇ ନପାରିଲେ କୌଣସି ଉଚ୍ଚକୋଟୀର ସାହିତ୍ୟିକ କୃତିକୁ କେବେହେଲେ ଠିକଣା ଭାବରେ ବୁଝି ପାରିବେ ନାହିଁ । ପ୍ରତ୍ୟେକ ସାହିତ୍ୟିକ କୃତି ହେଉଛି ଗୋଟିଏ ସ୍ୱୟଂସମ୍ପନ୍ନ ସଂସ୍ଥିତି ବା automorphous entity. ସେଥିରେ ସନ୍ନିବିଷ୍ଟ ଭାବ, ଉପମା, ଅଳଙ୍କାର ଓ ଶବ୍ଦବିନ୍ୟାସ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ଦାବୀ କରେ । ତେଣୁ ପାଠକ ଏହି ସ୍ୱାତନ୍ତ୍ର୍ୟକୁ ସମ୍ୟକ ଭାବରେ ଉପଲବ୍ଧି କରିବା ପାଇଁ ପୂର୍ବରୁ ଠିକଣା ତାଲିମ ପାଇଥିବା ଆବଶ୍ୟକ । ସାହିତ୍ୟିକ ସମାଲୋଚନା ଭିତ୍ତିକ ଏପରି ସୁନିର୍ଦ୍ଧାରିତ ପଦ୍ଧତି ସମ୍ପର୍କରେ ପାଶ୍ଚାତ୍ୟ ଜଗତର ନବ ସମାଲୋଚକ ବା New criticsମାନେ ଦୃଢ଼ ମତବ୍ୟକ୍ତ କରୁଥିବା ବେଳେ ପ୍ରବୀଣ ସମାଲୋଚକ F. R. Leavis ସାହିତ୍ୟରେ ଚିରନ୍ତନ ମାନବିକ ମୂଲ୍ୟବୋଧ ପ୍ରତି ଗୁରୁତ୍ୱ ଆରୋପ କଲେ । ରୂପବନ୍ଧ ସମାଲୋଚନା ପରିବର୍ତ୍ତେ ପ୍ରତ୍ୟେକ ସାହିତ୍ୟିକ କୃତିରେ ମାନବିକତାର ଆଲେଖ୍ୟକୁ ହୃଦୟଙ୍ଗମ କରିବା ଦିଗରେ ସେ ଗୁରୁତ୍ୱ ଆରୋପ କଲେ । ମାତ୍ର ତାଙ୍କ ମାନବବାଦୀ ସ୍ୱର ନବ ସମାଲୋଚକମାନଙ୍କ ଚିନ୍ତାଧାରାକୁ ବିଶେଷ ଭାବରେ ପ୍ରଭାବିତ କଲାନାହିଁ । ସାହିତ୍ୟରେ କେବଳ ଭାଷା ବା Form ପ୍ରତି ସବିଶେଷ ଗୁରୁତ୍ୱ ଆରୋପ କରାଗଲା । ଏହି ସମାଲୋଚକମାନେ ସ୍ପଷ୍ଟ ଭାବେ ଜଣାଇଦେଲେ ଯେ କେବଳ ସାହିତ୍ୟିକ ସମାଲୋଚନାରେ ଉଚ୍ଚଶିକ୍ଷା ଓ ତାଲିମପ୍ରାପ୍ତ ପାଠକମାନେ ହିଁ କୌଣସି ଗୋଟିଏ ସାହିତ୍ୟିକ କୃତିର ସ୍ୱାତନ୍ତ୍ର୍ୟ ବା ମହତ୍ତ୍ୱ ଉପଲବ୍ଧି କରି ପାରିବେ । ଏହି ପ୍ରକାରର ବିଶେଷଜ୍ଞ ସୁଲଭ ପାରଦର୍ଶିତାକୁ ସାହିତ୍ୟିକ ସମ୍ବେଦନା ବା Literary sensibility ଭାବରେ ବିବେଚନା କରାଗଲା ।

ନବ ସମାଲୋଚକମାନଙ୍କର ଏପରି ଆଭିମୁଖ୍ୟ ଯୋଗୁ ଭାଷା ଶିକ୍ଷା ଓ ସାହିତ୍ୟ ଶିକ୍ଷା ମଧ୍ୟରେ ଏକ ଦୁର୍ଭେଦ୍ୟ ପ୍ରାଚୀର ସୃଷ୍ଟି କରାଗଲା । ...ହିତ୍ୟିକ ସମାଲୋଚକମାନେ ଜଣାଇଦେଲେ ଯେ ଜଟିଳ ବା ଅତି ସୂକ୍ଷ୍ମ ...ନାର ଅଭିବ୍ୟକ୍ତି ପାଇଁ ଗତାନୁଗତିକ ଭାଷାକୁ ମଧ୍ୟ ବଦଳାଇ ...ଯାଏ । ଉଚ୍ଚକୋଟୀର ସାହିତ୍ୟିକ କୃତିଗୁଡ଼ିକରେ ଭାଷାର ବହନ ...ହିତ୍ୟିକମାନଙ୍କୁ ସେମାନଙ୍କ ଭାବନାକୁ ବ୍ୟକ୍ତ କରିବାରୁ ବଞ୍ଚିତ କରିପାରେ ନାହିଁ । କେବଳ ପୂର୍ବରୁ ଶିକ୍ଷା ଓ ତାଲିମପ୍ରାପ୍ତ ପାଠକମାନେ ହିଁ ଏପରି ପ୍ରବୀଣ ଲେଖକମାନଙ୍କ କୃତିଗୁଡ଼ିକରେ ଭାବ ପ୍ରକାଶ ଦିଗରେ ଭାଷାର ମହତ୍ତ୍ୱକୁ ହୃଦୟଙ୍ଗମ କରି ପାରନ୍ତି ଅର୍ଥାତ୍ ନବ ସମାଲୋଚକମାନେ ସାହିତ୍ୟ ଶିକ୍ଷା କ୍ଷେତ୍ରରେ ଆଦର୍ଶ ପାଠକ ଗୋଷ୍ଠୀ ସୃଷ୍ଟି କରିବା ଦିଗରେ ଯତ୍ନବାନ୍ ହେଲେ । ଏହାର ଫଳ ସ୍ୱରୂପ ଭାଷା ଶିକ୍ଷା ଓ ସାହିତ୍ୟ ଶିକ୍ଷା ପରସ୍ପରଠାରୁ ଦୂରେଇ ଯିବା ଭଳି ଅନୁଭୂତ ହେଲା ।

ଭାଷା ଶିକ୍ଷା ଓ ସାହିତ୍ୟ ଶିକ୍ଷା ସମ୍ବନ୍ଧୀୟ ଗବେଷଣାର ପରିସର କ୍ରମ ବିସ୍ତାରିତ ହେବା ଫଳରେ ସପ୍ତଦଶକରେ ଆହୁରି ନୂଆ ନୂଆ ଧାରଣାଗୁଡ଼ିକର ସୂତ୍ରପାତ ଘଟିଲା । ଭାଷା ଶିକ୍ଷା ଜଗତରେ ଯୋଗାଯୋଗ ଭିତ୍ତିକ ଆଭିମୁଖ୍ୟ ବା Communicative approach ପ୍ରତି ଗୁରୁତ୍ୱ ଆରୋପ କରାଗଲା । ଠିକଣା ସମୟରେ ଓ ଠିକଣା ପରିସ୍ଥିତିରେ ଭାଷା ମାଧ୍ୟମରେ ନିଜର ଭାବକୁ ଅର୍ଥସୂଚକ ମାର୍ଗରେ ବ୍ୟକ୍ତ କରିବା ପାଇଁ ଭାଷା ବିଜ୍ଞାନର ପାଠ୍ୟକ୍ରମରେ ନୂଆ ନୂଆ କୌଶଳଗୁଡ଼ିକୁ ସ୍ଥାନ ଦିଆଗଲା । ସମକାଳୀନ ଭାବରେ ସାହିତ୍ୟିକ ସମାଲୋଚନା ଜଗତରେ ବହୁବିଧ ଚିନ୍ତାଧାରାର ସୂତ୍ରପାତ ଘଟିଲା । ଏଗୁଡ଼ିକୁ ସ୍ଥୂଳ ଭାବରେ "ଆଧୁନିକତା ଉତ୍ତର" ସମାଲୋଚନା (Post-Modernism), ଘଟଣା–କ୍ରିୟା ବିଜ୍ଞାନ (Phenomenology), ଚରମ ମାର୍କସୀୟ ଦର୍ଶନ (Radical Marxism) ଓ ଅଣସଂଗଠନାତ୍ମକ ସମାଲୋଚନା (Deconstructionism) ନାମରେ ଅଭିହିତ କରାଯାଉଛି । ଭାଷା ଶିକ୍ଷା ସମ୍ବନ୍ଧୀୟ ପୂର୍ବ ସୂଚିତ ଆଲୋଚନାର ପୁନରାବୃତ୍ତି କରିବା ପରିବର୍ତ୍ତେ ସାହିତ୍ୟିକ ସମାଲୋଚନା କ୍ଷେତ୍ରରେ ସମକାଳୀନ ଭାବରେ ସୃଷ୍ଟ ଏହି ଅଭିନବ ଧାରଣାଗୁଡ଼ିକ ସମ୍ପର୍କରେ ଆଲୋଚନା କରିବା ବିଶେଷ ପ୍ରାସଙ୍ଗିକ ବୋଧ ହେଉଛି । ପ୍ରାସଙ୍ଗିକତା ପରିପ୍ରେକ୍ଷୀରେ ମୁଁ ସୂଚାଇ ଦେବା ଉଚିତ ଯେ ଭାଷା ବିଜ୍ଞାନ ସମ୍ବନ୍ଧୀୟ ଅର୍ଜିତ ଜ୍ଞାନ ଓ ଏହି ଅଭିନବ ଚିନ୍ତାଧାରାଗୁଡ଼ିକ ମଧ୍ୟରେ ଏପରି ଅର୍ଥସୂଚକ ଓ ପରିପୂରକ ସମ୍ପର୍କ ରହିଛି ଯେ ଏଗୁଡ଼ିକର ସମନ୍ୱୟ ବଳରେ ଉଭୟ ଭାଷା ଓ ସାହିତ୍ୟର ସମୃଦ୍ଧି ସାଧନ ହୋଇ ପାରିବ ।
ଶିଖାଇଦେବା କେବେହେଲେ ସମ୍ଭବ ନୁହେଁ । ସମକାଳୀନ

ମୋର ସୀମିତ ଅଧ୍ୟୟନ ଓ ଅଭିଜ୍ଞତା ବଳରେ ମୁଁ ଭାଷା ଓ ସାହିତ୍ୟ ସମ୍ପର୍କରେ ଯେଉଁ ଅଭିଜ୍ଞତା ସିଦ୍ଧ ଓ ଅଭିବ୍ୟକ୍ତିତ୍ମକ ଜ୍ଞାନ ଅର୍ଜନ କରିଛି ତାହାକୁ ଆଶ୍ରୟ କରି ମୁଁ ନିମ୍ନଲିଖିତ ସିଦ୍ଧାନ୍ତଗୁଡ଼ିକରେ ଉପନୀତ ହୋଇଛି । ଏଠାରେ ମୁଁ ବିଶେଷ ଭାବେ ସୂଚାଇ ଦେବାକୁ ଚାହେଁ ଯେ କୌଣସି ଭାଷାର ପ୍ରାଥମିକ ବା ଦ୍ୱିତୀୟକ ମର୍ଯ୍ୟାଦା ପରିପ୍ରେକ୍ଷୀରେ ତାହାର ପ୍ରଶିକ୍ଷଣ ପାଇଁ ସ୍ୱତନ୍ତ୍ର ପ୍ରକାରର ପାଠ୍ୟକ୍ରମ ପ୍ରଚଳନ କରାଯିବାର କୌଣସି ଆବଶ୍ୟକତା ନାହିଁ । ଏଣୁ ମୋର ଆଲୋଚନାରେ ଭାଷାର ରାଜନୈତିକ ମର୍ଯ୍ୟାଦାକୁ ବିଚାରର ଅନ୍ତର୍ଭୁକ୍ତ କରିବାକୁ ମୁଁ ଉଚିତ ମନେ କରୁନାହିଁ ।

ଭାଷା ଶିକ୍ଷା ବା ଅଧ୍ୟୟନ କ୍ଷେତ୍ରରେ କୌଣସି ତାତ୍ତ୍ୱିକ ଭିତ୍ତିଭୂମିକୁ ଆଦରି ନେବା କ୍ଷେତ୍ରରେ ବିଭ୍ରାନ୍ତି ସୃଷ୍ଟି ହୋଇଛି । ଏକ ପକ୍ଷରେ ବ୍ୟାକରଣଗତ ଜ୍ଞାନ ବଳରେ ଭାଷା ମାଧ୍ୟମରେ ଭାବ ବ୍ୟକ୍ତ କରିବା ଦକ୍ଷତା ପ୍ରତି ଗୁରୁତ୍ୱ ଦିଆଯାଉଛି । ମାତ୍ର ଅପର ପକ୍ଷରେ କୁହାଯାଉଛି

ଷା ଏହି ଦକ୍ଷତା ବଳରେ ସବୁ ପ୍ରକାର ପରିସ୍ଥିତିରେ ଠିକଣା ଭାବରେ ଭାବ ବ୍ୟକ୍ତ କରିବା ପାଇଁ ମନୁଷ୍ୟ ପାରଦର୍ଶୀ ହୋଇ ନପାରେ। ଭାଷାଗତ ଦକ୍ଷତା (Linguistic competence) ପରିବର୍ତ୍ତେ ପରିସ୍ଥିତିକୁ ବୁଝି ଠିକଣା ଭାବରେ ଭାଷା ବଳରେ ନିଜ ଭାବ ବ୍ୟକ୍ତ କରିବା ପାଇଁ ଅନ୍ୟ ବଳିଷ୍ଠ ଉପାଦାନ ତଥା କାର୍ଯ୍ୟକ୍ଷମତା (Communicative competence)ର ଆବଶ୍ୟକତା ରହିଛି। କେବଳ ବ୍ୟାକରଣ ରୂପୀ ମାନଚିତ୍ର ଅଙ୍କନ କରିବା ଦ୍ୱାରା ଭାଷାକୁ ଯୋଗାଯୋଗର ପ୍ରକୃଷ୍ଟ ମାଧ୍ୟମ ଭାବରେ ବ୍ୟବହାର କରାଯିବାର ଅବକାଶ ନାହିଁ। ଏଣୁ ସ୍ୱତଃ ପ୍ରଶ୍ନ କରାଯାଇ ପାରେ ଯେ ଏଥିପାଇଁ ଅନ୍ୟ କୌଣସି ନମୁନା ବା Model ଆମର ହସ୍ତଗତ ହୋଇଛି କି?

ଭାଷା ଆହରଣ ଓ ଭାଷାଗତ ତାଲିମ (Acquisition and learning) ମଧ୍ୟରେ ଥିବା ଗୁଣାତ୍ମକ ପାର୍ଥକ୍ୟକୁ ବିଚାରକୁ ନେବା ଅନିର୍ବାର୍ଯ୍ୟ ବୋଧ ହେଉଛି। ଭାଷା ଆହରଣ ମନୁଷ୍ୟର ଏକ ଅନ୍ତର୍ନିହିତ ପ୍ରକ୍ରିୟା। ଏହା ସ୍ୱାଭାବିକ ଭାବରେ ମନୁଷ୍ୟର ଅବଚେତନ ସ୍ତରରେ କ୍ରିୟାଶୀଳ ହୁଏ। ଆହରଣ (acquisition) ଯୋଗୁ ମନୁଷ୍ୟ କ୍ରମବର୍ଦ୍ଧମାନ ହାରରେ ଭାଷାଗତ ବ୍ୟୁତ୍ପତ୍ତି ଅର୍ଜନ କରିପାରେ। ମାତ୍ର ଭାଷାଗତ ତାଲିମ (learning) ଗୋଟିଏ ଆନୁଷ୍ଠାନିକ ପ୍ରକ୍ରିୟା। ସୁନିର୍ଦ୍ଧାରିତ ପଦ୍ଧତି ବଳରେ ମନୁଷ୍ୟକୁ ଯେଉଁ ଭାଷାଗତ ତାଲିମ ଦିଆଯାଏ ତାହା ଅଦରକାରୀ ହୋଇଯିବାର ସମ୍ଭାବନା ମଧ୍ୟ ରହିଛି। ବିନା ତାଲିମ ବଳରେ ମଧ୍ୟ ଆହରଣ ପ୍ରବଣ ମନୁଷ୍ୟ ଭାଷାଗତ ଦକ୍ଷତା ଅର୍ଜନ କରି ପାରୁଥିବାରୁ ତାଲିମ ପରିବର୍ତ୍ତେ ଆହରଣ ପ୍ରତି ଗୁରୁତ୍ୱ ଆରୋପ କରାଯିବା ସମୀଚୀନ ବୋଧ ହେଉଛି। କିପରି ଭାବରେ ଆମେ ଭାଷା ଆହରଣର ଉତ୍ପତ୍ତିକୁ ଠାବ କରିପାରିବା? ଏହି ଏହାର କ୍ରିୟାଶୀଳତାକୁ ଆବର୍ଦ୍ଧିତ କରାଇବା ଉଦ୍ଦେଶ୍ୟରେ କେଉଁ ପନ୍ଥା ଅନୁଶୀଳନ କରିବା? ପୁଣି ଏପରି ଅନୁସନ୍ଧାନ ବ୍ୟାପାରରେ ଭାଷାଗତ ତାଲିମର ତାତ୍ପର୍ଯ୍ୟକୁ କିପରି ଭାବରେ ନିରୂପଣ କରିପାରିବା? ସର୍ବୋପରି ବ୍ୟାକରଣଗତ ଜ୍ଞାନ ଏହି ବ୍ୟାପାରରେ ସହାୟକ ହେଉଛି କିମ୍ବା ଏ ଦିଗରେ ଅନ୍ତରାୟ ସୃଷ୍ଟି କରୁଛି, ତତ୍‌ସମ୍ପର୍କୀୟ ନିଷ୍ପତ୍ତି ନେବା ପାଇଁ ଆମେ କେଉଁ ପନ୍ଥା ଗ୍ରହଣ କରିବା? ଏପରି ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନଗୁଡ଼ିକର ନିର୍ଭରଯୋଗ୍ୟ ଉତ୍ତର ଅଦ୍ୟାବଧି ଆମର ହସ୍ତଗତ ହୋଇନାହିଁ।

କେବଳ ବ୍ୟବହାର କରିବା ଦ୍ୱାରା ହିଁ ଭାଷାଗତ ଦକ୍ଷତା ମିଳିପାରେ। ଯୋଗାଯୋଗ ପାଇଁ ପରସ୍ପର ସହିତ ଭାଷା ଜରିଆରେ ଭାବ ବିନିମୟ କରିବା ଫଳରେ ଭାଷାର ବ୍ୟବହାର ସମ୍ଭବ ହୁଏ। ଏହି ଅର୍ଥସୂଚକ ତଥା ପ୍ରତ୍ୟକ୍ଷ ଅନୁଭୂତି ପର୍ଯ୍ୟବସିତ ବ୍ୟାପାରକୁ ହିଁ ସମାଲୋଚକମାନେ ଭାଷାର ବ୍ୟବହାର ଭାବରେ ବିଚାର କରିଛନ୍ତି। ପରୋକ୍ଷ ଭାବରେ କେବଳ ଶୁଣିବା ଦ୍ୱାରା କିମ୍ବା ଗଠନାତ୍ମକ ପଦ୍ଧତି ଅବଲମ୍ବନରେ ବାରମ୍ବାର ଅଭ୍ୟାସ କରିବା ଦ୍ୱାରା ଆମେ ଭାଷାର ଯଥାର୍ଥ ବ୍ୟବହାର କରୁନାହିଁ। ତାଲିମ ଦେବା ପାଇଁ ଉଦ୍ଦିଷ୍ଟ ଏହି ପରୋକ୍ଷ ପ୍ରଥାକୁ କାର୍ଯ୍ୟକାରୀ କରାଯିବା ଦ୍ୱାରା ଭାଷା ମାଧ୍ୟମରେ ଯଥାର୍ଥ ଭାବ ବିନିମୟ ଘଟିବାର କୌଣସି ନିଶ୍ଚିତ ସମ୍ଭାବନା ନାହିଁ। ବାସ୍ତବ ଜୀବନରେ ବିଭିନ୍ନ ପ୍ରକାର ପରିସ୍ଥିତିରେ ଭାଷାକୁ ଫଳପ୍ରଦ ମାର୍ଗରେ ଯୋଗାଯୋଗର ମାଧ୍ୟମ ରୂପେ ବ୍ୟବହାର କରିବାର ଦକ୍ଷତା ହିଁ ଭାଷା ଶିକ୍ଷାର ଅଭିମୁଖ୍ୟ। ଏହା ଏକ ଦାର୍ଶନିକ ବ୍ୟାପାର। ଏହି ଗୁରୁତ୍ୱପୂର୍ଣ୍ଣ ସମସ୍ୟାର ସମାଧାନ ଦିଗରେ ଭାଷାତାତ୍ତ୍ୱିକ, ମନସ୍ତାତ୍ତ୍ୱିକ ଓ ଦାର୍ଶନିକ ଦୃଷ୍ଟିରୁ ଗବେଷଣା ଅଦ୍ୟାବଧି ଅବ୍ୟାହତ ରହିଛି।

ଭାଷା ଶିକ୍ଷା ଓ ଭାଷାର ବ୍ୟବହାର ଏକ ସୂକ୍ଷ୍ମ ବ୍ୟାପାର। ପ୍ରତ୍ୟେକ ପିଲା ସ୍ୱାଭାବିକ ଆହରଣ ପ୍ରକ୍ରିୟା ବଳରେ ଭାଷାଗତ ଦକ୍ଷତା ପ୍ରଦର୍ଶନ କରେ। ଏହି ଦକ୍ଷତାର ଆବର୍ଦ୍ଧନ ପାଇଁ ସେ ଚାହେଁ ଏକ ମୁକ୍ତ ଉଦାର ପରିବେଶ। ସ୍ୱାଭାବିକ ରୀତିରେ ସେ ଯେପରି ଭାଷା ମାଧ୍ୟମରେ ନିଜର ଭାବ ବ୍ୟକ୍ତ କରେ ସେଥିରେ ତ୍ରୁଟି ରହିବା ସ୍ୱାଭାବିକ। ମାତ୍ର ଏହି ତ୍ରୁଟିର ପରିମାର୍ଜନା ପାଇଁ ଯଦି ଶିକ୍ଷକମାନେ ନିଜ ଶିକ୍ଷା ଓ ତାଲିମ ପର୍ଯ୍ୟବସିତ ଜ୍ଞାନକୁ ବ୍ୟବହାର କରନ୍ତି ତାହାହେଲେ ପିଲାଟିର ସ୍ୱାଭାବିକ ଆହରଣ ପ୍ରକ୍ରିୟା ବାଧାପ୍ରାପ୍ତ ହେବାର ସମ୍ଭାବନାକୁ ଅସ୍ୱୀକାର କରିହେବ ନାହିଁ। ଏପରିକି ତାହାର ଆହରଣ ପ୍ରବଣତା ବିକୃତ ରୂପ ଧାରଣ କରିବାର ସମ୍ଭାବନା ମଧ୍ୟ ରହିଛି। ଶିକ୍ଷକମାନେ ପିଲାର ବୌଦ୍ଧିକ ପରିବେଶକୁ ଉଦାର ତଥା ସମର୍ଥନ ପ୍ରଦାନକାରୀ ରୂପ ଦେବା ଦ୍ୱାରା ପିଲାଟି ଭାଷାଗତ ଦକ୍ଷତା ଅର୍ଜନ କରିବା ଦିଗରେ ସ୍ୱତଃପ୍ରବୃତ୍ତ ମାର୍ଗରେ ଉତ୍ସାହିତ ହୋଇପାରେ। ଏଣୁ ଭାଷାଶିକ୍ଷା ବ୍ୟବସ୍ଥାକୁ ପିଲାଟିର ମନସ୍ତାତ୍ତ୍ୱିକ ଅବସ୍ଥା ପରିପ୍ରେକ୍ଷୀରେ ଉତ୍ସାହ ପ୍ରଦାୟକ ମାର୍ଗରେ କାର୍ଯ୍ୟକାରୀ କରାଇବା ଦ୍ୱାରା ହିଁ ଭାଷା ଶିକ୍ଷାର ମହତ୍ତ୍ୱ ପ୍ରତିପାଦିତ ହୋଇପାରିବ। ଆମର ଶିକ୍ଷାୟତନମାନଙ୍କରେ ଏପରି ବ୍ୟବସ୍ଥା କାର୍ଯ୍ୟକାରୀ ହେଉଛି କି?

ବହୁ ବିଚାର ଆଲୋଚନା ପରେ ନିମ୍ନ ସୂଚିତ ମତଗୁଡ଼ିକ ସର୍ବସମ୍ମତ ଭାବେ ଗ୍ରହଣ କରାଯାଇଛି :

(କ) ବିଭିନ୍ନ ପ୍ରକାର ପରିସ୍ଥିତି, ପରିବେଶ ଓ ବିଷୟବସ୍ତୁକୁ ଭାଷା ଶିକ୍ଷାର ପ୍ରକୃଷ୍ଟ ମାଧ୍ୟମ ରୂପେ ଗ୍ରହଣ କରାଯାଇପାରେ।

(ଖ) ଏଗୁଡ଼ିକର ଉପସ୍ଥିତିରେ ଅର୍ଥସୂଚକ ସାମାଜିକ ଅନ୍ତଃକ୍ରିୟା ଚଳାଇବା ଦ୍ୱାରା ହିଁ ଭାଷାଗତ ଦକ୍ଷତା ଅର୍ଜନ କରାଯାଏ।

(ଗ) ଭାଷା ଆହରଣକୁ ଗୋଟିଏ ବୈଷୟିକ ବା technical ପ୍ରକ୍ରିୟା ଭାବରେ ବିଚାର କରିବାର କୌଣସି ଯଥାର୍ଥତା ନାହିଁ। କାରଣ ବିଭିନ୍ନ ପରିବେଶ ସହିତ ଭାଷା ଜରିଆରେ ଯେଉଁ ଯୋଗାଯୋଗ ପ୍ରତିଷ୍ଠା କରାଯାଏ ତାହାକୁ କୌଣସି ପୂର୍ବ ନିର୍ଦ୍ଧାରିତ ଶୃଙ୍ଖଳିତ ପଦ୍ଧତି ଅବଲମ୍ବନରେ କାହାକୁ ଶିଖାଇଦେବା କେବେହେଲେ ସମ୍ଭବ ନୁହେଁ।

ଏହି ମନ୍ତବ୍ୟଗୁଡ଼ିକ ଜରିଆରେ ଏତିକିମାତ୍ର ସୂଚାଇ ଦେବାର ପ୍ରୟାସ ହୋଇଛି ଯେ ଭାଷାଗତ ଦକ୍ଷତା ଅର୍ଜନ ପାଇଁ କୌଣସି ଆଦର୍ଶ ପାଠକ୍ରମ ସୃଷ୍ଟି କରାଯିବାର ଉଦ୍ୟମ ଫଳପ୍ରସୂ ହେବ ନାହିଁ। ବାସ୍ତବ ଜୀବନରେ ମନୁଷ୍ୟ ଯେଉଁ ପ୍ରକାରେ ବିଭିନ୍ନ ପରିସ୍ଥିତିର ସମ୍ମୁଖୀନ ହୁଏ ଏବଂ ପରିସ୍ଥିତିର ମୁକାବିଲା ପାଇଁ ସେ ଯେଉଁ ପ୍ରକାର ଭାଷା ଜରିଆରେ ନିଜ ଭାବ ବ୍ୟକ୍ତ କରିବାକୁ ପ୍ରୟାସୀ ହୁଏ ସେହି ପ୍ରକ୍ରିୟାର ଅନୁସରଣ ବଳରେ ହିଁ ମନୁଷ୍ୟକୁ ଭାଷା ଶିକ୍ଷା ବ୍ୟବସ୍ଥା ଅବଲମ୍ବନରେ ଭାଷାଗତ ଦକ୍ଷତା ପ୍ରଦାନ କରାଯାଇ ପାରିବ। ବିଷୟବସ୍ତୁ ପରିପ୍ରେକ୍ଷୀରେ ଭାଷାର ଅର୍ଥସୂଚକ ବ୍ୟବହାର ପାଇଁ ଶିକ୍ଷା ବ୍ୟବସ୍ଥାରେ ଉପଯୁକ୍ତ ଅବସ୍ଥାପନା ତଥା ପାଠ୍ୟକ୍ରମ ସୃଷ୍ଟି କରିବା ଦ୍ୱାରା ହିଁ ଭାଷା ଶିକ୍ଷାର ପ୍ରକୃତ ମହତ୍ତ୍ୱ ପ୍ରତିପାଦିତ ହୋଇ ପାରିବ।

ଭାଷା ଓ ସାହିତ୍ୟ ସମ୍ପର୍କୀୟ ଗବେଷଣା ଚଳାଉଥିବା ବିଶେଷଜ୍ଞମାନଙ୍କ ବୌଦ୍ଧିକତାର ନିଦର୍ଶନ ସ୍ୱରୂପ ଉଭୟ କ୍ଷେତ୍ରରେ ଯେଉଁ ପ୍ରକାର ସମୃଦ୍ଧି ସାଧିତ ହୋଇଛି ତତ୍‌ସମ୍ପର୍କୀୟ ତୁଳନୀୟ ସୂଚନା ଦେବା ପରେ ଏକ ବ୍ୟାପକ ଦୃଷ୍ଟିକୋଣରୁ ଏ ବିଷୟକୁ ଆଲୋଚନା ଚଳାଇବାର ପ୍ରାସଙ୍ଗିକ ଆବଶ୍ୟକତା ଉପଲବ୍ଧ ହେଉଛି। ବହୁ ମହାନୁଭବ ବୁଦ୍ଧିଜୀବୀ ଭାଷା ଓ ସାହିତ୍ୟର ଅଭିନ୍ନତା ଓ ପରିପୂରକ ସମ୍ପର୍କ ସମ୍ବନ୍ଧରେ ମତବ୍ୟକ୍ତ କରିଛନ୍ତି। ସେମାନଙ୍କ ମଧ୍ୟରେ Merleau Pontyଙ୍କ ଦୃଷ୍ଟିକୋଣ ସାମ୍ପ୍ରତିକ ବୁଦ୍ଧିଜୀବୀମାନଙ୍କର ବିଶେଷ ହୃଦୟଗ୍ରାହୀ ହୋଇଛି। Merleau Pontyଙ୍କ ବିଚାରର ମହନୀୟତା ହେଉଛି ଯେ ସେ ଭାଷା ଓ ସାହିତ୍ୟକୁ ଏକ ସଂଶ୍ଳିଷ୍ଟ ତଥା ପୂର୍ଣ୍ଣତାଭିମୁଖୀ ଦୃଷ୍ଟିକୋଣରୁ ବିଚାର କରିବାକୁ ଶ୍ରେୟସ୍କର ମଣିଛନ୍ତି। ଭାଷାର

ଗଠନାତ୍ମକ ପରିପାଟୀ ଓ ସାହିତ୍ୟର ଅର୍ଥ ମଧ୍ୟରେ ଯେଉଁ ଜୀବନଧର୍ମୀ ସମ୍ପର୍କ ରହିଛି ତାହାକୁ ବୋଧଗମ୍ୟ ମାର୍ଗରେ ବୁଝାଇଦେବା ପାଇଁ ସେ ନିଜ ମୌଳିକତାର ସଦୁପଯୋଗ କରିଛନ୍ତି । ମନୁଷ୍ୟ ବିବିଧବର୍ଣ୍ଣୀ ପ୍ରକୃତିର ସନ୍ତାନ । ସେ ବହୁବିଧ ଭୌତିକ ତଥା ମାନସିକ ପରିସ୍ଥିତିର ସମ୍ମୁଖୀନ ହୁଏ । ଆହରଣ ପ୍ରବଣତା ଓ ପରିବେଶୀୟ ସଚେତନତା ବଳରେ ମନୁଷ୍ୟ ବିବିଧ ଅନୁଭୂତି ଲାଭ କରେ । ଇନ୍ଦ୍ରିୟାନୁଭୂତି ଅବଲମ୍ବନରେ ବାହ୍ୟ ଦୃଶ୍ୟ ବା ଘଟଣାଗୁଡ଼ିକ ସମ୍ପର୍କରେ ଜ୍ଞାନ ଅର୍ଜନ କରିବା ସଙ୍ଗେ ସଙ୍ଗେ ସେ ନିଜ ଅବବୋଧ, ଅନ୍ତର୍ଦୃଷ୍ଟି, କଳ୍ପନା ପ୍ରବଣତା ଓ ଦୂରଦର୍ଶିତା ଅବଲମ୍ବନରେ ବିଶ୍ୱର ଯାବତୀୟ ଘଟଣା ସମ୍ପର୍କରେ ଉପଲବ୍ଧି ପାଇପାରେ । ମନୁଷ୍ୟ ରୂପୀ ଚେତନଶୀଳ ପ୍ରାଣୀର ଏହି ଅନନ୍ୟ ସୃଜିତ ବୈଶିଷ୍ଟ୍ୟକୁ ବିଶ୍ଳେଷଣ କୁ ନେଇ Merleau Ponty ଭାଷାର ଗଠନ ଓ ସାହିତ୍ୟର ଅର୍ଥକୁ ଏକ ବ୍ୟାପକ ଦୃଷ୍ଟିକୋଣରୁ ବିଚାର କରିଛନ୍ତି ।

Merleau Pontyଙ୍କ ମତାନୁଯାୟୀ ପର୍ଯ୍ୟବେକ୍ଷକ ଓ ପର୍ଯ୍ୟବେକ୍ଷିତ ବସ୍ତୁ ପରସ୍ପରଠାରୁ ଭିନ୍ନ ନୁହନ୍ତି । ସେ ସର୍ବବିଧ ପର୍ଯ୍ୟବେକ୍ଷଣକୁ ଏକ ଅନ୍ତଃକ୍ରିୟା ଭାବରେ ବିଚାର କରିଛନ୍ତି ଏବଂ ଏହି ଅନ୍ତଃକ୍ରିୟାର ଫଳସ୍ୱରୂପ ମନୁଷ୍ୟର ମାନସ ପଟରେ ଯେଉଁ ସଂପ୍ରତ୍ୟୟର ଆବିର୍ଭାବ ଘଟେ ତାହାକୁ ହିଁ ମନୁଷ୍ୟ ରୂପୀ ପ୍ରାଣୀର ବିଶ୍ୱ ସମ୍ବନ୍ଧୀୟ ଚେତନାର ଉତ୍ସ ଭାବରେ ଗ୍ରହଣ କରିଛନ୍ତି । ଉଦାହରଣ ସ୍ୱରୂପ ଗୋଟିଏ ପକ୍ଷୀ ବୃକ୍ଷ ଶାଖାରୁ ହଠାତ୍ ଉଡ଼ିଯିବା ବେଳେ ସେହି ଶାଖାଟିର ନମନୀୟ ପ୍ରକୃତି ସମ୍ପର୍କରେ ଦ୍ରଷ୍ଟା ସଚେତନ ହୁଅନ୍ତି । ହାତରୁ କାଚ ଗ୍ଲାସ୍‌ଟିଏ ତଳକୁ ଖସି ପଡ଼ିବା ଫଳରେ ଯେଉଁ ଝଣ ଝଣ ଶବ୍ଦ କରି ଖଣ୍ଡ ବିଖଣ୍ଡିତ ହୋଇଯାଏ ସେହି ଶବ୍ଦ ଅବଶ୍ୟ ଶ୍ରୋତାଙ୍କର ଦୃଷ୍ଟି ଆକର୍ଷଣ କରେ, ମାତ୍ର ସମକାଳୀନ ଭାବରେ ସେ କାଚର ଭଙ୍ଗୁର ପ୍ରକୃତି ସମ୍ପର୍କରେ ସଚେତନ ହୋଇପାରନ୍ତି । ବସ୍ତୁନିଷ୍ଠ ମାର୍ଗରେ ଗୋଟିଏ ପିଲା ବିଭିନ୍ନ ପ୍ରକାରର ରଙ୍ଗ ସମ୍ପର୍କରେ ସଚେତନ ହୁଏନାହିଁ । ସେ ପ୍ରତ୍ୟହ ବହୁବିଧ ରଙ୍ଗ ବେରଙ୍ଗୀ ଦୃଶ୍ୟର ସମ୍ମୁଖୀନ ହୁଏ ଏବଂ ସେଗୁଡ଼ିକ ସହ ବହୁବିଧ ଶିଶୁ ସୁଲଭ ଅନ୍ତଃକ୍ରିୟାରେ ଜଡ଼ିତ ହୁଏ । ଏପରି ସ୍ୱାଭାବିକ ପ୍ରକ୍ରିୟାର ଅନ୍ତିମ ପରିଣତି ସ୍ୱରୂପ ସେ ଆପେ ଆପେ ବିଭିନ୍ନ ରଙ୍ଗଗୁଡ଼ିକୁ ପୃଥକ୍ ଭାବରେ ଚିହ୍ନିବାକୁ ସମର୍ଥ ହୁଏ । ଏପରି କି ଉଦାହରଣଗୁଡ଼ିକରୁ ବୁଝି ହେଉଛି ଯେ ବସ୍ତୁ ନିଷ୍ଠତା ଓ ବ୍ୟକ୍ତି ନିଷ୍ଠତା ଭଳି ଆଦର୍ଶଗୁଡ଼ିକୁ ଜ୍ଞାନ ପ୍ରାପ୍ତିର ଉତ୍ସ ଭାବରେ ବିଚାର କରିବାର କୌଣସି ଯଥାର୍ଥତା ନାହିଁ । ମନୁଷ୍ୟ କେବଳ ନିଜ ପାରିପାର୍ଶ୍ୱିକ ପରିବେଶ ସହିତ ଯେପରି ଭାବରେ ବିଭିନ୍ନ ପ୍ରକାର ମାନସିକ, ଦୈହିକ ଓ ଅଭିକ୍ରିୟାତ୍ମକ ଅନ୍ତଃକ୍ରିୟାଗୁଡ଼ିକରେ ଜଡ଼ିତ ହୁଏ ଏବଂ ଏହାର ପରିଣାମ ସ୍ୱରୂପ ସେ ଯେଉଁ ଇନ୍ଦ୍ରିୟାନୁଭବ୍ୟ ବା ଅବବୋଧଭିତ୍ତିକ ଉପଲବ୍ଧି ପ୍ରାପ୍ତ ହୁଏ ତାହା ହିଁ ତାହାର ବିଶ୍ୱ ଦର୍ଶନ ଅର୍ଥାତ୍ ପ୍ରତ୍ୟେକ ମଣିଷର ଦୁନିଆ ଅନ୍ୟ ମଣିଷଠାରୁ ଭିନ୍ନ । ଏହି ଆପାତତଃ ଅନନ୍ତ ପରିବ୍ୟାପ୍ତ ବିଶ୍ୱ ପରସରରେ ପ୍ରତ୍ୟେକ ମଣିଷର ଦୃଷ୍ଟିକୋଣ ଏକ ସ୍ୱତନ୍ତ୍ର ରୂପ ଧାରଣ କରିଛି ।

ଏଣୁ ଯେ କୌଣସି ଏକ ସର୍ଜନାତ୍ମକ ସାହିତ୍ୟିକ କୃତି ସମ୍ପୃକ୍ତ ସାହିତ୍ୟିକଙ୍କ ବିଶ୍ୱ ସମ୍ବନ୍ଧୀୟ ଦୃଷ୍ଟିକୋଣର ଏକ ପ୍ରତିଫଳନ । ତାଙ୍କ ସାହିତ୍ୟିକ କୃତିଟିକୁ ପାଠ କରିବା ଦ୍ୱାରା ଜଣେ ପାଠକ ଯଦି ତାଙ୍କ ଅଭିବ୍ୟକ୍ତିର ମହତ୍ତ୍ୱକୁ ଠିକ୍ ଭାବରେ ଭାଷାରେ ହୃଦୟଙ୍ଗମ କରି ପାରନ୍ତି ତାହାହେଲେ ଏପରି ବୌଦ୍ଧିକ ଅନ୍ତଃକ୍ରିୟାର ଫଳ ସ୍ୱରୂପ ସେ ସେହି ସାହିତ୍ୟିକଙ୍କ ବିଶ୍ୱ ଦର୍ଶନକୁ ଠିକଣା ଭାବେ ବୁଝିପାରନ୍ତି । ଏଣୁ ଜଣେ ପାଠକ ଯେତେ ଅଧିକ ସାହିତ୍ୟିକ କୃତିଗୁଡ଼ିକୁ ପାଠ କରିପାରନ୍ତି ତଦନୁପାତରେ ସେ ବିଶ୍ୱ ସମ୍ବନ୍ଧୀୟ ସେତେ ଅଧିକ ସ୍ୱତନ୍ତ୍ର ଚିନ୍ତାଧାରା ସହିତ ପରିଚିତ ହୋଇପାରନ୍ତି । ବିଭିନ୍ନ ଭାବରେ, ବିଭିନ୍ନ ପ୍ରକାର ପରିସ୍ଥିତିରେ ମନୁଷ୍ୟ ଯେପରି ଭାବରେ ସରଳ ବା ଜଟିଳ ସମସ୍ୟାଗୁଡ଼ିକର ସମାଧାନ କରିପାରେ ଅଥବା କରି ନପାରେ ତତ୍ସମ୍ପର୍କୀୟ ଏବଂବିଧ ଜ୍ଞାନାର୍ଜନ ତାଙ୍କ ମାନସିକ ପରିସରକୁ ପ୍ରସାରିତ କରିପାରେ । ତାଙ୍କ ଅବଚେତନ ମାନସରେ ସଞ୍ଚିତ ଏହି ଉପଲବ୍ଧି ଭବିଷ୍ୟତ ବିଭିନ୍ନ ପରିସ୍ଥିତିରେ ଭାଷା ମାଧ୍ୟମରେ ନିଜର ଭାବ ବ୍ୟକ୍ତ କରିବା ପାଇଁ ନିଜ ଅଜାଣତରେ ମଧ୍ୟ ସାହାଯ୍ୟ କରିପାରେ । ଏଣୁ ସାହିତ୍ୟ ଭାଷାଗତ ଦକ୍ଷତା ପ୍ରଦର୍ଶନ ପାଇଁ ଯେ ଏକ ପ୍ରକୃଷ୍ଟ ମାଧ୍ୟମ ରୂପେ ବ୍ୟବହୃତ ହୋଇ ଆସୁଛି ଏବଂ ମନୁଷ୍ୟ ମନୁଷ୍ୟ ମଧ୍ୟରେ ଭାଷା ମାଧ୍ୟମରେ ଭାବ ବିନିମୟ କରିବା ପାଇଁ ଏକ ପ୍ରକୃଷ୍ଟ ଅବସ୍ଥାପନାର ଦାୟିତ୍ୱ ତୁଲାଉଛି ଏହି କଥାଟିକୁ Merleau Ponty ତାଙ୍କ ବିଶ୍ଳେଷଣାତ୍ମକ ଚିନ୍ତନ ବଳରେ ଆମ ସମ୍ମୁଖରେ ଉପସ୍ଥାପନ କରିଛନ୍ତି ।

ମନୁଷ୍ୟ ଏକ ସାମାଜିକ ପ୍ରାଣୀ । ସଭ୍ୟତା ଓ ସଂସ୍କୃତିର ଉତ୍ତରୋତ୍ତର ବିକାଶ ଘଟାଇବା ପାଇଁ ସେ ବରାବର ଅଧିକରୁ ଅଧିକ ଫଳପ୍ରଦ ମାର୍ଗରେ ଅନ୍ୟ ସହିତ ଭାବ ବିନିମୟ କରିବା ପାଇଁ ପ୍ରୟାସୀ ହୋଇଛି । ସେ ଯେତେ ଅନାବିଳ ଅର୍ଥପ୍ରବଣ ମାର୍ଗରେ ନିଜର ମନୋଭାବକୁ ଇତର ମନୁଷ୍ୟ ନିକଟରେ ପ୍ରକାଶ କରିପାରୁଛି ସେହି ଅନୁପାତରେ ତାହାର ବୌଦ୍ଧିକତାର ଅଭିବୃଦ୍ଧି ଘଟୁଛି ବୋଲି ଜଣାପଡୁଛି । ଆଲୋଚନାରୁ ସ୍ପଷ୍ଟ ଜଣାପଡୁଛି ଯେ ବିଭିନ୍ନ ପ୍ରକାର ସାହିତ୍ୟିକ କୃତିଗୁଡ଼ିକ ମନୁଷ୍ୟକୁ ଭାଷା ଜରିଆରେ ଭାବ ବ୍ୟକ୍ତ କରିବାର ଅନ୍ୟତମ ପ୍ରକୃଷ୍ଟ ଅବସ୍ଥାପନା ଯୋଗାଇ ପାରୁଛନ୍ତି । ଏଣୁ ଭାଷା ଶିକ୍ଷା ଓ ସାହିତ୍ୟ ଶିକ୍ଷା ମଧ୍ୟରେ କୌଣସି ପ୍ରକାର ଗୁଣାତ୍ମକ ପାର୍ଥକ୍ୟର ଉପସ୍ଥିତିକୁ Merleau Ponty ସ୍ୱୀକାର କରିନାହାନ୍ତି ।

ଯେତେ ଅଧିକ ସାହିତ୍ୟ ପଠନ ଫଳରେ ଆମେ ଯେତେ ଅଧିକ ଅନୁଭୂତି ଅର୍ଜନ କରିପାରିବା ତଦନୁସାରେ ବିଭିନ୍ନ ପ୍ରକାର ଭାଷାଗତ ପାରଦର୍ଶିତା ପ୍ରଦର୍ଶନ କରିବାକୁ ଆମେ ଅବଚେତନ ସ୍ତରୀୟ ଉପାଦାନ ପାଇପାରିବା । ଏଣୁ ଭାଷା ବିନା ସାହିତ୍ୟର ପରିପ୍ରକାଶ ସମ୍ଭବ ନୁହେଁ ଓ ସମକାଳୀକ ଭାବରେ ଏହି ପରିବର୍ତ୍ତନଶୀଳ ଦୁନିଆରେ ସାହିତ୍ୟ ବିନା ଭାଷାର ସମୃଦ୍ଧି ମଧ୍ୟ ସମ୍ଭବ ନୁହେଁ । ଭାଷା ଓ ସାହିତ୍ୟ ପରସ୍ପର ପରିପୂରକ । ଉଭୟେ ଏକ ଓ ଅଭିନ୍ନ ।

ଆମେ ଭାଷା ଶିକ୍ଷା ଓ ସାହିତ୍ୟ ଶିକ୍ଷା ପାଇଁ ଏପରି ପାଠ୍ୟକ୍ରମ ଓ ପ୍ରଶିକ୍ଷଣ ପଦ୍ଧତି ପ୍ରଣୟନ କରିବା ବାଞ୍ଛନୀୟ ଯେ ଏହି ପଦ୍ଧତିକୁ କାର୍ଯ୍ୟକାରୀ କରାଯିବା ଦ୍ୱାରା ବିଦ୍ୟାର୍ଥୀମାନଙ୍କଠାରେ ସାହିତ୍ୟିକ କୃତିଗୁଡ଼ିକର ପଠନଲିପ୍ସା ଓ ଭାଷାଗତ ଦକ୍ଷତା ଅର୍ଜନ ପାଇଁ ସ୍ୱତଃପ୍ରବୃତ୍ତ ଆଗ୍ରହ ସୃଷ୍ଟି ହୋଇପାରିବ । ଏଥିପାଇଁ କୌଣସି ନିର୍ଦ୍ଦିଷ୍ଟ ପଦ୍ଧତିର ଗୁଣାତ୍ମକ ଉତ୍କର୍ଷକୁ ଉପସ୍ଥାପନା କରିବା ମୋର ଅଭିପ୍ରାୟ ନୁହେଁ । କାରଣ ଏପରି ଉଦ୍ୟମ କେବଳ ଧୃଷ୍ଟତାର ପରିଚାୟକ ହେବ । ଜ୍ଞାନାର୍ଜନ ଏକ ଅନ୍ତହୀନ ପ୍ରକ୍ରିୟା । ସମୟକ୍ରମେ ନୂଆ ନୂଆ ଚେତନାର ସୂତ୍ରପାତ ଘଟୁଛି । ଜ୍ଞାନ ବିଜ୍ଞାନ ବଳରେ ମନୁଷ୍ୟ ପ୍ରକୃତିର ରହସ୍ୟ ଭେଦ କରିବା ପାଇଁ ଅଧିକରୁ ଅଧିକ ସମର୍ଥ ହେଉଛି । ତାହାର ବିଶ୍ୱ ଦର୍ଶନ ପରିବର୍ତ୍ତନଶୀଳ ରୂପ ଧାରଣ କରୁଛି । ଏଣୁ କୌଣସି ପଦ୍ଧତିକୁ ଏକ କାଳଜୟୀ ପଦ୍ଧତି ଭାବରେ ଉପସ୍ଥାପନା କରିବାର କୌଣସି ଯଥାର୍ଥତା ନାହିଁ । ତାତ୍ପର୍ଯ୍ୟର ବିଷୟ ହେଉଛି ଯେ ଆମେ ଯଦି ଭାଷା ଶିକ୍ଷା ଓ ସାହିତ୍ୟ ଶିକ୍ଷା ର ପରିପୂରକ ଭୂମିକା ସମ୍ପର୍କରେ ଠିକଣା ଭାବରେ ସଚେତନ ହୋଇପାରିବା, ତାହାହେଲେ ବିଦ୍ୟାର୍ଥୀମାନଙ୍କୁ ଭାଷା ଓ ସାହିତ୍ୟ ସମ୍ପର୍କରେ ସମ୍ୟକ ଜ୍ଞାନ ଯୋଗାଇ ଦେବା ପାଇଁ ଠିକଣା ପଦ୍ଧତିର ପ୍ରଚଳନ ଦିଗରେ ବରାବର ଗୁରୁତ୍ୱ ଆରୋପ କରିପାରିବା । ପ୍ରତ୍ୟେକ ଶିକ୍ଷକ ଭାଷା ଓ ସାହିତ୍ୟର ପରିପୂରକ ଭୂମିକା ସମ୍ପର୍କରେ ସଚେତନ ହେବା ଦ୍ୱାରା ହିଁ ନିଜ ଛାତ୍ରଛାତ୍ରୀମାନଙ୍କୁ ଶିକ୍ଷା ଦାନ କରିବା ବେଳେ ନିଜ ବୁଦ୍ଧି ବଳରେ ଏହି ପରିପୂରକ ଭୂମିକାର ମହତ୍ତ୍ୱ ପ୍ରତିପାଦନ ଦିଗରେ ନିଜସ୍ୱ ଅବଦାନ ଯୋଗାଇ ପାରିବେ ।

ଆମେ ଆଶା କରିବା ଯେ ଆମ ରାଜ୍ୟର ଶିକ୍ଷକ ଶିକ୍ଷୟିତ୍ରୀମାନେ ବିଭିନ୍ନ ଶିକ୍ଷାବିତ୍‌ମାନଙ୍କର ଶିକ୍ଷଣୀୟ ଅବଦାନଗୁଡ଼ିକରୁ ପ୍ରଶିକ୍ଷଣର ସୋପାନ ସଂଗ୍ରହ କରିବା ସଙ୍ଗେ ସଙ୍ଗେ ନିଜ ବୁଦ୍ଧି ବଳରେ ଛାତ୍ରଛାତ୍ରୀମାନଙ୍କ ମାନସପଟରେ ଓଡ଼ିଆ ଭାଷା ଓ ସାହିତ୍ୟର ପରିପୂରକ ଭୂମିକାଟିକୁ ଠିକଣା ଭାବରେ ପ୍ରତିଷ୍ଠାପିତ କରାଇବା ଦିଗରେ ଯତ୍ନବାନ ହେବେ ।



# ଶହୀଦ ଲକ୍ଷ୍ମଣ ନାୟକ ସ୍ମୃତି ଦିବସ

ଗତ ତା୨୯।୩।୯୦ରିଖ ଦିନ ବ୍ରହ୍ମପୁରଠାରେ ସୂଚନା ଓ ଲୋକ ସମ୍ପର୍କ ବିଭାଗ ଓ ଶହୀଦ ଲକ୍ଷ୍ମଣ ନାୟକଙ୍କ ସ୍ମୃତି କମିଟି ମିଳିତ ଆନୁକୂଲ୍ୟରେ "ଶହୀଦ ଲକ୍ଷ୍ମଣ ନାୟକଙ୍କ ସ୍ମୃତି ଦିବସ" ମହା ସମାରୋହରେ ପାଳିତ ହୋଇଅଛି : ସକାଳ ୭ଟା ବେଳେ ଟାଉନ୍ ହଲ୍‌ଠାରୁ ଏକ ନିରବ ଶୋଭାଯାତ୍ରାରେ ସହରର ବିଶିଷ୍ଟ ବ୍ୟକ୍ତି, ସ୍ୱାଧୀନତା ସଂଗ୍ରାମୀ ଓ ବିଭିନ୍ନ ବିଦ୍ୟାଳୟର ଛାତ୍ରଛାତ୍ରୀମାନେ ବାହାରି କେନ୍ଦ୍ରୀୟ ଜେଲ୍ ନିକଟରେ ପହଞ୍ଚିଥିଲେ । ଜିଲ୍ଲାପାଳ ଶ୍ରୀ ଉପେନ୍ଦ୍ର ନାଥ ବେହେରା, ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ବଳରାମ ପଣ୍ଡା, ପୌରପାଳକ ଶ୍ରୀ ଚନ୍ଦ୍ରଶେଖର ସାହୁ ଓ ବିଭିନ୍ନ ଶିକ୍ଷାନୁଷ୍ଠାନର ଛାତ୍ରଛାତ୍ରୀମାନେ ଲକ୍ଷ୍ମଣ ନାୟକଙ୍କ ପ୍ରତିମୂର୍ତ୍ତିରେ ପୁଷ୍ପମାଲ୍ୟ ଅର୍ପଣ କରିଥିଲେ । ଜିଲ୍ଲାପାଳ ଶ୍ରୀ ଉପେନ୍ଦ୍ର ନାଥ ବେହେରା ଜେଲ୍ ଭିତରେ ଥିବା ଲକ୍ଷ୍ମଣ ନାୟକଙ୍କ ସ୍ମୃତିପୀଠରେ ମଧ୍ୟ ପୁଷ୍ପମାଲ୍ୟ ଅର୍ପଣ କରିବା ସଙ୍ଗେ ସଙ୍ଗେ ସେଠାରେ ଏକ ଦୀପ ପ୍ରଜ୍ୱଳନ କରିଥିଲେ ।

ସନ୍ଧ୍ୟାରେ ଟାଉନ୍ ହଲ୍‌ଠାରେ ଶ୍ରୀ ବଳରାମ ପଣ୍ଡାଙ୍କ ସଭାପତିତ୍ୱରେ ଏକ ସାଧାରଣ ସଭା ଅନୁଷ୍ଠିତ ହୋଇଥିଲା । ଉକ୍ତ ସଭାରେ ଶ୍ରୀ ଦୁର୍ଲ୍ଲଭ ଚନ୍ଦ୍ର ଚୌଧୁରୀ, ଦିବାକର ପଟ୍ଟନାୟକ ପ୍ରଶିକ୍ଷଣ ମହାବିଦ୍ୟାଳୟର ଅଧ୍ୟକ୍ଷ ମୁଖ୍ୟ ଅତିଥି ଓ ପୌରପାଳକ ଶ୍ରୀ ଚନ୍ଦ୍ରଶେଖର ସାହୁ ସମ୍ମାନୀୟ ଅତିଥି ଭାବରେ ଯୋଗ ଦେଇଥିଲେ । ସାଧାରଣ ସଭା ପରେ ବିଭିନ୍ନ ପ୍ରତିଯୋଗୀତାର କୃତୀ ପ୍ରତିଯୋଗୀମାନଙ୍କୁ ମୁଖ୍ୟ ଅତିଥି ପୁରସ୍କାର ବିତରଣ କରିଥିଲେ ।

# ଏ ଦେଶ ଆଉ ଜଣେ ଆମ୍ବେଦକର ଦରକାର କରୁଛି

ଗତ ଅପ୍ରେଲ ୧୪ ତାରିଖ ଦିନ ରାଜ୍ୟ ସୂଚନା ଭବନଠାରେ ରାଜ୍ୟସ୍ତରୀୟ ଆମ୍ବେଦକର ଜୟନ୍ତୀ ଉତ୍ସବ ଉଦ୍‌ଘାଟନ କରି ଓଡ଼ିଶାର ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା ଗଣତନ୍ତ୍ର ସୌଧର ସୁରକ୍ଷା ତଥା ସାମ୍ବିଧାନିକ ଅନୁଷ୍ଠାନଗୁଡ଼ିକରେ ମର୍ଯ୍ୟାଦାକୁ ଅକ୍ଷୁର୍ଣ୍ଣ ରଖିବା ପାଇଁ ଦେଶ ଆଉ ଜଣେ ଆମ୍ବେଦ୍‌କର୍ ଦରକାର କରୁଛି ବୋଲି ମତବ୍ୟକ୍ତ କରିଥିଲେ । ଶ୍ରୀ ଶର୍ମା କହିଥିଲେ ଯେ ନିଜର ସବୁ ସୁବିଧା ସୁଯୋଗ ଥାଇ ମଧ ଡକ୍ଟର୍ ଆମ୍ବେଦ୍‌କର୍ ବ୍ୟକ୍ତିଗତ ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଏ ଦେଶର ଅଗଣିତ ଦଳିତ, ନିଷ୍ପେସିତ, ଅବହେଳିତ ଲୋକଙ୍କ ଦୁଃଖ ଦୁର୍ଦ୍ଦଶାକୁ ଦୂର କରିବା ପାଇଁ ସେ ଅବିରତ ସଂଗ୍ରାମ ଚଳାଇଥିଲେ । ରାଜ୍ୟପାଳ ଡକ୍ଟର୍ ଆମ୍ବେଦ୍‌କର୍‌ଙ୍କୁ ଆଧୁନିକ ଯୁଗର ମନୁ ଓ ଏ ଯୁଗର ଅଦ୍ୱିତୀୟ ଆଇନ୍ ପ୍ରଣେତା ଭାବେ ଅଭିହିତ କରିଥିଲେ ।

ଏହି ଉତ୍ସବରେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍‌ନାୟକ ମୁଖ୍ୟ ଅତିଥି ଭାବେ ଯୋଗ ଦେଇଥିଲେ । ଶ୍ରୀ ପଟ୍‌ନାୟକ ବର୍ତ୍ତମାନର ନେତାମାନଙ୍କୁ ଡକ୍ଟର୍ ଆମ୍ବେଦ୍‌କର୍‌ଙ୍କ ଆଦର୍ଶ ଓ ପ୍ରଦର୍ଶିତ ମାର୍ଗରେ ପରିଚାଳିତ ହୋଇ ଏକ ଉନ୍ନତ ସମାଜ ପ୍ରତିଷ୍ଠା କରିବା ଦିଗରେ ଅଗ୍ରଣୀ ହେବା ଆବଶ୍ୟକ ଏବଂ ଏହା ହିଁ ଡକ୍ଟର୍ ଆମ୍ବେଦ୍‌କର୍‌ଙ୍କ ସ୍ମୃତି ପ୍ରତି ଶ୍ରେଷ୍ଠ ଶ୍ରଦ୍ଧାଞ୍ଜଳି ହେବ ବୋଲି ମତ ଦେଇଥିଲେ ।

ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ହେମାନନ୍ଦ ବିଶ୍ୱାଳ ଏହି ଉତ୍ସବରେ ଉଦ୍‌ବୋଧନ ଦେଇ ଡକ୍ଟର ଆମ୍ବେଦକରଙ୍କୁ ମାଟିର ଶ୍ରେଷ୍ଠ ସନ୍ତାନ ଭାବେ ଅଭିହିତ କରିଥିଲେ । ଆମ୍ବେଦ୍‌କର ଜନ୍ମ ଶତବାର୍ଷିକୀ କମିଟି ଓ ରାଜ୍ୟ ସରକାର ମିଳିତ ଭାବେ ଅନୁସୂଚିତ ଜାତି ତଥା ଉପଜାତିଙ୍କ ପାଇଁ ଉଦ୍ଦିଷ୍ଟ ହୋଇଥିବା ଚାକିରୀଗୁଡ଼ିକ ଉପଯୁକ୍ତ ଭାବେ ପୂରଣ କରିବେ ବୋଲି ଆଶା ପ୍ରକାଶ କରିଥିଲେ ।

ଅନ୍ୟମାନଙ୍କ ମଧ୍ୟରେ ଉପମନ୍ତ୍ରୀ ଶ୍ରୀ ପଦ୍ମନାଭ ବେହେରା, ଉତ୍ସବ ପାଳନ କମିଟି ସମ୍ପାଦକ ବିଧାୟକ ଶ୍ରୀ ହୃଷିକେଶ ନାୟକ ପ୍ରମୁଖ ଏହି ଉତ୍ସବରେ ଉଦ୍‌ବୋଧନ ଦେଇଥିଲେ ।

• ବ୍ୟକ୍ତି ଓ ବିଶ୍ୱ

# "ଭାରତ ରତ୍ନ" ଡକ୍ଟର ଆମ୍ବେଦ୍କର

*ଅଧ୍ୟାପକ ବସନ୍ତ କୁମାର ମଲ୍ଲିକ୍*

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ପୃଥିବୀ ଇତିହାସରେ ଏକ ମହତ୍ୱପୂର୍ଣ୍ଣ ଦିବସ । ଏହି ଦିନ ପୃଥିବୀର ଏକ ସ୍ୱାଧୀନ ଦେଶ ଭାବରେ ପରିଚିତ ହେଲା ଭାରତବର୍ଷ । ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଭାରତର ସୁପରିଚାଳନା ଓ ସର୍ବାଙ୍ଗୀନ ଉନ୍ନତି ନିମନ୍ତେ ଏକ ଶାସନ ଖସଡ଼ା ବା ସମ୍ବିଧାନ ପ୍ରସ୍ତୁତ କରିବାକୁ ସମ୍ବିଧାନ ନିର୍ମାତା ସଭାର ଗଠନ କରାଯାଇଥିଲା । ଏହି ସମ୍ବିଧାନ ନିର୍ମାତା ସଭା ସମ୍ବିଧାନ ପ୍ରସ୍ତୁତିର ମୁଖ୍ୟ ଦାୟିତ୍ୱ ନ୍ୟସ୍ତ କରିଥିଲା ଭାରତର ପ୍ରଥମ ଆଇନ୍ ମନ୍ତ୍ରୀ ଡକ୍ଟର୍ ଭୀମରାଓ ରାମଜୀ ଆମ୍ବେଦ୍କରଙ୍କ ଉପରେ । ଡକ୍ଟର୍ ଆମ୍ବେଦ୍କର ନିଜର ଗଭୀର ଜ୍ଞାନ, ଅଭୂତପୂର୍ବ ବାଗ୍ମୀତା, ଧୈର୍ଯ୍ୟ ଓ ନିଷ୍ଠାର ସହ ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟଟିକୁ ସମ୍ପାଦନ କରିଥିଲେ ।

ଏହି ମହାନ୍ ବ୍ୟକ୍ତିଙ୍କର ଜନ୍ମ ହୋଇଥିଲା ୧୮୯୧ ମସିହା ଏପ୍ରିଲ୍ ୧୪ ତାରିଖ ଦିନ ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲାସ୍ଥ ଏକ ଦରିଦ୍ର ଅସ୍ପୃଶ୍ୟ ମହର ପରିବାରରେ । ତାଙ୍କ ପିତାଙ୍କ ନାମ ରାମଜୀ ସକ୍‌ପାଲ୍ ଓ ମାତାଙ୍କ ନାମ ଥିଲା ଭୀମାବାଈ । ତୁଳସୀ ଦୁଇ ପତ୍ରରୁ ବାସିଲା ପରି ପିଲାଦିନରୁ ଆମ୍ବେଦ୍କରଙ୍କ ଜ୍ଞାନ ଓ ଚରିତ୍ରର ମହାନତା ସ୍ପଷ୍ଟ ଜଣାପଡ଼ିଥିଲା । କିନ୍ତୁ ସେ ସମୟର ଜାତିପ୍ରଥା ଓ ଅସ୍ପୃଶ୍ୟତା ଆମ୍ବେଦ୍କରଙ୍କ ବିଦ୍ୟାର୍ଜନରେ ଯଥେଷ୍ଟ ଅନ୍ତରାୟ ସୃଷ୍ଟି କରିଥିଲା । ବିଦ୍ୟାଳୟର ଶ୍ରେଣୀ ଗୃହରେ ତାଙ୍କୁ ତଥାକଥିତ ଉଚ୍ଚ ବର୍ଣ୍ଣର ଛାତ୍ରମାନଙ୍କଠାରୁ ଅଲଗା ବସିବାକୁ ପଡୁଥିଲା । ବିଦ୍ୟାଳୟରେ ଥିବା ପାତ୍ରରୁ ପାନୀୟ ଜଳ ନେବା ପାଇଁ ମଧ୍ୟ ତାଙ୍କୁ ଅନୁମତି ଦିଆଯାଉ ନଥିଲା । ଦୁଃଖ, ଦୈନ୍ୟ ଓ ବିଭିନ୍ନ ଅସୁବିଧା ସତ୍ତ୍ୱେ ଆମ୍ବେଦ୍କର ପାଠ ପଢ଼ାରେ ମନୋନିବେଶ କରି ବମ୍ବେର ଏଲ୍‌ଫିନ୍‌ଷ୍ଟୋନ୍ ହାଇସ୍କୁଲରୁ ୧୯୦୭ ମସିହାରେ ମାଟ୍ରିକ୍ ପାଶ୍ କଲେ ।

ଆମ୍ବେଦ୍କର ସେ ସମୟରେ ମାଟ୍ରିକ୍ ପାଶ୍ କରିବା ଏକ ପ୍ରଶଂସାର ବିଷୟ । ସେ କଲେଜରେ ପଢ଼ି ଉଚ୍ଚ ଶିକ୍ଷା ଲାଭ କରିବାକୁ ପ୍ରବଳ ଆଗ୍ରହୀ ଥିଲେ । କିନ୍ତୁ ଦାରିଦ୍ର୍ୟ ଓ ଅନଟନ ତାଙ୍କର ପ୍ରତ୍ୟେକ ପ୍ରଗତି ପଥରେ ବାଧା ସୃଷ୍ଟି କରୁଥାଏ । ଏହି ସମୟରେ ବଡ଼ୋଦାର ଉଦାରଚେତା ମହାରାଜା ଶୟାଜୀରାଓ ଗାଏକ୍‌ୱାଡ୍ ଆମ୍ବେଦ୍କରଙ୍କର ମେଧା ଓ ଧୀଶକ୍ତିକୁ ପ୍ରଶଂସା କରି ତାଙ୍କୁ କଲେଜରେ ପଢ଼ିବା ନିମନ୍ତେ ମାସିକ ପଚିଶ ଟଙ୍କା ଲେଖାଏ ଏକ ଛାତ୍ରବୃତ୍ତି ଦେଲେ । ଏତଦ୍‌ବ୍ୟତୀତ ଆମ୍ବେଦ୍କରଙ୍କୁ ତାଙ୍କର ଅନ୍ୟ ଦୁଇଜଣ ଶିକ୍ଷକ ମଧ୍ୟ ସାହାଯ୍ୟ କରିଥିଲେ । ସେମାନେ ହେଲେ କ୍ରିଷ୍ଣଜୀ ଅର୍ଜନ କେଲୁସ୍କର ଓ ପ୍ରଫେସର୍ ମୁଲର୍ । ଆମ୍ବେଦ୍କରଙ୍କର ବମ୍ବେର ଏଲ୍‌ଫିନ୍‌ଷ୍ଟୋନ୍ କଲେଜରେ ପାଠପଢ଼ା ସାରି ୧୯୧୨ ମସିହାରେ ବି: ଏ: ପାସ୍ କଲେ । ଏହି ସମୟରେ ବଡ଼ୋଦାର ମହାରାଜା ଗାଏକ୍‌ୱାଡ୍ କେତେକ ମେଧାବୀ ଛାତ୍ରଙ୍କୁ ଉଚ୍ଚଶିକ୍ଷା ନିମନ୍ତେ ବିଲାତ ପଠାଉଥାନ୍ତି । ସେଥିପାଇଁ ଗୋଟିଏ ସର୍ତ୍ତ ଥିଲା ଯେ ଉଚ୍ଚଶିକ୍ଷା ଲାଭ ପରେ ସେହି ଯୁବକମାନେ ଫେରି ଆସି ବଡ଼ୋଦାର ଦେୱାନୀରେ କାର୍ଯ୍ୟ କରିବେ ।ଏହି ସର୍ତ୍ତରେ ରାଜି ହୋଇ ଆମ୍ବେଦ୍କର ବିଲାତ ଯିବା ପାଇଁ ବଡ଼ୋଦା ମହାରାଜାଙ୍କର ସାହାଯ୍ୟ ପାଇଲେ । ବଡ଼ୋଦା ମହାରାଜାଙ୍କ ସାହାଯ୍ୟ ତାଙ୍କ ପାଇଁ ଏକ ଆଶୀର୍ବାଦ ଥିଲା । ସେ ଏବେ ଆମେରିକାର କଲମ୍ବିଆ ବିଶ୍ୱବିଦ୍ୟାଳୟରେ ପଢ଼ି ୧୯୧୫ ମସିହାରେ ଏମ୍. ଏ: ଓ ୧୯୧୭ ମସିହାରେ ଅର୍ଥନୀତିରେ ପି: ଏଚ୍: ଡି: ଡିଗ୍ରୀ ପାଇବା ପାଇଁ ଯୋଗ୍ୟ ବିବେଚିତ ହେଲେ । ସମୟ ଓ ଅର୍ଥର ଅଭାବ ଯୋଗୁଁ ତାଙ୍କୁ ଶୀଘ୍ର ପାଠପଢ଼ା ସାରି ଭାରତକୁ ଫେରି ଆସିବାକୁ ମହାରାଜାଙ୍କର ନିର୍ଦ୍ଦେଶ ଥିଲା । ତେଣୁ ସିଏ ଯଥାସମ୍ଭବ ପି: ଏଚ୍: ଡି: ସାରି ଭାରତକୁ ଫେରି ଆସିବାକୁ ଚାହିଁଥିଲେ । ଏଥିପାଇଁ ତାଙ୍କର ଜୀବନୀକାର ଡକ୍ଟର୍ ଧନଞ୍ଜୟ କୀର୍‌ଙ୍କ ମତରେ ଆମ୍ବେଦ୍କର ଦିନକୁ ୧୮ଘଣ୍ଟା ଅଧ୍ୟୟନରତ ରହୁଥିଲେ ।

ପୃଥିବୀ ପ୍ରସିଦ୍ଧ କଲମ୍ବିଆ ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ କରି ଡକ୍ଟର୍ ଆମ୍ବେଦ୍କର ସର୍ତ୍ତ ଅନୁଯାୟୀ ମହାରାଜା ଗାଏକ୍‌ୱାଡ଼ଙ୍କ ଦେୱାନୀରେ ବଡ଼ୋଦା ରାଜ୍ୟର ସାମରିକ ସଚିବ ଭାବେ ନିଯୁକ୍ତି ପାଇଲେ । କିନ୍ତୁ ଦୁଃଖର କଥା ତାଙ୍କର ଉଚ୍ଚଶିକ୍ଷା ସତ୍ତ୍ୱେ ଅସ୍ପୃଶ୍ୟତାର କଳଙ୍କରୁ ସେ ମୁକ୍ତ ହୋଇ ନଥିଲେ । ହିନ୍ଦୁ ସମାଜରେ ଅଜ୍ଞତା, ଅନ୍ଧ ବିଶ୍ୱାସ, ଅହମିକା ଓ ଅନଗ୍ରସରତା ଯୋଗୁଁ କେତେକ ଯୋଗ୍ୟ ବ୍ୟକ୍ତି ମାନବିକ ଅଧିକାର ପାଉ ନଥିଲେ ସେ ସମୟରେ । ବଡ଼ୋଦା ଦେୱାନୀର ସମସ୍ତ ଅମଲା ଓ କର୍ମଚାରୀମାନେ ଜଣେ ଅସ୍ପୃଶ୍ୟ ସଚିବଙ୍କ ଅଧୀନରେ କାର୍ଯ୍ୟ ନକରିବାକୁ ଏକ ପ୍ରକାର ପ୍ରତିବାଦମୂଳକ ଧର୍ମଘଟ ଆରମ୍ଭ କଲେ । ଏପରିକି ଡକ୍ଟର୍ ଆମ୍ବେଦ୍କରଙ୍କ ପାଇଁ ନିଯୁକ୍ତି ହୋଇଥିବା ପିଅନ ମଧ୍ୟ ତାଙ୍କ ଅଫିସ୍ ଭିତରକୁ ପ୍ରବେଶ ନକରି ବାହାରୁ ଟେବୁଲ୍ ଉପରକୁ ଫାଇଲ୍‌ଗୁଡ଼ିଏ ଫିଙ୍ଗି ଦେଉଥିଲା । ଏପରି ଉପହାସ୍ୟ

ପରିସ୍ଥିତିର ମୁକାବିଲା କରିବା ପାଇଁ ଡକ୍ଟର୍ ଆମ୍ବେଦ୍କରଙ୍କ ମହାରାଜାଙ୍କୁ ଅନୁରୋଧ କଲେ । ମହାରାଜା ନିଜର ଅସାମର୍ଥ୍ୟ ପ୍ରକାଶ କରିବାରୁ ସେ କାର୍ଯ୍ୟରୁ ଇସ୍ତଫା ଦେଇ ଦେଇଥିଲେ ।

ଏହି ସମୟରେ ବମ୍ବେର ସିଡେନହାମ୍ କଲେଜର ଅର୍ଥନୀତି ବିଭାଗରେ ଜଣେ ପ୍ରଫେସରଙ୍କ ସ୍ଥାନ ଖାଲି ଥାଏ । ଡକ୍ଟର୍ ଆମ୍ବେଦ୍କର ସେଥିପାଇଁ ଆବେଦନ କରି ସେହି ସ୍ଥାନ ପୂରଣ କରିବାକୁ ଯୋଗ୍ୟ ବିବେଚିତ ହେଲେ । ସେ ସେଠାରେ Political Economy ପଢ଼ାଉଥାନ୍ତି । କିନ୍ତୁ ସମାଜର ଦୂଷିତ ବାତାବରଣ, ଜାତୀୟ ମନୋଭାବ, ସାମାଜିକ ଶୋଷଣ ଓ ଅନ୍ୟାୟ ଯୋଗୁଁ ସେ କିଛି ଅର୍ଥ ସଞ୍ଚୟ କରି ଉଚ୍ଚଶିକ୍ଷା ନିମିତ୍ତ ଲଣ୍ଡନ ଯିବା ପାଇଁ ଭାବିଥାନ୍ତି । ୧୯୨୦ ମସିହାରେ ସେ ଇଂଲଣ୍ଡ ଯାଇ London School of Economicରେ ଅର୍ଥନୀତିରେ ଏମ୍. ଏସ୍. ସି. ପାଇଁ ଆବେଦନ କଲେ । ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରଫେସରମାନେ ଡକ୍ଟର୍ ଆମ୍ବେଦ୍କରଙ୍କ ଅର୍ଥନୀତି ଶାସ୍ତ୍ରରେ ଗଭୀର ଜ୍ଞାନ ଦେଖି ଏମ୍. ଏସ୍. ସି. ପରେ ତାଙ୍କୁ Doctor of Science (D. Sc.)ରେ ପ୍ରବେଶ କରାଇଦେଲେ । ଏହି ସମୟରେ ଡକ୍ଟର୍ ଆମ୍ବେଦ୍କର ମଧ୍ୟ ଆଇନ ଶାସ୍ତ୍ରରେ ଜ୍ଞାନ ଅର୍ଜନ କରିବାକୁ ପ୍ରବଳ ଆଗ୍ରହୀ ହୋଇ ପଡ଼ିଥିଲେ । ତେଣୁ ସେ ଲଣ୍ଡନର Gray's Innରେ Bar-at-Law ପଢ଼ିବା ପାଇଁ ଯୋଗ ଦେଲେ । ସେ ବ୍ରିଟିଶ୍ ମ୍ୟୁଜିୟମ୍ ଲାଇବ୍ରେରୀରେ ବହୁ ପୁସ୍ତକ ଅଧ୍ୟୟନ କରି ଅର୍ଥନୀତି ଶାସ୍ତ୍ର, ଆଇନ ଓ ବିଶ୍ୱର ଶାସ୍ତ୍ର, ରାଜନୀତି ବିଜ୍ଞାନ, ଇତିହାସ, ତତ୍ତ୍ୱ ଓ ସମାଜ ବିଜ୍ଞାନ ଆଦି ବିଷୟରେ ଗଭୀର ଜ୍ଞାନ ଅର୍ଜନ କରିଥିଲେ, ଯେଉଁଠାରେ ପୂର୍ବରୁ ପୃଥିବୀର ବିଶିଷ୍ଟ ବିଜ୍ଞ ବ୍ୟକ୍ତିମାନେ ଯଥା : କାର୍ଲ ମାର୍କ୍ସ, ଲେନିନ୍, ମାଜିନୀ ଓ ବୀର ସାଭରକର୍ ଇତ୍ୟାଦି ଅଧ୍ୟୟନ କରିଥିଲେ । ଫଳତଃ ଡକ୍ଟର୍ ଆମ୍ବେଦ୍କର ୧୯୨୧ ମସିହାରେ ଅର୍ଥନୀତିରେ ଏମ୍. ଏସ୍. ସି ଓ ୧୯୨୩ରେ Bar-at-Law ତଥା ଅର୍ଥନୀତିରେ ଡି. ଏସ୍. ସି. ଡିଗ୍ରୀରେ ଭୂଷିତ ହେଲେ । London School of Economicରୁ ଡି. ଏସ୍. ସି. ଡିଗ୍ରୀ ପାଇବା ପାଇଁ ସେ ଥିଲେ ପ୍ରଥମ ଭାରତୀୟ ।

ପୃଥିବୀର ପ୍ରସିଦ୍ଧ ବିଶ୍ୱବିଦ୍ୟାଳୟରୁ ଉଚ୍ଚଶିକ୍ଷା ଲାଭ ପରେ ଭାରତକୁ ଫେରି ଆସି ଡକ୍ଟର୍ ଆମ୍ବେଦ୍କର କିଛି ଦିନ ପାଇଁ ବମ୍ବେ ହାଇକୋର୍ଟରେ ଓକିଲାତି କରିଥିଲେ । ଆଇନ ବ୍ୟବସାୟ ଦ୍ୱାରା ଅର୍ଥ ଉପାର୍ଜନ କରିବା ତାଙ୍କ ଜୀବନର ଲକ୍ଷ୍ୟ ନଥିଲା ବା ସେ ଏଥିରେ ଶାନ୍ତି ପାଉ ନଥିଲେ । ଭାରତରେ ଲକ୍ଷ ଲକ୍ଷ ଅସ୍ପୃଶ୍ୟମାନଙ୍କର ଦୈନ୍ୟ, ଦୁର୍ବିପାକ ଓ ଅକ୍ଷମତା ସର୍ବଦା ତାଙ୍କ ଆଖି ଆଗରେ ନାଚି ଉଠୁଥାଏ । ଦୁଃଖ କଷ୍ଟରେ ପୀଡ଼ିତ ଅସ୍ପୃଶ୍ୟମାନଙ୍କୁ ନିଜ ମାତୃଭୂମିର ପାଣି, ପବନ ଓ ରାସ୍ତାଘାଟ ଉପରେ ଅଧିକାର ଦେବା ଓ ସେମାନଙ୍କର ରାଜନୈତିକ ଅଧିକାର ସାବ୍ୟସ୍ତ କରିବାକୁ ସେ ଏକ ସଂଗ୍ରାମ ଆରମ୍ଭ କଲେ । ମହଦ ସତ୍ୟାଗ୍ରହ (୧୯୨୭) ସେଥି ମଧ୍ୟରୁ ସର୍ବ ପ୍ରଧାନ । ଏତଦ୍‌ବ୍ୟତୀତ ଅସ୍ପୃଶ୍ୟମାନଙ୍କୁ ଅନ୍ୟ ହିନ୍ଦୁମାନଙ୍କ ପରି ସାମାଜିକ ଓ ଧର୍ମନୈତିକ ଅଧିକାର ଦେବା ନିମନ୍ତେ ସେ କେତେକ ମନ୍ଦିର ପ୍ରବେଶ ଅଭିଯାନ ମଧ୍ୟ ଆରମ୍ଭ କରିଥିଲେ । ତନ୍ମଧ୍ୟରୁ ନାସିକ୍‌ର କଲାରାମ ମନ୍ଦିର ପ୍ରବେଶ ଅଭିଯାନ ପ୍ରଧାନ । ଅବଶ୍ୟ, ସମାଜରେ ଏକ ସଂସ୍କାରମୂଳକ ପରିବର୍ତ୍ତନ ଆଣିବାକୁ ସେ ଅସ୍ପୃଶ୍ୟମାନଙ୍କର ମନ୍ଦିର ପ୍ରବେଶ ଆନ୍ଦୋଳନ ଆରମ୍ଭ କରିଥିଲେ । କିନ୍ତୁ ଏହା ସେମାନଙ୍କର ପ୍ରକୃତ ଉନ୍ନତିର ପଥ ନଥିବାରୁ ଏହି କାର୍ଯ୍ୟକ୍ରମ ପରେ ସେ ବନ୍ଦ କରି ଦେଇଥିଲେ ।

ଅସ୍ପୃଶ୍ୟମାନଙ୍କର ରାଜନୈତିକ ଅଧିକାର ସମ୍ବନ୍ଧରେ ତାଙ୍କର ଭୂମିକା ଅବିସ୍ମରଣୀୟ । ଲଣ୍ଡନରେ ଅନୁଷ୍ଠିତ ପ୍ରଥମ ଓ ଦ୍ୱିତୀୟ ଗୋଲ୍‌ଟେବୁଲ୍ ବୈଠକ (୧୯୩୦–୩୨)ରେ ଅସ୍ପୃଶ୍ୟମାନଙ୍କର ରାଜନୈତିକ ଅଧିକାର ନିମିତ୍ତ ସେ ଦୃଢ଼ ଦାବୀ ଉପସ୍ଥାପିତ କରିଥିଲେ । ଅସ୍ପୃଶ୍ୟମାନେ ହିନ୍ଦୁମାନଙ୍କଠାରୁ ସମ୍ପୂର୍ଣ୍ଣ ଅଲଗା ଏବଂ ଶିଖ୍, ମୁସଲମାନ୍ ଓ ଖ୍ରୀଷ୍ଟିଆନ୍‌ମାନଙ୍କୁ ଯେଉଁଭଳି ସମ୍ପ୍ରଦାୟ ଭିତ୍ତିକ ସୁବିଧା ସୁଯୋଗ ଦିଆଯାଉଥିଲା, ସେମାନଙ୍କୁ ସେହିଭଳି ସୁବିଧା ସୁଯୋଗ ଦିଆଯିବା ପାଇଁ ସେ ଯୁକ୍ତି ବାଢ଼ିଥିଲେ । ଏଥିପାଇଁ ମହାତ୍ମାଗାନ୍ଧି ଓ ଡକ୍ଟର୍ ଆମ୍ବେଦ୍କରଙ୍କ ମଧ୍ୟରେ ଦ୍ୱୈତ ମତ ଦେଖା ଦେଇଥିଲା । କିନ୍ତୁ ଗୋଲ୍‌ଟେବୁଲ୍ ବୈଠକର ନିଷ୍ପତ୍ତି ଅନୁଯାୟୀ ଅସ୍ପୃଶ୍ୟମାନଙ୍କୁ ଶିଖ୍, ମୁସଲମାନ୍ ଓ ଖ୍ରୀଷ୍ଟିଆନ୍‌ମାନଙ୍କ ଭଳି "ଅଲଗା ନିର୍ବାଚକ" (Separate Electorate) ଭାବେ ଘୋଷଣା କରାଗଲା । ଏହା ଦ୍ୱାରା ସେମାନେ ନିଜ ସମ୍ପ୍ରଦାୟ ଭିତରୁ ଜଣେ ବିଧାୟକଙ୍କୁ ନିର୍ବାଚିତ କରିବା ସହିତ ଅନ୍ୟ ଜଣେ ସାଧାରଣ ବିଧାୟକଙ୍କୁ ମଧ୍ୟ ନିର୍ବାଚିତ କରିବାର ଅଧିକାର ପାଇଥାନ୍ତେ ଏବଂ ଏହି ଦ୍ୱୈତ ମତଦାନ ଅଧିକାର ସେମାନଙ୍କର ସାମାଜିକ, ଅର୍ଥନୈତିକ, ରାଜନୈତିକ ଓ ଶିକ୍ଷାଗତ ଅବସ୍ଥାର ଉତ୍ଥାନ ପାଇଁ ଅବଶ୍ୟମ୍ଭାବୀ ହୋଇଥାଆନ୍ତା । କିନ୍ତୁ ଏହି "ସାମ୍ପ୍ରଦାୟିକ ପୁରସ୍କାର" ଘୋଷଣା ଫେରାଇ ନେବାକୁ ଦାବୀ କରି ମହାତ୍ମାଗାନ୍ଧି ଆରମ୍ଭ କରିଥିଲେ ଆମରଣ ଅନଶନ । ତାଙ୍କର ଯୁକ୍ତି ଥିଲା ଯେ ଅସ୍ପୃଶ୍ୟମାନେ ଅଲଗା ନିର୍ବାଚକ ହେଲେ ଭବିଷ୍ୟତରେ ହିନ୍ଦୁ ଧର୍ମ ଓ ହିନ୍ଦୁ ସମାଜ ଖଣ୍ଡ ଖଣ୍ଡ ହୋଇ ଧ୍ୱଂସାଭିମୁଖୀ ହେବ । ଗାନ୍ଧିଜୀଙ୍କର ଆମରଣ ଅନଶନ ସାରା ଭାରତରେ ଚହଳ ପକାଇଥିଲା ଓ ବିଶିଷ୍ଟ କଂଗ୍ରେସ ନେତାମାନେ ଡକ୍ଟର୍ ଆମ୍ବେଦ୍କରଙ୍କୁ ତାଙ୍କର ଦାବୀ ପ୍ରତ୍ୟାହାର କରି ନେବାକୁ ଅନୁରୋଧ କରିଥିଲେ । ଶେଷରେ ମହାତ୍ମାଗାନ୍ଧିଙ୍କର ଜୀବନ ରକ୍ଷା ତଥା ସମଗ୍ର ହିନ୍ଦୁ ସମାଜର ଭବିଷ୍ୟତକୁ ଲକ୍ଷ୍ୟ କରି ଡକ୍ଟର୍ ଆମ୍ବେଦ୍କର ଲକ୍ଷ ଲକ୍ଷ ଅସ୍ପୃଶ୍ୟମାନଙ୍କର ରାଜନୈତିକ ଅଧିକାରକୁ ସଙ୍କୁଚିତ କରିବା ପାଇଁ ବାଧ୍ୟ ହୋଇଥିଲେ । ଶେଷରେ ୧୯୩୨ ମସିହା ସେପ୍ଟେମ୍ବର ୨୪ ତାରିଖ ଦିନ ଡକ୍ଟର୍ ଆମ୍ବେଦ୍କର ଓ ମହାତ୍ମାଗାନ୍ଧିଙ୍କ ତରଫରୁ ପଣ୍ଡିତ ମଦନମୋହନ ମାଳବ୍ୟଙ୍କ ମଧ୍ୟରେ ଏକ ଐତିହାସିକ ରାଜିନାମା ସ୍ୱାକ୍ଷରିତ ହେଲା । ଏହି ରାଜିନାମା "ପୁନା ଚୁକ୍ତି" ଭାବେ ସର୍ବବିଦିତ । ଏହି ରାଜିନାମା ଅନୁଯାୟୀ ଅସ୍ପୃଶ୍ୟମାନଙ୍କ ପାଇଁ "ଅଲଗା ନିର୍ବାଚନ ମଣ୍ଡଳୀ" ପରିବର୍ତ୍ତେ "ସ୍ଥାନ ସଂରକ୍ଷଣ" ବ୍ୟବସ୍ଥା ଆରମ୍ଭ କରାଗଲା ।

ଏହାପରେ ଡକ୍ଟର୍ ଆମ୍ବେଦ୍କର ୧୯୪୨ରୁ ୧୯୪୬ ମସିହା ପର୍ଯ୍ୟନ୍ତ ଭାଇସ୍‌ରାୟଙ୍କର "କାର୍ଯ୍ୟକାରିଣୀ ପରିଷଦ"ର ଶ୍ରମ ସଦସ୍ୟ ଭାବେ କାର୍ଯ୍ୟ କରିଥିଲେ । ଶ୍ରମ ସଦସ୍ୟ ଭାବେ ସେ ଭାରତୀୟ ଶ୍ରମିକମାନଙ୍କର ମଜୁରୀ ସମସ୍ୟା, ମାଲିକ ଓ ଶ୍ରମିକମାନଙ୍କ ମଧ୍ୟରେ ସମ୍ପର୍କ ତଥା ଶ୍ରମିକମାନଙ୍କର ଜୀବନର ମାନଦଣ୍ଡ ବୃଦ୍ଧି ପାଇଁ କରିଥିବା କାର୍ଯ୍ୟକ୍ରମ ବର୍ତ୍ତମାନ ଶ୍ରମିକ ହିତୈଷୀ ବିଲ୍‌ଗୁଡ଼ିକର ପଥ ପ୍ରଦର୍ଶକ ହୋଇ ରହିଛି ।

ଭାରତ ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ପଣ୍ଡିତ ନେହେରୁଙ୍କ ଅଧିନାୟକତ୍ୱରେ ମଧ୍ୟବର୍ତ୍ତୀକାଳୀନ ସରକାର ଗଠନ କରାଯାଇଥିଲା । ଡକ୍ଟର୍ ଆମ୍ବେଦକର ଜଣେ ଅଣକଂଗ୍ରେସୀ ହୋଇଥିଲେ ମଧ୍ୟ ତାଙ୍କୁ ନେହେରୁଙ୍କ କ୍ୟାବିନେଟ୍‌କୁ ସ୍ୱାଗତ କରାଯାଇଥିଲା । କାରଣ ସେତେବେଳେ ଡକ୍ଟର୍ ଆମ୍ବେଦ୍କରଙ୍କ ଭଳି ଜଣେ ଆଇନଜ୍ଞ, ରାଜନୀତି, ଅର୍ଥନୀତି, ସମାଜ ଶାସ୍ତ୍ର ଓ ଭାରତର ଐତିହ୍ୟ ଓ ସଂସ୍କୃତିରେ ଜ୍ଞାନ ଥିବା ନିପୁଣ ବ୍ୟକ୍ତିଙ୍କର ଆବଶ୍ୟକ ଥିଲା । ସେ ଭାରତର ପ୍ରଥମ ଆଇନ ମନ୍ତ୍ରୀ ହେଲେ ।

ଡକ୍ଟର୍ ଆମ୍ବେଦ୍କର ଜଣେ ସାଧାରଣ ସଦସ୍ୟ ଭାବେ "ସମ୍ବିଧାନ ନିର୍ମାତା ସଭା"ରେ ଯୋଗ ଦେଇଥିଲେ । ସେ ଆଶ୍ଚର୍ଯ୍ୟ ହୋଇଥିଲେ ତାଙ୍କୁ ଯେତେବେଳେ ଡ୍ରାଫ୍‌ଟିଙ୍ଗ୍ କମିଟିର ସଦସ୍ୟ ଭାବେ ନିର୍ବାଚିତ କରାଗଲା । ସେ ଆହୁରି ଆଶ୍ଚର୍ଯ୍ୟ ହୋଇଥିଲେ ତାଙ୍କୁ ଯେତେବେଳେ "ଡ୍ରାଫ୍‌ଟିଙ୍ଗ୍ କମିଟି"ର ଚେୟାରମ୍ୟାନ୍ ଭାବେ ନିର୍ବାଚିତ କରାଗଲା

୧୯୪୭ ମସିହା ଅଗଷ୍ଟ ୨୯ ତାରିଖ ଦିନ । ଭାରତ ସମ୍ବିଧାନ ପ୍ରସ୍ତୁତ କରିବା ନିମିତ୍ତ ସର୍ବମୋଟ ୨ ବର୍ଷ ୧୧ ମାସ ଓ ୧୭ ଦିନ ଲାଗିଥିଲା । ଏହି ଦୀର୍ଘ ସମୟ ମଧ୍ୟରେ ଡକ୍ଟର୍ ଆମ୍ବେଦ୍କର ନିଜର ଆଇନ ଓ ବିଚାର ଶକ୍ତି ତଥା ପୃଥିବୀର ବିଭିନ୍ନ ଦେଶର ସମ୍ବିଧାନଗୁଡ଼ିକ ସମ୍ବନ୍ଧୀୟ ବିଭିନ୍ନ ପ୍ରଶ୍ନର ସନ୍ତୋଷଜନକ ଉତ୍ତର ମାଧ୍ୟମରେ ସୁଚାରୁ ରୂପେ ସମ୍ବିଧାନ ପ୍ରସ୍ତୁତି କାର୍ଯ୍ୟ ବହନ କରିଥିଲେ । ଲିଖିତ ସମ୍ବିଧାନର ପ୍ରସ୍ତୁତି ନିମିତ୍ତ ତାଙ୍କୁ ହିଁ ସମ୍ପୂର୍ଣ୍ଣ ଦାୟିତ୍ୱ ବହନ କରିବାକୁ ପଡ଼ିଥିଲା । "ସମ୍ବିଧାନ ନିର୍ମାତା ସଭା"ର ଜଣେ ଅନ୍ୟତମ ସଦସ୍ୟ ଟି: ଟି: କୃଷ୍ଣମାଚାରୀଙ୍କ ମତରେ, ଡ୍ରାଫ୍ଟିଙ୍ଗ୍ କମିଟି ସାତ ଜଣ ସଦସ୍ୟଙ୍କୁ ନେଇ ଗଠନ କରାଯାଇଥିଲା । ସେମାନଙ୍କ ମଧ୍ୟରୁ ଜଣେ ଇସ୍ତଫା ଦେଇଥିଲେ, ଜଣେ ମୃତ୍ୟୁବରଣ କରିଥିଲେ ଓ ଆଉ ଜଣେ ଆମେରିକାରେ ରହୁଥିଲେ, କିନ୍ତୁ ସେମାନଙ୍କର ସ୍ଥାନ ଅପୂରଣ ରହିଥିଲା । ଆଉ ଜଣେ ନିଜର ରାଜ୍ୟ ବ୍ୟାପାରରେ ବ୍ୟସ୍ତ ରହିଥିଲେ, ଜଣେ ଦୁଇଜଣ ଦିଲ୍ଲୀଠାରୁ ଦୂରରେ ରହୁଥିଲେ । ବୋଧହୁଏ ଅସୁସ୍ଥତାବଶତଃ ସେମାନେ କମିଟିରେ ଉପସ୍ଥିତ ହୋଇପାରୁ ନଥିଲେ । ତେଣୁ ପ୍ରକୃତରେ ଡକ୍ଟର୍ ଆମ୍ବେଦ୍କରଙ୍କୁ ହିଁ ଏକାକୀ ଲିଖିତ ସମ୍ବିଧାନ ପ୍ରସ୍ତୁତ କରିବାକୁ ପଡ଼ିଥିଲା । ଭାରତର ସମ୍ବିଧାନ ପ୍ରସ୍ତୁତ ପରେ ପରେ ତାଙ୍କୁ ହିଁ ପୁଣି ପ୍ରସ୍ତୁତ କରିବାକୁ ପଡ଼ିଥିଲା ବିଖ୍ୟାତ "ହିନ୍ଦୁ କୋଡ୍ ବିଲ୍" । ଏଥିରେ ସେ ପ୍ରାଚୀନ ଆଇନଦାତା ମନୁଙ୍କର ଶ୍ରେଣୀଗତ ଓ ଭେଦଭାବମୂଳକ ସାମାଜିକ ନୀତି, ପ୍ରଥା ଓ ପରମ୍ପରାକୁ ପରିବର୍ତ୍ତନ କରି ଆଧୁନିକ ଓ ପରିବର୍ତ୍ତନଶୀଳ ସମାଜରେ ମନୁଷ୍ୟର ଆବଶ୍ୟକତା ନେଇ ସେ ହିନ୍ଦୁ କୋଡ଼ ବିଲ୍ ପ୍ରସ୍ତୁତ କରିଥିଲେ । ସେଥିପାଇଁ ଯଥାର୍ଥରେ ଜଷ୍ଟିସ୍ ଗଜେନ୍ଦ୍ର ଗଡ଼କର୍ ତାଙ୍କୁ ସମ୍ବୋଧନ କରିଥିଲେ "ଆଧୁନିକ ମନୁ" ।

ସମ୍ବିଧାନ ନିର୍ମାତା ଭାବେ ଡକ୍ଟର୍ ଆମ୍ବେଦ୍କରଙ୍କର ଭୂମିକା ଓ ଅବଦାନ ଅଦ୍ୱିତୀୟ । ଏ ସମ୍ପର୍କରେ "ସମ୍ବିଧାନ ନିର୍ମାତା ସଭା"ର ସଦସ୍ୟ ମାନ୍ୟବର B. Pattabhi Sita Ramaiyaଙ୍କ ମତରେ "I should like to tell Dr. Ambedhkar what a steam roller intellect he brought to bear upon this magnificient and tremondous task, irresistible, uncontrollable, levelling down tale palms and short poppies whatever he felt right he stood by regardless of consequences."

ଡକ୍ଟର୍ ଆମ୍ବେଦ୍କରଙ୍କର ଲିଖିତ ସମ୍ବିଧାନର ପରିଚାଳନା ସମ୍ପର୍କରେ "ସମ୍ବିଧାନ ନିର୍ମାତା ସଭା"ର ସଭାପତି ଡକ୍ଟର୍ ରାଜେନ୍ଦ୍ର ପ୍ରସାଦଙ୍କ ଅନୁସାରେ "Sitting in the chair and watching proceedings from day to day I have realised as nobody else could have with what zeal and devotion, the members of the Drafting Committee and specially its Chairman Dr. Ambedkar in spite of his indifferent health have worked, we could never make a decision which was or could be ever so right as when we put him on the Drafting Committee and make him its Chairman. He has not only justified his selection but has added lustre to the way which he has done."

ସାମ୍ବିଧାନିକ ଆଇନରେ ଦକ୍ଷ Dr. M. V. Pylesଙ୍କ ଭାଷାରେ "Ambedkar's contribution to the Constitution is undoubtedly of the highest order. Indeed he was a "Modern Manu" and deserves to the called the father or the Chief Arctitect of the Constitution of India."

ଡକ୍ଟର୍ ଆମ୍ବେଦ୍କର ଗଣତନ୍ତ୍ର ଓ ସମାଜବାଦର ଜଣେ ଦୃଢ଼ ପ୍ରବକ୍ତା ଥିଲେ । ସେ ଯେ କେବଳ ମଣିଷ ଓ ମଣିଷ ମଧ୍ୟରେ ସମାନତା ଚାହିଁଥିଲେ, ତା' ନୁହେଁ, ସେ ମଧ୍ୟ ଚାହୁଁଥିଲେ ପୁରୁଷ ଓ ସ୍ତ୍ରୀମାନଙ୍କ ମଧ୍ୟରେ ସମାନତା । ତାଙ୍କର "ହିନ୍ଦୁ କୋଡ୍ ବିଲ୍" ଏହାର ଜ୍ୱଳନ୍ତ ପ୍ରମାଣ । ସେ ନାରୀମାନଙ୍କର ଶିକ୍ଷାଗତ ଅଧିକାର ସହ ସେମାନଙ୍କର ସମ୍ପତ୍ତି ଉପରେ ଅଧିକାର ଓ ଛାଡ଼ପତ୍ର ନେବାର କ୍ଷମତା ସପକ୍ଷରେ ଦୃଢ଼ ଯୁକ୍ତି ବାଢ଼ିଥିଲେ । ଏଥିପାଇଁ ସେ ସମଗ୍ର ଭାରତୀୟ ନାରୀ ସମାଜରେ ଚିର ସ୍ମରଣୀୟ ।

ଏହି ମହାନ୍ ବ୍ୟକ୍ତିତ୍ୱର ମହାପ୍ରୟାଣ ଘଟିଥିଲା ୧୯୫୬ ମସିହା ଡିସେମ୍ବର ୬ ତାରିଖରେ । ପାର୍ଲିଆମେଣ୍ଟରେ ଅନୁଷ୍ଠିତ ଏକ ଶୋକ ସଭାରେ ନେହେରୁ କହିଥିଲେ, "Dr. Ambedkar was a "symbol of revolt" against all the oppressing features of Hinduism. His service to the nation in the form of making Constitution was undoubtedly unique and more than his service rendered to the depressed classes."

ଇତିହାସ ଅଧ୍ୟାପକ,
ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ,
ପୁରୀ ।

## ଇଦ୍-ଉଲ୍-ଫିତର୍ ଉତ୍ସବ ଉପଲକ୍ଷେ ମୁଖ୍ୟମନ୍ତ୍ରୀଙ୍କ ବାର୍ତ୍ତା

"ପବିତ୍ର ଇଦ୍-ଉଲ୍-ଫିତର୍ ଉତ୍ସବ ଉପଲକ୍ଷେ ଓଡ଼ିଶାବାସୀ ମୁସଲମାନ୍ ଭାଇ ଭଉଣୀମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଜଣାଉଛି ଏବଂ ସେମାନଙ୍କର ସୁଖ ଓ ସମୃଦ୍ଧି କାମନା କରୁଛି ।"

—ମୁଖ୍ୟମନ୍ତ୍ରୀ

'ସେଗୁଡ଼ିକରେ ଛୁଞ୍ଚି ଉପରେ ଘୋଡ଼ିବା ପାଇଁ ଖୋଳ ତିଆରି ହେବ।'

'ପୁରୁଣା ଆସନଗୁଡ଼ିକରେ ପୁଣି କ'ଣ ହେବ ?'

'ସେଗୁଡ଼ିକରେ ପାପୋଛ ତିଆରି ହେବ।'

'ପୁରୁଣା ପାପୋଛଗୁଡ଼ିକରେ କ'ଣ ହେବ ?'

'ମହାଶୟ ! ଲୋକେ ଯାହା ଦାନ କରିଥାଆନ୍ତି, ତାହା କେବେହେଲେ ନଷ୍ଟ ହେବାକୁ ଦିଆଯାଏ ନାହିଁ; ତେଣୁ ଆମେ ପୁରୁଣା ପାପୋଛଗୁଡ଼ିକୁ ଛିଣ୍ଡି କରି କାଟି ମାଟିରେ ମିଶାଇ ଦେଉ ଏବଂ ଘର କରିବାବେଳେ ସେହି ମାଟି ଆଣି କାନ୍ଥ ଦେଉ।'

'ଭଦନ୍ତ, ଆପଣମାନଙ୍କ କୌଣସି ଜିନିଷ ଦେଲେ କେବେହେଲେ କ'ଣ ତାହା ନଷ୍ଟ ହୁଏ ନାହିଁ ? ପୁରୁଣା ପାପୋଛଗୁଡ଼ିକ ପର୍ଯ୍ୟନ୍ତ ବି କ'ଣ ଆପଣଙ୍କର କାମରେ ଲାଗେ ?'

'ମହାରାଜ ! ଆମ୍ଭେମାନେ ଯାହା ଦାନ ପାଉଥାଉ ସେଥିରୁ କିଛି ହେଲେ ନଷ୍ଟ କରୁନାହୁଁ। ସବୁ ଜିନିଷ କିଛି କାମରେ ଲାଗିଯାଏ।'

ସ୍ଥବିରଙ୍କଠାରୁ ଏହି ଉତ୍ତର ଶୁଣି ରାଜା ଖୁବ୍ ଖୁସି ହୋଇଗଲେ ଏବଂ ତାଙ୍କ ପାଖରେ ଆଉ ଯେଉଁ ପାଞ୍ଚ ଶହ ଖଣ୍ଡ ଶାଢ଼ୀ ଥିଲା, ସେଗୁଡ଼ିକ ବି ଆଣି ତାଙ୍କୁ ଦାନ କଲେ। ଏହାପରେ ସ୍ଥବିରଙ୍କଠାରୁ ଦାନର ଅନୁମୋଦନ ବାଣୀ ଶୁଣି ତାଙ୍କୁ ମୁଣ୍ଡିଆଟିଏ ମାରିଲେ ଏବଂ ପରେ ପରେ ତାଙ୍କୁ ପ୍ରଦକ୍ଷିଣ କରି ସେ ଘରକୁ ଫେରି ଆସିଲେ।

ଆନନ୍ଦ ପ୍ରଥମେ ଯେଉଁ ପାଞ୍ଚ ଶହ ଖଣ୍ଡ ଶାଢ଼ୀ ପାଇଥିଲେ, ସେଗୁଡ଼ିକୁ ସେ ଯେଉଁ ଭିକ୍ଷୁମାନଙ୍କର ଚୀବର ଚିରି ଯାଇଛି, ସେମାନଙ୍କୁ ଦାନ କରିଥିଲେ। ତାଙ୍କ ସହିତ ଏକ ବିହାରରେ ରହୁଥିବା ଭିକ୍ଷୁଙ୍କ ସଂଖ୍ୟା ଥିଲା ପାଞ୍ଚ ଶହ। ସେମାନଙ୍କ ମଧ୍ୟରେ ଜଣେ ଥିଲା ବାଳକ ଭିକ୍ଷୁ। ସେ ବହୁବେଳେ ଆନନ୍ଦଙ୍କ ସେବାରେ ଲାଗିଥାଏ। ଏହି ବାଳକ ସେମାନଙ୍କୁ ପରିଷ୍କାର କରିଦିଏ, ତାଙ୍କ ପାଇଁ ଖାଇବା ପିଇବାର ଜିନିଷ ଆଣି ଦିଏ, ଦାନ୍ତକାଠି ଓ ମୁହଁ ଧୋଇବା ପାଇଁ ପାଣି ଆଣି ଦିଏ, ପଇଖାନା, ବାଥରୁମ ଓ ଶୋଇବା ଘରକୁ ସଫା ସୁତୁରା କରେ, ଏବଂ ତାଙ୍କର ହାତ, ପାଦ ଓ ପିଠିର ଆରାମ ଲାଗି ଯାହା ଯାହା ଦରକାର ତାହା ସବୁ କରେ। ଏ ପିଲାଟି ତାଙ୍କର ଖୁବ୍ ଉପକାର କରୁଛି ବୋଲି ଜାଣି ସ୍ଥବିର ବାକୀ ପାଞ୍ଚ ଶହ ଖଣ୍ଡଯାକ ଶାଢ଼ୀ ତାଙ୍କୁ ଦାନ କଲେ। ସେ ପୁଣି ଏ ସବୁ ଶାଢ଼ୀକୁ ନେଇ ନିଜର ସାଥୀ ଭିକ୍ଷୁମାନଙ୍କ ଭିତରେ ବାଣ୍ଟି ଦେଲା। ସେମାନେ ସେଗୁଡ଼ିକୁ କାଟି ଚୀବର କରି ରଙ୍ଗରେ ରଙ୍ଗେଇ ଦେଲେ ଏବଂ ସେଥିରେ ନିଜ ନିଜର ଚୀବର ତିଆରି କଲେ। ସେମାନେ ତାହା ପିନ୍ଧି ବୁଦ୍ଧଦେବଙ୍କ ପାଖକୁ ଗଲେ ଏବଂ ତାଙ୍କୁ ମୁଣ୍ଡିଆ ମାରି ତାଙ୍କ ପାଖରେ ବସି ପଡ଼ିଲେ।

ସେମାନେ ବୁଦ୍ଧଦେବଙ୍କୁ ପଚାରିଲେ, 'ଭଦନ୍ତ, ଯେଉଁ ଆର୍ଯ୍ୟ ଶ୍ରାବକମାନେ ସ୍ରୋତାପତ୍ତିଫଳ ପାଇଛନ୍ତି, ତାଙ୍କ ପକ୍ଷରେ ଦାନ ନେଉଥିବା ଲୋକର ମୁହଁକୁ ଚାହିଁ ଦାନରେ କମ୍ ବେଶୀ କରିବା ଉଚିତ କି ?'

ବୁଦ୍ଧଦେବ କହିଲେ, 'ନାଁ, ଯେଉଁ ଆର୍ଯ୍ୟ ଶ୍ରାବକ ପ୍ରକୃତରେ ସ୍ରୋତାପତ୍ତିଫଳ ପାଇଛନ୍ତି, ସେ କେବେହେଲେ ଦାନ ଦେଲାବେଳେ ପକ୍ଷପାତ ବିଚାର କରନ୍ତି ନାହିଁ।'(ଓ)

'ଭନ୍ତେ, ବୌଦ୍ଧଧର୍ମ ରୂପକ ଭଣ୍ଡାରର ରକ୍ଷଆଳୀ ହେଉଛନ୍ତି ସ୍ଥବିର ଆନନ୍ଦ। ଆମର ସେହି ଆଚାର୍ଯ୍ୟ ମହାଶୟ ଜଣେ ବାଳକ ଭିକ୍ଷୁଙ୍କୁ ପାଞ୍ଚ ଶହ ଶାଢ଼ୀ ଦାନ କରିଛନ୍ତି। ସେ ଶାଢ଼ୀଗୁଡ଼ିକର ପ୍ରତ୍ୟେକର ମୂଲ୍ୟ ହଜାରେ ଟଙ୍କା। ସେ ବାଳକ ଭିକ୍ଷୁ ଜଣକ କିନ୍ତୁ ସବୁ ଶାଢ଼ୀଗୁଡ଼ିକୁ ଆମମାନଙ୍କ ଭିତରେ ବାଣ୍ଟି ଦେଇଛନ୍ତି।'

'ଭିକ୍ଷୁମାନେ ! ତୁମ୍ଭେମାନେ କେବେହେଲେ ଭାବ ନାହିଁ ଯେ ଆନନ୍ଦ ସେ ଭିକ୍ଷୁଙ୍କ ମୁହଁକୁ ଚାହିଁ ଏମିତି ଦାନ କରିଛନ୍ତି ବୋଲି। ସେ ଆନନ୍ଦଙ୍କର ଖୁବ୍ ସେବା କରିଥାନ୍ତି। ତାଙ୍କ ଉପକାର କଥା ମନେ ପକାଇ ଏବଂ ତାଙ୍କ ଭଲ ଗୁଣରେ କିଣି ହୋଇଯାଇ ତାଙ୍କ ଦାନର ଉପଯୁକ୍ତ ପାତ୍ର ବୋଲି ଭାବି ଉପକାରୀର ଉପକାର ସୁଝିବା କଥା ବିଚାର କରି ଆନନ୍ଦ ତାଙ୍କୁ ଶାଢ଼ୀଗୁଡ଼ିକ ଦେଇଛନ୍ତି। କେବଳ କୃତଜ୍ଞତା ପ୍ରକାଶ କରିବାକୁ ଇଚ୍ଛା କରି ହିଁ ସେ ଏ ଦାନ ଦେଇଛନ୍ତି। ପୁରାକାଳରେ ପଣ୍ଡିତମାନେ ମଧ୍ୟ ଉପକାରୀର ଉପକାର ସୁଝିଥିଲେ।'

ଏହାପରେ ବୁଦ୍ଧଦେବ ସେହି ଅତୀତ କଥାଟିକୁ କହିବାକୁ ଆରମ୍ଭ କଲେ।

ପୁରାକାଳରେ ବାରାଣସୀରାଜ ବ୍ରହ୍ମଦତ୍ତଙ୍କ ସମୟରେ ବୋଧିସତ୍ତ୍ୱ ସିଂହ ଜନ୍ମ ନେଇ କୌଣସି ଗୋଟିଏ ପାହାଡ଼ର ଗୁହାରେ ରହୁଥିଲେ। ଦିନେ ସେ ଗୁହାରୁ ବାହାରି ପାହାଡ଼ ତଳକୁ ଚରିବାକୁ ଯାଉଥିଲେ। ଏହି ପାହାଡ଼ ତଳକୁ ବେଢ଼ି ଗୋଟିଏ ବଡ଼ ପୋଖରୀ ଥିଲା। ତା କୂଳର ଗୋଟିଏ ଟିପ ଜାଗା ଉପରେ ଥିବା କାଦୁଅ ଏକଦମ ଭାବରେ ଟାଣ ହୋଇ ପାଚିଥିଲା। ତା ଉପରେ କଅଁଳ ଛନଛନିଆ ଘାସ ହୋଇଥିଲା ଏବଂ ଠେକୁଆ, ହରିଣ ଓ ଅନ୍ୟାନ୍ୟ ଛୋଟ ଛୋଟ ଜନ୍ତୁମାନେ ସେଠି ବୁଲାବୁଲି କରି ଏହି ଘାସ ଖାଉଥିଲେ। ସେଦିନ ବି ସେଠି ଗୋଟିଏ ହରିଣ ଚରୁଥିଲା।

ସିଂହ ରୂପୀ ବୋଧିସତ୍ତ୍ୱ ଏହି ହରିଣକୁ ଧରିବା ପାଇଁ ପାହାଡ଼ ଉପରୁ ଖୁବ୍ ଜୋରରେ ଧାଇଁଲେ। ହରିଣଟା ମରଣ ଭୟରେ ବିକଳ ଚିତ୍କାର କରି କରି ସେଠୁ ପାଇଁ ପଳାଇଲା। ବୋଧିସତ୍ତ୍ୱ ଏତେ ଜୋରରେ ଧାଇଁଥିଲେ ଯେ ସେ ନିଜକୁ ଅଟକାଇ ନପାରି କାଦୁଅରେ ପଶିଗଲେ। କାଦୁଅ ଭିତରେ ତାଙ୍କ ଚାରୋଟି ଗୋଡ଼ ଏମିତି ଭାବରେ ପୋତି ହୋଇଗଲା ଯେ ତାଙ୍କ ପାଇଁ ହଲିବାକୁ ହେବାର ଶକ୍ତି ନଥିଲା। ତାଙ୍କର ଗୋଡ଼ ଚାରିଟା ଖୁଣ୍ଟ ଭଳି ଠିଆ ହୋଇ ରହିଲା ଏବଂ ସେ ସାତ ଦିନ ଧରି ସେମିତି ଖିଆ ଉପାସରେ ପଡ଼ି ରହିଲେ।

ଏହାପରେ ଦିନେ ବିଲୁଆଟିଏ ଖାଦ୍ୟ ଖୋଜି ବୁଲିବା ସମୟରେ ବୋଧିସତ୍ତ୍ୱଙ୍କୁ ଏହିପରି ଦେଖିଲା ଏବଂ ଭୟରେ ସେଠୁ ଧାଇଁ ପଳାଇବାକୁ ଲାଗିଲା।

ବୋଧିସତ୍ତ୍ୱ ତାକୁ ଦେଖି ପାଟି କରି ଡାକି କହିଲେ, 'ଆରେ ବିଲୁଆ ମାଇଁ, ତୁମେ ପଳାଅ ନାହିଁ। ମୁଁ ଏଠି କାଦୁଅରେ ପୋତି ହୋଇ ପଡ଼ିଛି। ମୋର ପ୍ରାଣ ରକ୍ଷା କରି ଯୋଉ ଉପାୟରେ ହେବ ତାହାର ଉପାୟ କର।'

ଏ କଥା ଶୁଣି ବିଲୁଆ ତାଙ୍କ ପାଖକୁ ଯାଇ କହିଲା, 'ମୁଁ ଆପଣଙ୍କୁ ଏଠୁ ଉଦ୍ଧାର କରିଦେବି ସତ, କିନ୍ତୁ ମୋର ଡର ହେଉଛି ଯେ ବାହାରେ ଆପଣ ଏଠୁ ଉଦ୍ଧାର ପାଇବା ମାତ୍ରେ ମୋତେ ଖାଇଦେବେ।' 'ତୁମେ କିଛି ଭୟ କରନାହିଁ, ମୁଁ ତୁମକୁ ଖାଇବି ନାହିଁ। ଖାଇବା କଥା ଦୂରରେ ଥାଉ, ମୁଁ ବରଂ ତୁମର ଖୁବ୍ ଉପକାର କରିବି। ଯେ କୌଣସି ଉପାୟରେ ମତେ ବଞ୍ଚାଅ।'

ସିଂହ ପାଖରୁ ଏହି ପ୍ରତିଶ୍ରୁତି ପାଇ ବିଲୁଆ ତା' ପାଦ ଚାରିକଡ଼େ ଯେଉଁ କାଦୁଅ ଥିଲା ତାକୁ ବାହାର କରିଦେଲା ଏବଂ ପ୍ରତିଟି ପାଦ ଯେତେ ଦୂର ପର୍ଯ୍ୟନ୍ତ ପୋତିହୋଇ ପଡ଼ିଥିଲା, ସେଇଠାରୁ ପାଣି ପର୍ଯ୍ୟନ୍ତ ନାଳଟିଏ ଖୋଳିଦେଲା। ସେହି ନାଳ ଦେଇ ପାଣି ଅଣାଇ କାଦୁଅକୁ ନରମ କରିଦେଲା।

ତାପରେ ବୋଧିସତ୍ତ୍ୱଙ୍କ ପେଟ ଚେଲୁ ଯାଇ ତାଙ୍କୁ ନିଜ ମୁଣ୍ଡରେ ମୁଣ୍ଡିଆ ମାରି ଖୁବ୍ ବଡ଼ ପାଟିରେ ଡାକି କହିଲା, 'ପ୍ରଭୋ, ଏ ଥରକ ଉଠିବାକୁ ଚେଷ୍ଟା କରନ୍ତୁ ତ ।'

ବୋଧିସତ୍ତ୍ୱ ତାଙ୍କର ପାଇଁ ପର୍ଯ୍ୟନ୍ତ ଚେଷ୍ଟା କରି କାଦୁଅରୁ ଉଠି ପଡ଼ିଲେ ଏବଂ ଏକା ଡିଆଁରେ ଯାଇ ଭୂଇଁ ଉପରେ ପଡ଼ିଲେ । ସେଠି ମୁହୂର୍ତ୍ତେ ମାତ୍ର ବିଶ୍ରାମ ନେବା ପରେ ସେ ପୋଖରୀକୁ ଆସି ଦେହରୁ କାଦୁଅ ଧୋଇଧାଇ ସଫା କରିଦେଲେ ଏବଂ ଗାଧୋଇ ସାରିବା ପରେ ଗୋଟିଏ ମଇଁଷି ମାରିଲେ । ତା'ପରେ ତାଙ୍କର ମୁନିଆ ଦାନ୍ତରେ ମଇଁଷିର କିଛି ମାଂସ ଛିଣ୍ଡାଇ ତାହା ନେଇ ବିଲୁଆ ଆଗରେ ଥୋଇଲେ ଏବଂ ତାକୁ କହିଲେ, 'ସାଙ୍ଗ, ତୁମେ ଯାକୁ ଖାଅ ।'

ବିଲୁଆର ଖାଇବା ଶେଷ ନହେବା ପର୍ଯ୍ୟନ୍ତ ସେ ନିଜେ ଖାଇଲେ ନାହିଁ । ଦୁହିଁଙ୍କର ଖାଇବା ଶେଷ ହେବା ପରେ ବିଲୁଆ ଖଣ୍ଡେ ମାଂସ ଗୋଟେଇ ଧରିଲା ।

ବୋଧିସତ୍ତ୍ୱ ପଚାରିଲେ, 'ସାଙ୍ଗ, ଏ ମାଂସ ନେଇ କ'ଣ କରିବ ?'

'ମୋର ଗୋଟିଏ ସ୍ତ୍ରୀ ଅଛି, ମୁଁ ତାକୁ ନେଇ ଦେବି ।'

'ଭଲ କଥା, ତାକୁ ନେଇ ଦିଅ ।'

ଏହାପରେ ବୋଧିସତ୍ତ୍ୱ ନିଜେ ବି ନିଜ ସ୍ତ୍ରୀ ପାଇଁ ଖଣ୍ଡେ ମାଂସ ଧରିଲେ ଏବଂ କହିଲେ, 'ସାଙ୍ଗ, ଚାଲ ଆମେ ପାହାଡ଼ ଉପରେ କିଛି ସମୟ ବସିବା ଏବଂ ତାପରେ ଦୁହେଁଯାକ ମିଶି ଭାଉଜଙ୍କ ପାଖକୁ ଯିବା ।'

ଏହା କହି ବୋଧିସତ୍ତ୍ୱ ବିଲୁଆକୁ ସାଙ୍ଗରେ ଧରି ଚାଲିଲେ ଏବଂ କିଛିକ୍ଷଣ ପରେ ନିଜେ ବିଲୁଆର ସ୍ତ୍ରୀ ପାଖକୁ ଯାଇ ତାକୁ ମାଂସ ଖୁଆଇଲେ ।

ସେ ବିଲୁଆ ଓ ତାର ସ୍ତ୍ରୀକୁ ଆଶ୍ୱାସନା ଦେଇ କହିଲେ, 'ଆଜିଠାରୁ ମୁଁ ତୁମ ଦୁହିଁଙ୍କ ଦେଖାଶୁଣା କରିବାର ଭାର ନେବି ।'

ତା'ପରେ ସେ ନିଜ ଖୋଲ ପାଖରେ ଥିବା ଆଉ ଗୋଟିଏ ଖୋଲରେ ସେ ଦୁହିଁଙ୍କ ରହିବା ପାଇଁ ବ୍ୟବସ୍ଥା କରିଦେଲେ ।

ସେହି ଦିନଠାରୁ ବୋଧିସତ୍ତ୍ୱ ଶିକାର କରି ଗଲାବେଳେ ବିଲୁଆକୁ ସାଙ୍ଗରେ ନେଇ ଯାଆନ୍ତି । ମାଈ ସିଂହ ଓ ମାଈ ବିଲୁଆ ଖୋଲରେ ଥାଆନ୍ତି । ସେମାନେ ନାନା ପ୍ରକାର ଜନ୍ତୁ ମାରନ୍ତି ଏବଂ ଖାଇବା ପରେ ବି ନିଜ ନିଜ ସ୍ତ୍ରୀମାନଙ୍କ ଲାଗି ମାଂସ ଧରି ଗୁହାକୁ ଫେରନ୍ତି । ଏହିପରି ଭାବରେ କିଛି ଦିନ କଟିଗଲା । ମାଈ ସିଂହ ଓ ମାଈ ବିଲୁଆ ଉଭୟଙ୍କର ଦୁଇ ଦୁଇଟି ପୁଅ ହେଲେ ଏବଂ ସେମାନେ ସମସ୍ତେ ଏକ ସଙ୍ଗରେ ବନ୍ଧୁ ଭାବରେ ଚଳିବାକୁ ଲାଗିଲେ । କିନ୍ତୁ ହଠାତ୍ ଦିନେ ମାଈ ସିଂହଟିର ମନରେ ଗୋଟିଏ ନୂଆ ଭାବନା ଆସିଲା ।

ସେ ଭାବିଲା, 'ସିଂହ ବିଲୁଆ ଦୁଇଟିକୁ ଓ ସେମାନଙ୍କ ପିଲା ଦୁଇଟିକୁ ଖୁବ୍ ଭଲ ପାଉଛି । ନିଶ୍ଚୟ ଏ ମାଈ ବିଲୁଆର ପ୍ରେମରେ ପଡ଼ିଯାଇଛି । ତା' ନହୋଇଥିଲେ ଏତେ ସ୍ନେହ କାହିଁକି ଦେଖାଉଥାଆନ୍ତା ? ଅତଏବ, ଏ ଦୁହିଁଙ୍କୁ କଷ୍ଟ ଦେଇ ଓ ଭୟ ଦେଖାଇ ଏ ଖୋଲରୁ ସେମାନଙ୍କୁ ତଡ଼ି ଦେବାକୁ ହେବ ।'

ମନେ ମନେ ଏହିଭଳି ଠିକ୍ କରି ଦିନେ ବୋଧିସତ୍ତ୍ୱ ବିଲୁଆକୁ ଧରି ଶିକାର କରି ଯାଇଥିବା ସମୟରେ ମାଈ ସିଂହଟି ମାଈ ବିଲୁଆକୁ ଭୟ ଦେଖାଇବାକୁ ଆରମ୍ଭ କରିଦେଲା ।

ସେ କହିଲା, 'ତୁମେମାନେ କାହିଁକି ଏଠି ରହିଛ ? ଏଠୁ ପଳାଇ ଯାଉନାହଁ କାହିଁକି ?'

ସିଂହ ଛୁଆ ଦୁଇଟି ମଧ୍ୟ ବିଲୁଆ ଛୁଆ ଦୁଇଟିଙ୍କୁ କଷ୍ଟ ଦେବାକୁ ଲାଗିଗଲେ । ମାଈ ବିଲୁଆଟି ଡରିଯାଇ ଅଣ୍ଡିରା ବିଲୁଆକୁ ଏ କଥା ଜଣାଇଲା ।

ସେ କହିଲା, 'ବୋଧହୁଏ ସିଂହର କହିବା ଅନୁସାରେ ମାଈ ସିଂହଟି ଆମକୁ ଏଭଳି ଖରାପ ବ୍ୟବହାର କରୁଛି । ଆମେ ତ ଏଠି ବହୁତ ଦିନ ଧରି ରହିଲେଣି । ମୁଁ ଭାବୁଛି, ଏଣିକି ବୋଧହୁଏ ଏମାନେ ଆମକୁ ମାରିଦେବେ । ଚାଲ, ଆମେ ଆମର ପୂର୍ବର ରହିବା ଜାଗାକୁ ଫେରିଯିବା ।'

ଏହା ଶୁଣି ବିଲୁଆ ସିଂହ ପାଖକୁ ଯାଇ କହିଲା, 'ପ୍ରଭୋ, ଆମେ ବହୁତ ଦିନ ଧରି ଆପଣଙ୍କ ଆଶ୍ରୟରେ ରହିଲୁଣି । ଯେଉଁମାନେ ବହୁତ ଦିନ ଧରି ଆଶ୍ରୟ ନିଅନ୍ତି, ସେମାନେ ଶେଷକୁ ଗଳଗ୍ରହ ହୋଇଥାନ୍ତି । ଯେତେବେଳେ ଆମେ ଦୁହେଁ ଯେତେବେଳେ ଶିକାର କରିବାକୁ ଯାଉଥିଲେ, ସେତେବେଳେ ତୁମର ସ୍ତ୍ରୀ ମୋ ସ୍ତ୍ରୀକୁ କହିଥିଲେ, 'ତୁମେ ଏଠି କାହିଁକି ଅଛ ? ଏଠୁ ପଳାଇ ଯାଉନାହଁ କାହିଁକି ?' ଆପଣଙ୍କ ପୁଅମାନେ ମଧ୍ୟ କହିଥିଲେ, 'ତୁମେ ଏଠି କାହିଁକି ଅଛ ? ଏଠୁ ପଳାଇ ଯାଉନାହଁ କାହିଁକି ?' ଆପଣଙ୍କ ପୁଅମାନେ ମଧ୍ୟ ମୋର ପୁଅମାନଙ୍କୁ ଏହିଭଳି ଭାବରେ ଗାଳିଗୁଲଜ କରିଛନ୍ତି । କାହାର ରହିବାଟା ଯଦି ଭଲ ନଲାଗିଲା ତେବେ ତାକୁ ଖୁସିରେ ଚାଲିଯିବା ପାଇଁ କହିଦେବା ଉଚିତ । ତାକୁ କଷ୍ଟ ଦେବା ଦରକାର କ'ଣ ?

ଏହା କହି ବିଲୁଆ ପ୍ରଥମ ଗାଥାଟି ବୋଲିଲା :

ବଳବାନ୍ ବ୍ୟକ୍ତି ଇଚ୍ଛାମତ କାମ କରିପାଏ,
ସେ ଇଚ୍ଛାମତ ଉତ୍ପୀଡ଼ନ କରିଥାଏ ଆଶ୍ରିତ ଜନକୁ ।
ସ୍ତ୍ରୀ ତୁମର ଯେଉଁ ବିକଟ ଗର୍ଜନ କରୁଛନ୍ତି,
ସେଥିରେ ଆମେ ହୋଇ ପଡ଼ିଛୁ ଭୀତତ୍ରସ୍ତ ।
ଏବେ ପୂର୍ବର ବିଶ୍ୱାସ ଆଉ ଆମର ନାହିଁ ।

ବିଲୁଆର କଥା ଶୁଣି ବୋଧିସତ୍ତ୍ୱ ମାଈ ସିଂହକୁ କହିଲେ, 'ଭଦ୍ରେ ! ମୁଁ ସେଦିନ ଶିକାର କରିବାକୁ ଯାଇ ସାତ ଦିନ ପରେ ଏହି ବିଲୁଆ ଓ ତାର ସ୍ତ୍ରୀ ସହିତ ଖୋଲକୁ ଫେରି ଆସିବା କଥା ତୁମର ମନେ ପଡୁଛି ତ ?

ମାଈ ସିଂହଟି କହିଲା, 'ହଁ, ମୋର ସେ କଥା ମନେ ଅଛି ।' 'ମୁଁ ସାତ ଦିନ କାଳ ଯେଉଁ ଫେରି ପାରିଲି ନାହିଁ, ତାର କାରଣ କ'ଣ ତୁମେ ଜାଣିଛ ତ ?' 'ନାଁ, ମୁଁ ସେ କଥା ଜାଣି ନାହିଁ ।'

'ଭଦ୍ରେ, ମୁଁ ଗୋଟିଏ ମୃଗ ଧରିବାକୁ ଯାଇ ଅଣହୁସିଆର ହୋଇ କାଦୁଅରେ ପୋତି ହୋଇ ପଡ଼ିଥିଲି । ସେହି କାଦୁଅରୁ ବାହାରି ନପାରି ସାତ ଦିନକାଳ ଭୋକ ଉପାସରେ ପଡ଼ି ରହିଥିଲି । ପରେ ଏହି ବିଲୁଆର ଦୟାରୁ ମୁଁ ମୁକୁଳି ଆସି ପାରିଲି । ମୋର ପରମ ବନ୍ଧୁ ଏହି ବିଲୁଆ ହିଁ ମୋତେ ନୂଆ ଜୀବନ ଦେଇଛି । ଦୁର୍ବଳ ହେଉ କିମ୍ବା ବଳବାନ୍ ହେଉ ଯେ ବନ୍ଧୁର କର୍ତ୍ତବ୍ୟ କରିଥାଏ, ସେ ହେଉଛି ପ୍ରକୃତ ବନ୍ଧୁ । ମୁଁ ତୁମକୁ ସାବଧାନ କରି ଦେଉଛି, ଆଜିଠାରୁ ମୋର ସାଙ୍ଗ ତାର ସ୍ତ୍ରୀ ଓ ପିଲାଛିଆ କାହାରି ପ୍ରତି ଏଭଳି ଅପମାନିଆ କଥା କହିବ ନାହିଁ ।'

ନିଜ ସ୍ତ୍ରୀକୁ ଏଭଳି ଭାବରେ ତାଗିଦ୍ କରି ବୋଧିସତ୍ତ୍ୱ ନିମ୍ନଲିଖିତ ଗାଥାଟି ବୋଲିଲେ :

ଯେଉଁ ମିତ୍ର ନିରନ୍ତର ମିତ୍ର ଧର୍ମ ପାଳିଥାଏ,
ସେ ସବଳ ହୋଇଥାଉ ବା ଦୁର୍ବଳ ହୋଇଥାଉ,
ସେ ହେଉଛି ମୋର ଜ୍ଞାତି ବନ୍ଧୁ,
ସେ ହେଉଛି ମୋର ରକ୍ତ ଓ ମାଂସ,
ସେ ହେଉଛି ମୋର ବନ୍ଧୁ ଓ ସହୋଦର,
ତୁମେ ଜାଣିଥାଅ ଆଗୋ ସଖି,
ଆଗୋ ଦୀର୍ଘଦର୍ଶିନି,
ଯେଉଁ ଶୃଗାଳ ହେଉଛି ମୋର ପ୍ରାଣଦାତା,
ତୁମର ରୁକ୍ଷ ବଚନରେ ତାକୁ ଆଉ କେବେ କଷ୍ଟ ଦେବ ନାହିଁ।

ସିଂହର କଥା ଶୁଣି ମାଈ ସିଂହଟି ମାଈ ବିଲୁଆ ପାଖକୁ ଯାଇ ତା' ପାଖରୁ କ୍ଷମା ମାଗିନେଲା ଏବଂ ସେହି ଦିନଠାରୁ ତା' ସହିତ ଓ ତାର ପୁଅମାନଙ୍କ ସହିତ ସେ ଭଲ ସମ୍ପର୍କ ରଖି ଚଳିବାକୁ ଲାଗିଲା। ତାର ପୁଅ ଦିଓଟି ମଧ୍ୟ ବିଲୁଆ ପୁଅ ଦିଓଟିଙ୍କ ସାଙ୍ଗରେ ଖେଳାଖେଳି କରିବାକୁ ଲାଗିଲେ। ବାପା ମାଆଙ୍କର ପରି ପିଲାମାନେ ମଧ୍ୟ ନିଜ ନିଜ ମଧ୍ୟରେ ଏହି ବନ୍ଧୁ ଭାବକୁ ଅତୁଟ ରଖିଥିଲେ। ଶୁଣାଯାଏ ଯେ ଏହି ଦୁଇ ପରିବାର ମଧ୍ୟରେ ସାତ ପୁରୁଷ ଧରି ବନ୍ଧୁଭାବ ଅତୁଟ ରହି ପାରିଥିଲା।

କଥା ଶେଷରେ ବୁଦ୍ଧଦେବ ଚାରି ସତ୍ୟ ବିଷୟ ବୁଝାଇ କହିଲେ। ତାହା ଶୁଣି କେହି ପ୍ରଥମ ମାର୍ଗର, କେହି ଦ୍ୱିତୀୟ ମାର୍ଗର, କେହି ତୃତୀୟ ମାର୍ଗର, କେହି ତୃତୀୟ ମାର୍ଗର ବା ଆଉ କେହି ଚତୁର୍ଥ ମାର୍ଗର ଫଳ ପାଇଲେ। ସମବଧାନ :

ସେତେବେଳେ ଆନନ୍ଦ ଥିଲା ସେହି ବିଲୁଆ ଏବଂ ମୁଁ ଥିଲି ସେହି ସିଂହ।।

ଟିପ୍ପଣୀ—

(୧) ଏହି ତିନି ଖଣ୍ଡି ସିଲା ହୋଇଥିବା କନାକୁ ବୌଦ୍ଧ ଶାସ୍ତ୍ରରେ 'ତିଚୀବର' ବୋଲି କୁହାଯାଏ।

(୨) ବୌଦ୍ଧ ଭିକ୍ଷୁଙ୍କୁ ଥେର ବୋଲି ମଧ୍ୟ କୁହାଯାଇଥାଏ।

(୩) ଉତ୍ତରାସଙ୍ଗ ହେଉଛି ଏକ ପରସ୍ତ। ଏହା କାନ୍ଧରୁ ଝୁଲି ପାଦ ଦେହକୁ ଘୋଡ଼ାଇ ରହିଥାଏ। ଏହା ଉତ୍ତରୀୟର କାମ କରିଥାଏ। ଭିକ୍ଷୁମାନେ ବିହାରର ଭିତରେ ଓ ବାହାରେ ସବୁଠାରେ ଏହାକୁ ବ୍ୟବହାର କରିଥାନ୍ତି।

(୪) ଭିକ୍ଷୁମାନେ ଲୁଙ୍ଗି ଭଳି ଯେଉଁ ଲୁଗାଟିକୁ ପିନ୍ଧନ୍ତି ତାକୁ ଅନ୍ତର୍ବାସକ ବୋଲି କୁହାଯାଇଥାଏ।

(୫) ବୁଦ୍ଧଦେବଙ୍କ ଉପଦେଶର ସ୍ରୋତରେ ଭାସି ଯେ ନିର୍ବାଣ ରୂପକ ପରମ ସୁଖ ଲାଭ କରିଥାନ୍ତି, ତାକୁ କୁହାଯାଏ 'ସ୍ରୋତାପତ୍ତିଫଳ' ପାଇଥିବା ବ୍ୟକ୍ତି। ବୁଦ୍ଧଦେବଙ୍କର ଉପଦେଶ ବାଣୀକୁ ମନଯୋଗ ସହକାରେ ଶୁଣି ତଦନୁଯାୟୀ ଯେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିଥାନ୍ତି, ତାଙ୍କୁ ଆର୍ଯ୍ୟଶ୍ରାବକ କୁହାଯାଏ। କେତେକ ପ୍ରଧାନ ପ୍ରଧାନ ଭିକ୍ଷୁ, ଭିକ୍ଷୁଣୀ, ଉପାସକ, ଉପାସିକା ଯଥାକ୍ରମେ ଆର୍ଯ୍ୟଶ୍ରାବକ ଓ ଆର୍ଯ୍ୟଶ୍ରାବିକା ନାମରେ ପରିଚିତ।

(୬) ବୌଦ୍ଧମାନଙ୍କର ନିର୍ବାଣ ଲାଭ ପାଇଁ ଚାରିଟି ମାର୍ଗ ବା ଉପାୟର ନିର୍ଦ୍ଦେଶ ଦିଆଯାଇଅଛି। ସେଗୁଡ଼ିକ ହେଲା — ସ୍ରୋତାପତ୍ତି ମାର୍ଗ, ସକୃଦାଗାମି ମାର୍ଗ, ଅନାଗାମି ମାର୍ଗ, ଅର୍ହତ୍ତ୍ୱ ମାର୍ଗ। ବୁଦ୍ଧ ବାଣୀର ସ୍ରୋତରେ ଭାସି ଭାସି ଯେ ପରିଶେଷରେ ନିର୍ବାଣ ସମୁଦ୍ରରେ ପହଞ୍ଚନ୍ତି ସେହି ବ୍ୟକ୍ତିଙ୍କୁ ସ୍ରୋତାପତ୍ତି ମାର୍ଗରେ ଗତି କରୁଛନ୍ତି ବୋଲି କୁହାଯାଏ। ସ୍ରୋତାପତ୍ତି ମାର୍ଗରେ ଥିବା ବ୍ୟକ୍ତି ସଂସାରରେ ସାତଥର ଜନ୍ମ ଗ୍ରହଣ କରି ସାରିବା ପରେ କର୍ମ ବନ୍ଧନରୁ ମୁକ୍ତ ହୋଇ ନିର୍ବାଣ ଲାଭ କରିଥାଆନ୍ତି। ସକୃଦାଗାମି ମାର୍ଗରେ ଥିବା ବ୍ୟକ୍ତି ଥରେ ମାତ୍ର ଜନ୍ମ ଗ୍ରହଣ କରିଥାଆନ୍ତି। ଅନାଗାମି ମାର୍ଗରେ ଥିବା ବ୍ୟକ୍ତି ଆଉ ଏହି କାମନା ବାସନା ଲିପ୍ତ ସଂସାରରେ ଜନ୍ମ ଗ୍ରହଣ କରନ୍ତି ନାହିଁ। ମୃତ୍ୟୁ ପରେ ସେ ବ୍ରହ୍ମ ପଦ ପାଆନ୍ତି ଏବଂ ସେଇଠାରୁ ନିର୍ବାଣ ଲାଭ କରନ୍ତି। ଅର୍ହତ୍ତ୍ୱ ମାର୍ଗ ହେଉଛି ସର୍ବଶ୍ରେଷ୍ଠ। ଅର୍ହତ୍ତ୍ୱ ମାର୍ଗୀମାନଙ୍କର ସକଳ କାମନା ନିବୃତ୍ତ ହୋଇଥାଏ ଏବଂ ସେମାନେ ଦେହ ତ୍ୟାଗ ସଙ୍ଗେ ସଙ୍ଗେ ନିର୍ବାଣ ଲାଭ କରିଥାନ୍ତି।

(ମୂଳ ପାଲି ଭାଷାରୁ ଅନୂଦିତ)

ସମ୍ପାଦକ, ଓଡ଼ିଶା ସାହିତ୍ୟ ଏକାଡେମୀ,
ଭୁବନେଶ୍ୱର-୧୪।

## ଆମ୍ବେଦ୍କରଙ୍କ ବିବୃତି

"୧୯୫୦ ମସିହା ଜାନୁଆରୀ ୨୬ ତାରିଖ ଦିନ ଆମ୍ଭେମାନେ ରାଜନୈତିକ ସାମ୍ୟ ଏବଂ ସାମାଜିକ ଓ ଅର୍ଥନୈତିକ ବୈଷମ୍ୟ ମଧ୍ୟରେ ଦ୍ୱନ୍ଦ୍ୱପୂର୍ଣ୍ଣ ଜୀବନ ଯାପନ କରିବାକୁ ଯାଉଛୁ। ଆମ୍ଭେମାନେ ଗୋଟିଏ ଭୋଟ ଗୋଟିଏ ମୂଲ୍ୟକୁ ସ୍ୱୀକୃତି ଦେଉଥିବା ସମୟରେ "ଏକ ବ୍ୟକ୍ତି ଏକ ମ ନୀତିକୁ ଉପେକ୍ଷା କରୁଛୁ। ଆମର ଗଣତନ୍ତ୍ରକୁ ବିପଦାପନ୍ନ କରୁଥିବା ଏଭଳି ଦ୍ୱନ୍ଦ୍ୱପୂର୍ଣ୍ଣ ପରିସ୍ଥିତିର ଶୀଘ୍ର ଶେଷ ହେବା ଉଚିତ, ନଚେତ୍ ଏହି ବୈ ଦ୍ୱାରା ନିର୍ଯ୍ୟାତିତ ହେଉଥିବା ଲୋକମାନେ ଆମର ବହୁ କଷ୍ଟଲବ୍ଧ ରାଜନୈତିକ ଗଣତନ୍ତ୍ରକୁ ଦିନେ ହେଲେ ଧ୍ୱଂସ କରିଦେବେ।

(ଡକ୍ଟର୍ ଆମ୍ବେଦ୍କରଙ୍କ ବକ୍ତୃତା : ତା୨୫/୧୧/୧୯୪୯)

• ମନୋରଞ୍ଜନ



# କଣ୍ଢେଇ ନାଚର ବିକାଶ ଧାରା



ରମେଶ ପତି

ସାଧାରଣତଃ ଲୋକଙ୍କର ଧାରଣା ଯେ, କଣ୍ଢେଇ ନାଚ କେବଳ ଶିଶୁମାନଙ୍କ ମନୋରଞ୍ଜନ ପାଇଁ ଉଦ୍ଦିଷ୍ଟ । ଏ କଥା ସତ୍ୟ ଯେ ଶିଶୁମାନଙ୍କୁ କଣ୍ଢେଇ ମାଧ୍ୟମରେ ଆକୃଷ୍ଟ କରାଯାଏ; ତେବେ ଏହାର ଉଦ୍ଦେଶ୍ୟ କେବଳ ସେତିକିରେ ସୀମିତ ନୁହେଁ । ଏହା ପ୍ରୌଢ଼ମାନଙ୍କ ପାଇଁ ମଧ୍ୟ ଉପଯୋଗୀ ଓ ଆକର୍ଷଣୀୟ ହୋଇଥାଏ । ମାନବୀୟ ନାଟକ ଭଳି ଏହା ବ୍ୟୟବହୁଳ ନୁହେଁ; କିନ୍ତୁ ଅତ୍ୟନ୍ତ ପ୍ରଭାବଶାଳୀ । କାରଣ ମାନବୀୟ ନାଟକର ସଫଳତା ତହିଁରେ ଅଂଶ ଗ୍ରହଣ କରିଥିବା ସମସ୍ତ କଳାକାରମାନଙ୍କ ସଫଳ ରୂପାୟନ ଓ ସାଜସଜ୍ଜା ଉପରେ ନିର୍ଭର କରିଥାଏ; କିନ୍ତୁ କଣ୍ଢେଇ ନାଚ କେବଳ ସଞ୍ଚାଳକର କର୍ମକୁଶଳତା ଉପରେ ନିର୍ଭର କରେ । ଊନବିଂଶ ଶତାବ୍ଦୀରେ ସମଗ୍ର ବିଶ୍ୱରେ ମାନବୀୟ ନାଟକ ତାର ବିଭିନ୍ନ କର୍ମକୁଶଳତା ମାଧ୍ୟମରେ ସଫଳତାର ସହିତ ରୂପାୟନ ହୋଇ ପାରିଥିଲେ ମଧ୍ୟ ପ୍ରସିଦ୍ଧ ଫରାସୀ ଔପନ୍ୟାସିକ Georgsand କଣ୍ଢେଇ ନାଚକୁ ଏଭଳି ଭାବେ ସଂଯୋଜିତ କରି ପାରିଥିଲେ ଯାହାକି ତତ୍କାଳୀନ ମାନବୀୟ ନାଟକଠାରୁ ମଧ୍ୟ ଉତ୍କର୍ଷତା ଲାଭ କରି ପାରିଥିଲା । ଆଜି ମଧ୍ୟ କଣ୍ଢେଇ ନାଚ ନିଜର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିବା ଦିଗରେ ମାନବୀୟ ନାଟକକୁ ଆହ୍ୱାନ ଦେବାରେ ସକ୍ଷମ ହୋଇ ପାରିଛି । ଏହି ଉତ୍କର୍ଷତାର ପଛରେ ରହିଛି କଣ୍ଢେଇର ସମ୍ମୋହନକ ଶକ୍ତି ।

କଣ୍ଢେଇ ନିଶ୍ଚିତ ରୂପେ ନିଷ୍ପ୍ରାଣ ବସ୍ତୁରେ ଗଠିତ ଏକ ନିଷ୍ପ୍ରାଣ ପ୍ରତିମା । ତଥାପି ଏହାର ଏକ ନିଜସ୍ୱ ଜଗତ ରହିଛି – ଯେଉଁଠି କି କଣ୍ଢେଇ ନିଜସ୍ୱ ଶୈଳୀରେ ଆତ୍ମପ୍ରକାଶ କରିଥାଏ । ଏହାର ପ୍ରାଣତତ୍ତ୍ୱ ସମ୍ପୂର୍ଣ୍ଣ ରୂପେ ବ୍ୟଞ୍ଜକ ହେଲେ ମଧ୍ୟ ମାନବୀୟ ରଙ୍ଗମଞ୍ଚର ବ୍ୟଙ୍ଗ ଅପେକ୍ଷା ଅଧିକ ଚମତ୍କାର ଓ ରହସ୍ୟାତ୍ମକ । କଣ୍ଢେଇ ନାଚ ବାସ୍ତବତାଠାରୁ ପଳାୟନ, ଯାହାକି କାଳ୍ପନିକ ଦୁନିଆଁ ନିମିତ୍ତ ଅତ୍ୟନ୍ତ ପ୍ରଯୁଜ୍ୟ । ବାସ୍ତବରେ ଦର୍ଶକ କଣ୍ଢେଇମାନଙ୍କ ବାସ୍ତବିକତାହୀନ ହେବାର କଳ୍ପନାକୁ ସ୍ୱୀକାର କରିଥାଏ । କଣ୍ଢେଇଗୁଡ଼ିକର ବ୍ୟଙ୍ଗ ଦର୍ଶକମାନଙ୍କ ମନୋବୈଜ୍ଞାନିକ ଧାରାକୁ ନିମିତ୍ତ ଏଭଳି ଏକ ସ୍ଥିତିକୁ ନେଇଯାଏ, ଯେଉଁଠି ଦର୍ଶକ କଣ୍ଢେଇମାନଙ୍କ ଦ୍ୱାରା ପ୍ରଦର୍ଶିତ ଦୃଶ୍ୟ ବ୍ୟତୀତ ଅନ୍ୟ କିଛି ଚିନ୍ତା କରିବାକୁ ସୁଯୋଗ ପାଇପାରେ ନାହିଁ ।

ଏହି ରହସ୍ୟମୟ ଓ ବ୍ୟଞ୍ଜାତ୍ମକ କଣ୍ଢେଇ ବଡ଼ ସହଜ ଭାବରେ ଦର୍ଶକମାନଙ୍କ ମନ ଉପରେ ନିଜର ବାର୍ତ୍ତା ପହଞ୍ଚାଇ ଦେଇଥାଏ । ଏ ସବୁ ଖୁବ୍ କମ୍ ପରିଶ୍ରମରେ ହୋଇଥାଏ । କଣ୍ଢେଇ ତିଆରିଠାରୁ ଆରମ୍ଭ କରି ଖେଳ ପର୍ଯ୍ୟନ୍ତ ଚାରି ପାଞ୍ଚ ଜଣ ବ୍ୟକ୍ତି ଅତି ସହଜରେ କରିପାରିଥାନ୍ତି । କଣ୍ଢେଇ ସଞ୍ଚାଳକ ଆବଶ୍ୟକ ଅନୁଯାୟୀ ସହଜ ଭାବରେ ସ୍ଥାନୀୟ କଥାଗୁଡ଼ିକୁ ନିଜ ସମ୍ବାଦରେ ଯୋଡ଼ିପାରେ । ଏହି କାରଣରୁ ଶିକ୍ଷା ଏବଂ ପ୍ରଚାର ନିମିତ୍ତ କଣ୍ଢେଇଗୁଡ଼ିକ ଅନ୍ୟ ମାଧ୍ୟମ ଅପେକ୍ଷା ଅଧିକ ପ୍ରଭାବଶାଳୀ ।

## ଉଦ୍ଭବ ଓ ବିକାଶ ଧାରା

କଣ୍ଢେଇ ନାଚର ପରମ୍ପରା କେଉଁ କାଳରୁ ଆରମ୍ଭ ହୋଇଛି କହିବା ଅସମ୍ଭବ । ପ୍ରାଚୀନ କାଳରୁ ଯେତେବେଳେ ମଣିଷ ଗୁମ୍ଫା ଭିତରେ ରହି ଜୀବନ ବିତାଉ ଥିଲା, ଶୀତ ଦାଉରୁ ରକ୍ଷା ପାଇବା ପାଇଁ ନିଆଁ ଜାଳିବା ଦ୍ୱାରା ତାର ଛାୟା ଗୁମ୍ଫାର କାନ୍ଥ ଦେହରେ ପଡ଼ିଲା । ଏହି ଛାୟାକୁ ଦେଖି ସେ ତା ଅଙ୍ଗର ବିଭିନ୍ନ ଭଙ୍ଗୀ କରି ଆନନ୍ଦ ଅନୁଭବ କଲା । ସମ୍ଭବତଃ ସେହି ଦିନଠାରୁ ଚିତ୍ର ଓ କ୍ରମେ କଣ୍ଢେଇର ବିକାଶ ହୋଇଥିବ । ସିନ୍ଧୁ ଘାଟିରୁ ଆବିଷ୍କୃତ ଏକ ଖଣ୍ଡର ଟେରାକୋଟା (ବର୍ତ୍ତମାନ ଏହାର ପ୍ରତିକୃତି ଦିଲ୍ଲୀସ୍ଥିତ ଜାତୀୟ ସଂଗ୍ରହଶାଳୟରେ ସଂରକ୍ଷିତ ହୋଇଛି, ଏହାର ପ୍ରତିଟି ଅବୟବ ସଞ୍ଚାଳନ ପାଇଁ ସ୍ୱତନ୍ତ୍ର ଭାବେ ଗଢିତ ହୋଇଛି) ଦେଖିଲେ ମନେ ହୁଏ ଯେ, ସେ ସମୟରେ ଏଭଳି କଣ୍ଢେଇର ବିକାଶ ସମସ୍ତ ପ୍ରକାରର କୌଶଳ ସିନ୍ଧୁବାସୀ ଜାଣି ସାରିଥିଲେ । ତେଣୁ ଜଣେ ସମୀକ୍ଷକ ଯଥାର୍ଥରେ କହିଥିଲେ "Puppetry first discovered in Sindhu Civilisation."

ଏତଦ୍‌ବ୍ୟତୀତ ଚୀନ୍‌ର ପ୍ରାଚୀନ ଉତ୍ସବଗୁଡ଼ିକରେ, ମିଶରର ପ୍ରାଚୀନ ପ୍ରାସାଦଗୁଡ଼ିକରେ ତଥା ଗ୍ରୀକ୍ ସାହିତ୍ୟରେ ମଧ୍ୟ କଣ୍ଢେଇମାନଙ୍କ ପ୍ରାଚୀନ ତାନ୍ତ୍ରିକ ଅନୁଷ୍ଠାନଗୁଡ଼ିକର ଆଭାସ ମିଳୁଥିବାରୁ ସେ ଦେଶଗୁଡ଼ିକରେ କଣ୍ଢେଇର ବିକାଶ ହୋଇଥିଲା ବୋଲି କେତେକ ଯୁକ୍ତି ବାଢ଼ନ୍ତି । "Puppet" ବା କଣ୍ଢେଇ ଇଟାଲୀୟ ଶବ୍ଦରୁ ଆସିଥିବାରୁ କେତେକଙ୍କ

ପାରନ୍ତି ନୁହେଁ ଯେ ଏହା ଇଟାଲୀୟମାନଙ୍କ ଅବଦାନ । କାରଣ ଇଟାଲୀୟ ଭାଷାରେ "Pupa" ପୁପା ଅର୍ଥ କଣ୍ଢେଇ । ତେବେ ଏହାର ମୂଳରେ ସଂସ୍କୃତ ଶବ୍ଦ 'ପୁତ୍ର', 'ପୁତ୍ତଳିକା' ଏବଂ 'ପୁତ୍ରିକା' । ଏହାର ଅର୍ଥ କନିଷ୍ଠ ପୁତ୍ର; କିନ୍ତୁ ଭାରତରେ କଣ୍ଢେଇ ନାଚର ପରମ୍ପରା ଅତି ପ୍ରାଚୀନ । ଏ ସମ୍ବନ୍ଧରେ ଦିଲ୍ଲୀସ୍ଥିତ Centre for Cultural Resources and Training ଦ୍ୱାରା ପ୍ରକାଶିତ 'The Arts in India' ପୁସ୍ତକରେ ଯଥାର୍ଥରେ ପ୍ରକାଶ ପାଇଛି – "Some scholars belive that the art originated in China; specially the shadow Puppetry, but a majority of them say that India is the home of Puppetry and it is from here that the art along with the epic themes, migrated to South East Asian countries." ପରବର୍ତ୍ତୀ ପର୍ଯ୍ୟାୟରେ ଏ ସମ୍ବନ୍ଧରେ କୁହାଯାଇଛି – "The earliest reference to the art of Puppetry is found in a Tamil classics 'Silappadikarma' written around the first or second century B. C. Natya Shastra, the masterly treatise."

ଏ କଥା ସତ୍ୟ ଯେ, ପୃଥିବୀର ବିଭିନ୍ନ ଦେଶରେ ଆଜି କଣ୍ଢେଇ ନାଚର ଅଶାତୀତ ବିକାଶ ହେବା ସଙ୍ଗେ ସଙ୍ଗେ ଜନମାନସକୁ ପ୍ରଭାବିତ କରି ପାରିଛି । ତେବେ ଏହାର ପ୍ରାଚୀନ ପରମ୍ପରାର ଶ୍ରେୟ କେବଳ ଭାରତକୁ ହିଁ ଦେବାକୁ ପଡ଼ିବ । ଭାରତରେ ଏହି ପ୍ରାଚୀନ କଳା ସମ୍ବନ୍ଧରେ ୧୯୮୦ରେ ୱାସିଂଟନ୍‌ରେ ଅନୁଷ୍ଠିତ ହୋଇଥିବା Puppetry Conferenceରେ ଯୋଗ ଦେଇଥିବା ଦିଲ୍ଲୀସ୍ଥିତ କଥକ କେନ୍ଦ୍ରର ନିର୍ଦ୍ଦେଶକ ଶ୍ରୀ ଜୀବନାନନ୍ଦ ପାଣି ଯଥାର୍ଥରେ କହନ୍ତି, "Puppetry is a great art. It is recognised in the world. Except India the other countries have no its tradition. All they have started from one or two hundred years and become famous. But India is the ancestor of this art."

ତେବେ ଏହି ପରମ୍ପରାକୁ ଉଦ୍‌ଜୀବିତ କରିବା ପାଇଁ ଭାରତରେ ଯେଉଁଭଳି ପ୍ରଚେଷ୍ଟା ହେବା କଥା ତାହା ହୋଇ ନାହିଁ । କେତେକ ପ୍ରଦେଶରେ ଏହି ପରମ୍ପରାକୁ କେତେକ ପରିବାର କୌଳିକ ବ୍ୟବସାୟ ରୂପେ ବଞ୍ଚାଇ ରଖି ବିଭିନ୍ନ ସ୍ଥାନ ଭ୍ରମଣ କରି ନାଟକ ମଞ୍ଚସ୍ଥ କଲାବେଳେ ଖୁବ୍ ଅଳ୍ପ ସ୍ଥାନରେ ଏ ନିମିତ୍ତ ସ୍ଥାୟୀ ରଙ୍ଗମଞ୍ଚ କରାଯାଇଛି । ଏ ଦିଗରେ ନେହେରୁ ବାଲଭବନ ପକ୍ଷରୁ ଯେଉଁ ସାଧାରଣ ଚେଷ୍ଟା ଚାଲିଛି ତାହା କେବଳ କଣ୍ଢେଇ ତିଆରି ମଧ୍ୟରେ ସୀମିତ ଓ ପାରମ୍ପରିକ କଣ୍ଢେଇ ନାଚକୁ ସ୍ଥାନ ଦିଆଯାଉ ନାହିଁ । ତେବେ ଦିଲ୍ଲୀସ୍ଥିତ C. C. R. T. ପକ୍ଷରୁ ପାରମ୍ପରିକ କଣ୍ଢେଇ ନିର୍ମାଣ ଓ ଅଭିନୟ ପାଇଁ ପ୍ରତିବର୍ଷ ସମଗ୍ର ଭାରତବର୍ଷରୁ ଶିକ୍ଷକମାନଙ୍କୁ ଆମନ୍ତ୍ରଣ କରି ଯେଉଁଭଳି ତାଲିମ ଦିଆଯାଉଛି ତାହା ପ୍ରଶଂସନୀୟ ।

## ଶିକ୍ଷା କ୍ଷେତ୍ରରେ କଣ୍ଢେଇର ଆବଶ୍ୟକତା

ଏହି କଣ୍ଢେଇ ନାଚ ଚିତ୍ରକଳା, ହସ୍ତଶିଳ୍ପ, ନୃତ୍ୟ ଏବଂ ନାଟକ ଅଦ୍ଭୁତ ମିଶ୍ରଣ । ସମୟ ସମୟରେ ଏହି ମାଧ୍ୟମର ପ୍ରୟୋଗ ଅଲଗା ଅଲଗା କାମ ପାଇଁ ହୋଇଥାଏ । କେବେ ସାମାଜିକ ଅନୁଷ୍ଠାନ, କେବେ ଧାର୍ମିକ ଉତ୍ସବରେ, କେବେ ମନୋରଞ୍ଜନ ନିମିତ୍ତ, ଆଉ କେବେ ଶିକ୍ଷା ସଂସ୍ଥାନ ନିମିତ୍ତ ଏହା ବ୍ୟବହାର ହୋଇଥାଏ । ମୁଖ୍ୟତଃ ପ୍ରାଥମିକ ଶିକ୍ଷାସ୍ତରରେ ଦୃଶ୍ୟ ଶ୍ରାବ୍ୟ ସାମଗ୍ରୀ ରୂପେ କଣ୍ଢେଇର ପ୍ରୟୋଗ ସର୍ବାଧିକ ପ୍ରଭାବଶାଳୀ ସାଧନ ।

ଛୋଟ ଛୋଟ ଶିଶୁମାନେ ସାଧାରଣତଃ କଣ୍ଢେଇପ୍ରିୟ । କିଣାହୋଇ ଆସିଥିବା କୌଣସି ଦାମିକା କଣ୍ଢେଇ ସେମାନଙ୍କ ହାତରେ ଦେଲେ ସେମାନେ ଯେଉଁଳି ଆନନ୍ଦ ଅନୁଭବ କରନ୍ତି ତା' ଅପେକ୍ଷା ସେମାନଙ୍କ ନିଜ ହାତ ତିଆରି କଣ୍ଢେଇ ପ୍ରତି ସେମାନଙ୍କ ଆସକ୍ତି ବେଶୀ ଥାଏ । ସେମାନେ ମଣିଷ ଭଳି ତାକୁ ଖୁଆଇ ଦିଅନ୍ତି ଏବଂ ସେଇ କଣ୍ଢେଇର ଆଢୁଆଳରେ ରହି ମଣିଷ ଯେତେବେଳେ କଥା କହେ ଶିଶୁମାନେ ସେଥିରେ ମଜ୍ଜିଯାଆନ୍ତି । ଏଭଳି କଣ୍ଢେଇ ବ୍ୟବହାର କଲେ ସେମାନଙ୍କ ମନରେ ରଚନାତ୍ମକ କାର୍ଯ୍ୟଗୁଡ଼ିକ ପ୍ରତି ରୁଚି ଉତ୍ପନ୍ନ ହୁଏ ଏବଂ ଏହା ମଧ୍ୟ ଦେଖାଯାଇଛି ଯେ ଅନ୍ୟ ବେସିକ୍ କ୍ରାଫ୍‌ଟ୍ ଅପେକ୍ଷା ଏଥିରେ ବେଶୀ ଆନନ୍ଦ ମିଳିଥାଏ । କାରଣ ଏହାଦ୍ୱାରା ଅଜୀବିତ ବସ୍ତୁଗୁଡ଼ିକୁ ଜୀବିତ କରିବାର ଆନନ୍ଦ ପ୍ରାପ୍ତ ହୁଏ ।

କଣ୍ଢେଇ ଯଦିଓ ନିର୍ଜୀବ ବସ୍ତୁ ତଥାପି ସଞ୍ଚାଳନ ଦ୍ୱାରା ଏହା ଜୀବିତ ବସ୍ତୁ ଭଳି କାମ କରେ । ଏହା ଶିଶୁମାନଙ୍କ ମନରେ ଏକ ପ୍ରକାରର କଳ୍ପନାମୟ ଜଗତକୁ ଜନ୍ମ ଦେଇ ଅତ୍ୟନ୍ତ ମନୋବୈଜ୍ଞାନିକ ଢଙ୍ଗରେ ପ୍ରଭାବ ପକାଏ ଏବଂ ମନୋରଞ୍ଜନ ମାଧ୍ୟମରେ ସୁସଂସ୍କାର ଉତ୍ପନ୍ନ କରିବା ପାଇଁ ତୀର ଭଳି ହୃଦୟରେ ପ୍ରବେଶ କରିଥାଏ । ପ୍ରକୃତରେ କହିବାକୁ ଗଲେ ଶିଶୁ ଯେତେବେଳେ କଣ୍ଢେଇ ସଞ୍ଚାଳନ କରେ ସେ ଜଣେ କଳାକାର ଭଳି କଳାକୁ ଜନ୍ମ ଦିଏ । ଏହାଦ୍ୱାରା ସେ ନିଜ ଭାବନାର ପ୍ରଦର୍ଶନ କରିବା ସଙ୍ଗେ ସଙ୍ଗେ ତା' ଭାବାତ୍ମକ ଅଭିବ୍ୟକ୍ତି ସ୍ୱାଭାବିକ ଓ ସୁନ୍ଦର ଭାବେ ପ୍ରକାଶ ପାଏ, ତା' ମନରୁ ଲଜ୍ଜାଶୀଳତା ଅପସରି ଯାଏ; ଦୁଷ୍ଟାମୀ ଓ ନିରାଶା ଭିତରେ କଟୁଥିବା ଶିଶୁର ଜୀବନ ପ୍ରଣାଳୀ ସୃଜନାତ୍ମକ କାର୍ଯ୍ୟରେ ପରିବର୍ତ୍ତିତ ହୋଇଯାଏ ।

ସାଧାରଣତଃ କେତେକ ଆଗ୍ରହୀ ଚପଳ ସ୍ୱଭାବର ପିଲା ଘରୁ ସ୍ନେହ ମମତା ନପାଇ ଦୁଷ୍ଟାମୀ କରିଥାନ୍ତି । ସେମାନେ ପିଲାଙ୍କୁ ମାଡ଼ ମାରିବା ସଙ୍ଗେ ସଙ୍ଗେ କାନ୍ଥବାଡ଼ରେ ମଧ୍ୟ ଏଭଳି ଖରାପ କଥା ଲେଖନ୍ତି ଯାହାକି ପଢ଼ାଯାଇ ନପାରେ । ଅଭିଭାବକମାନେ ସେହି ପିଲାଙ୍କୁ ସ୍କୁଲକୁ ପଠାଇ ଦେଇ ସେହି ସମୟରେ ସେମାନଙ୍କଠାରୁ ବର୍ତ୍ତୀ ଯାଆନ୍ତି । ତେବେ ବିଦ୍ୟାଳୟରେ ମଧ୍ୟ ସେମାନଙ୍କ ପ୍ରଚଳିତ ପାଠ୍ୟକ୍ରମରେ ରୁଚି ଆସେ ନାହିଁ; ବିରକ୍ତିବୋଧ ହୁଏ । ସେମାନେ ଚେଷ୍ଟା କରନ୍ତି ସ୍କୁଲ ଛାଡ଼ି ଚାଲିଯିବା ପାଇଁ । ଏଭଳି ସ୍ଥିତି ବିଗତ କିଛି ବର୍ଷ ହେଲା ଜାପାନ୍‌ରେ ଘଟିଛି । ଏକ ସମ୍ବାଦ ଅନୁଯାୟୀ ବିଦ୍ୟାଳୟରେ କଠୋର ନିୟମ ଓ ପାଠ୍ୟକ୍ରମରେ ଅରୁଚି ହେତୁ ପ୍ରତି ବର୍ଷ ହଜାର ହଜାର ଛାତ୍ରଛାତ୍ରୀମାନେ ସ୍କୁଲ ଛାଡ଼ି ଚାଲି ଯାଉଛନ୍ତି ଏବଂ ସେଠାକାର ଜନସମ୍ପର୍କ ମାଧ୍ୟମରେ ପ୍ରାପ୍ତ ରିପୋର୍ଟ ଅନୁଯାୟୀ କେତେକ ପରିବାରର ଲୋକେ ସେମାନଙ୍କୁ ନେଇ ମାନସିକ ଚିକିତ୍ସାଳୟରେ ଦାଖଲ କରୁଛନ୍ତି । ମୁଖ୍ୟତଃ କଣ୍ଢେଇ ମାଧ୍ୟମରେ ଯଦି ସେଠାକାର ଶିକ୍ଷାନୁଷ୍ଠାନରେ ଶିକ୍ଷା ଦିଆଯାଆନ୍ତା, ସେମାନଙ୍କୁ ଏଭଳି ସ୍ଥିତିର ସମ୍ମୁଖୀନ ହେବାକୁ ପଡ଼ନ୍ତା ନାହିଁ । କାରଣ, ଜଣେ ଶିକ୍ଷକଙ୍କ ଦ୍ୱାରା ବ୍ୟାଖ୍ୟାନ ପଦ୍ଧତିରେ ଶିକ୍ଷାଦାନ ଦେବା ଅପେକ୍ଷା କଣ୍ଢେଇ ମାଧ୍ୟମରେ ବିଷୟ ସାମଗ୍ରୀକୁ ରୋଚକ ଢଙ୍ଗରେ ପ୍ରସ୍ତୁତ କରାଯାଇ ପାରେ ।

କାଠ କଣ୍ଢେଇର ସମ୍ବାଦ ଶିଶୁମାନେ ତଲ୍ଲୀନ ହୋଇ ଶୁଣିବାର କାରଣ ଏଗୁଡ଼ିକ ବିସ୍ମୟକାରୀ ଓ କୌତୁହଳବର୍ଦ୍ଧକ । ଏଭଳି ଶିକ୍ଷଣ ଦ୍ୱାରା ନିରାଶ ତଥା ବିଦ୍ୟାଳୟରୁ ପଳାଉଥିବା ଛାତ୍ରଛାତ୍ରୀମାନଙ୍କ ଧ୍ୟାନ ପାଠ ଉପରେ ଅଧିକ ସମୟ ପର୍ଯ୍ୟନ୍ତ କେନ୍ଦ୍ରିତ କରାଯାଇ ପାରେ । ବସ୍ତୁତଃ କଣ୍ଢେଇ ଦ୍ୱାରା ଦିଆଯାଇଥିବା ଜ୍ଞାନ ପିଲାଙ୍କ ପାଇଁ ସ୍ଥାୟୀ ହୋଇ ରହିଥାଏ । ଏ ଦିଗରେ ଜର୍ମାନ୍‌ର ବିଶିଷ୍ଟ ଶିକ୍ଷାବିତ୍ ଶ୍ରୀମତୀ

ଏଲିଜାବେଥ୍ ସୁଲଜ୍ କଣ୍ଢେଇ ମାଧ୍ୟମରେ ଶିକ୍ଷା ଦେଇ ଏହାର ଶୈକ୍ଷିକ ବିକାଶର ସଫଳତା ସମ୍ପୂର୍ଣ୍ଣ ରୂପେ ପ୍ରମାଣ କରି ଦେଇଛନ୍ତି। ସେଠାକାର ଶିଶୁମାନେ ସୁଲଜ୍‌ଙ୍କ କଣ୍ଢେଇକୁ ଏତିକି ଭଲ ପାଆନ୍ତି, ଯେତିକି ସେମାନେ ନିଜର ମାଆ ବାପାଙ୍କୁ ଭଲ ପାଆନ୍ତି। ତାଙ୍କରି ପ୍ରତ୍ୟେକ କଣ୍ଢେଇ ଫିଲ୍ମ ହିରୋ ଭଳି ପ୍ରଖ୍ୟାତ ହୋଇ ଯାଇଛି। ସେ ଯେତେବେଳେ କଣ୍ଢେଇ ପ୍ରଦର୍ଶନ କରନ୍ତି ତାଙ୍କୁ କହିବାର ଆବଶ୍ୟକ ହୁଏ ନାହିଁ। ତାଙ୍କ କଣ୍ଢେଇମାନେ ଜର୍ମାନ୍ ପିଲାଙ୍କ ଦ୍ୱାରା ଏଭଳି ଜଡ଼ିତ ହୋଇ ଯାଇଛନ୍ତି ଯେ, ପ୍ରଦର୍ଶନ ବେଳେ ଶିଶୁମାନେ ସ୍ୱୟଂ କହି ଉଠନ୍ତି। ଭାଷା ଶିକ୍ଷା ଦେବାରେ ତାଙ୍କ କଣ୍ଢେଇର କେହି ମୁକାବିଲା କରି ପାରିବେ ନାହିଁ। କଣ୍ଢେଇମାନେ ଖେଳ ମାଧ୍ୟମରେ ସମସ୍ତ ପାଠ ପଢ଼ାଇ ଦିଅନ୍ତି ଏବଂ ଶିଶୁମାନଙ୍କୁ ଶବ୍ଦ ଉଚ୍ଚାରଣ ଶିଖାଇ ଦିଅନ୍ତି। ତାଙ୍କରି କଣ୍ଢେଇ ସମସ୍ତ ଶିଶୁମାନଙ୍କ ସହିତ ଗାଏ; ନାଚି ପାରେ। ଏହା ଶିଶୁମାନଙ୍କୁ ଲୁଗା ପିନ୍ଧାଇବା, ନଖ କାଟିବା, ଦାନ୍ତ ଘଷିବା ଆଦି ଶିଖାଇଥାଏ।

## କଣ୍ଢେଇ ନାଚର ବିଭାଗୀକରଣ

ସମଗ୍ର ବିଶ୍ୱରେ ଆଜିଯାଏ ପାରମ୍ପରିକ ଢଙ୍ଗରେ ଯେଉଁ ସବୁ କଣ୍ଢେଇ ନାଚ ଅଭିନିତ ହୋଇ ଆସୁଛି, ସେ ସବୁରେ ମୁଖ୍ୟତଃ ଚାରି ପ୍ରକାରର କଣ୍ଢେଇ ବ୍ୟବହୃତ ହୋଇଥାଏ। ଏଗୁଡ଼ିକ ହେଲା :

(୧) ଛାୟା କଣ୍ଢେଇ (Shadow Puppet)
(୨) ସୂତ୍ର କଣ୍ଢେଇ (String or Marionette Puppet)
(୩) ଛଡ଼ କଣ୍ଢେଇ (Rod Puppet)
(୪) ଦସ୍ତାନା କଣ୍ଢେଇ (Glove Puppet)

## (୧) ଛାୟା କଣ୍ଢେଇ(Shadow Puppet)

ଛାୟା କଣ୍ଢେଇର ଉଦ୍ଭବ ହଜାର ହଜାର ବର୍ଷ ପୂର୍ବରୁ ଆରମ୍ଭ ହୋଇଯାଇଥିଲା। ବିଶ୍ୱର ଅନ୍ୟାନ୍ୟ କଣ୍ଢେଇ ଅପେକ୍ଷା ଏହାର ପ୍ରାଚୀନତାକୁ କେହି ଅସ୍ୱୀକାର କରି ପାରିବେ ନାହିଁ। ପ୍ରାରମ୍ଭରେ ଆଦିମ ମଣିଷ ଗୁମ୍ଫାରେ ରହି ଯେତେବେଳେ ନିଆଁ ଜାଳୁଥିଲା ତା'ର ପ୍ରତିଛାୟା ଗୁମ୍ଫାର କାନ୍ଥରେ ପଡ଼ିବାରୁ ତା' ମନରେ କୌତୁହଳ ଜାତ ହୋଇଥିବା କଥା ପୂର୍ବରୁ ଆଲୋଚନା କରାଯାଇଛି। କ୍ରମେ ଏହି ମଣିଷ ତା' ହାତର ବିଭିନ୍ନ ମୁଦ୍ରା କ୍ରମେ ନିଆଁ ଆଗରେ ଦେଖାଇ ପକ୍ଷୀର ଆକୃତି, ସାପର ଆକୃତି, ହରିଣର ଆକୃତି ଆଦି ଗୁମ୍ଫାର କାନ୍ଥରେ ଛାୟା ମାଧ୍ୟମରେ ତିଆରି କରିଥିଲା। ସମ୍ଭବତଃ ସେହି ଦିନଠାରୁ ଛାୟା କଣ୍ଢେଇର ଉଦ୍ଭବ ହୋଇଥିବ।

ଆଜିକୁ ହଜାର ବର୍ଷ ପୂର୍ବେ ତୁର୍କୀ ମେଷ ପାଳକମାନେ ମେଣ୍ଢାମାନଙ୍କ ଚମଡ଼ାରେ ଛାୟା କଣ୍ଢେଇ ତିଆରି ସେମାନଙ୍କ ତେମ୍ବୁ ଫାସ୍ଫାରଗୁଡ଼ିକରେ ଆନନ୍ଦ ଉପଭୋଗ କରୁଥିଲେ। ପରବର୍ତ୍ତୀ ପର୍ଯ୍ୟାୟରେ ସୂର୍ଯ୍ୟକିରଣ କିମ୍ବା ବିଦ୍ୟୁତ୍ ଆଲୁଅରେ 'କାରାଗଜ' (Karagoz) ନାମକ ସେମାନଙ୍କ ଛାୟା କଣ୍ଢେଇ ନାଚ ପ୍ରସିଦ୍ଧି ଲାଭ କରିଥିଲା।

ଆଉ କେତେକ ଛାୟା ନାଟକ ଭାରତରୁ ଉଦ୍ଭବ ହୋଇଥିଲା ବୋଲି କହିବା ବେଳେ କେତେକ ଏହାର ଜନ୍ମ ଚୀନ୍ ଦେଶରେ ବୋଲି ଯୁକ୍ତି ବାଢ଼ିଥାନ୍ତି। ତେବେ ଯେଉଁମାନେ ଏହାର ଜନ୍ମ ଚୀନ୍ ଦେଶରେ ବୋଲି କହିଥାନ୍ତି ସେମାନଙ୍କ ଯୁକ୍ତି ଚୀନ୍ ଦେଶର ଏକ କିମ୍ବଦନ୍ତୀ ଉପରେ ଆଧାରିତ। ତାହା ହେଲା :

ଉଇଟି (Wuti) ହାନ୍ ସାମ୍ରାଜ୍ୟର ଜଣେ ସମ୍ରାଟ ଥିଲେ। ସେ ଖ୍ରୀଷ୍ଟ ଜନ୍ମର ୧୨୦ ବର୍ଷ ପୂର୍ବରୁ ରାଜ୍ୟ ଶାସନ କରୁଥିଲେ। ତାଙ୍କ ଉପପତ୍ନୀଙ୍କ ମୃତ୍ୟୁ ପରେ ତାଙ୍କ ଭଗ୍ନ ହୃଦୟକୁ ଶାନ୍ତ କରିବା ପାଇଁ ରାଜସଭାର ବିଦୂଷକମାନେ ଚିନ୍ତା କରିଥିଲେ। ସେମାନେ ସମ୍ରାଟଙ୍କୁ ଉପପତ୍ନୀଙ୍କ "ଆତ୍ମା"କୁ ଦେଖାଇବାର ଛଳନା କରିବାକୁ ଯାଇ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ କଣ୍ଢେଇ ଉପରେ ଆଲୁଅ ପକାଇ ଛାୟା ସୃଷ୍ଟି କରିଥିଲେ। ସେହି ଦିନଠାରୁ ଛାୟା କଣ୍ଢେଇର ଜନ୍ମ ହେବା ସଙ୍ଗେ ସଙ୍ଗେ ଛାୟା ନାଟକର ବିକାଶ ହୋଇଛି ବୋଲି କେତେକ କହିଥାନ୍ତି। କିନ୍ତୁ କିମ୍ବଦନ୍ତୀର ଆଧାର ଉପରେ ଏହାକୁ ପ୍ରମାଣ କରିବା ଯୁକ୍ତିଯୁକ୍ତ ନୁହେଁ। ଯେଉଁମାନେ ଛାୟା ନାଟକ ପ୍ରଥମେ ଚୀନରୁ ଉଦ୍ଭବ ବୋଲି ଦାବୀ କରିଥାନ୍ତି, ସେମାନେ ଭାରତରେ ବିକାଶ ଲାଭ କରିଥିବା ଛାୟା ନାଟକର ପ୍ରାଚୀନତାକୁ ଅସ୍ୱୀକାର କରିଥାନ୍ତି; କିନ୍ତୁ ଉପଯୁକ୍ତ ପ୍ରମାଣ ଅଭାବରୁ ସେମାନଙ୍କ ଯୁକ୍ତି ସିଦ୍ଧ ହୋଇପାରେ ନାହିଁ।

ଛାୟା ନାଟକର ପ୍ରାଚୀନ ପୃଷ୍ଠଭୂମି ଯେ ଭାରତ, ଏ କଥା ପ୍ରାଚୀନ ଗ୍ରନ୍ଥଗୁଡ଼ିକରୁ ଜଣାପଡ଼େ। ଏ ସପକ୍ଷରେ ଯଥାର୍ଥରେ Pischel and Luders ପ୍ରକାଶ କରିଛନ୍ତି, "The famous sanskrit drama 'Mahanataka' was originally meant as a shadow play."

Winternitzଙ୍କ ମତରେ "Mahanataka has a great resemblance with wayang plays."

ଏହି ମହାନାଟକର ସମୟକାଳ ଏ ପର୍ଯ୍ୟନ୍ତ ଯଦିଓ ସ୍ଥିର ହୋଇପାରି ନାହିଁ ତଥାପି ନବମ ଶତାବ୍ଦୀରେ ଆନନ୍ଦ ବର୍ଦ୍ଧନ ତାଙ୍କ ପୁସ୍ତକରେ ମହାନାଟକର ସୂଚନା ଦେଇଥିବାରୁ ଏହା ତାଙ୍କ ଅପେକ୍ଷା ମଧ୍ୟ ପ୍ରାଚୀନ ବୋଲି ଧରାଯିବ।

ସେହିଭଳି ୧୩୦୦ ଖ୍ରୀଷ୍ଟାବ୍ଦରେ ଶୁଭଟଙ୍କ "ଦୂତାଙ୍ଗଦ" ଛାୟା ନାଟକ ରୂପେ ପ୍ରସିଦ୍ଧି ଲାଭ କରିଥିଲା। ଏହି ସମୟ ମଧ୍ୟରେ (ଖ୍ରୀ : ୧୩୦୦) "ଉଲ୍ଲାସ ରାଘବ" ନାମକ ଅନ୍ୟ ଏକ ଛାୟା ନାଟକ ରଚିତ ହୋଇଥିଲା। ଏବେ ମଧ୍ୟ ଛାୟା କଣ୍ଢେଇ ମାଧ୍ୟମରେ ଏହି ନାଟକ କର୍ଣ୍ଣାଟକରେ ଅଭିନିତ ହୋଇ ଆସୁଛି।

ଆଜି ଛାୟା ନାଟକର ପରମ୍ପରା ଚୀନ୍, ଦକ୍ଷିଣ ପୂର୍ବ ଏସିଆରେ ଲୋକପ୍ରିୟତା ଲାଭ କରିଥିଲେ ମଧ୍ୟ ଭାରତର ବିଭିନ୍ନ ପ୍ରଦେଶରେ ଏହି ପରମ୍ପରା କିଭଳି ଭାବେ ସଞ୍ଜୀବିତ ହୋଇ ଆସିଛି ତାହା ଆଲୋଚନାର ବିଷୟ।

କେରଳରେ ଏହି ଛାୟା ନାଟକ "ତୋଲ୍‌ପାବାକୁତୁ" ନାମରେ ଖ୍ୟାତ। ବର୍ଷକେ ଥରେ ମାତ୍ର ଏହି ନାଟକ ମନ୍ଦିର ବା ଯାଗା ଆଦିରେ ୭ ଦିନରୁ ୨୧ ଦିନ ପର୍ଯ୍ୟନ୍ତ ଅଭିନୀତ ହୋଇଥାଏ। ଏହାର ବିଷୟବସ୍ତୁ କାମ୍ବଙ୍କ ଲିଖିତ ରାମାୟଣର କଥାବସ୍ତୁ ଉପରେ ଆଧାରିତ। ଏହି ନାଟକର ପାତ୍ରପାତ୍ରୀ ଚମଡ଼ା ଦ୍ୱାରା ପ୍ରସ୍ତୁତ; ମାତ୍ର ଗୋଟିଏ ହାତ ସଂଯୋଜିତ। କଥୋପକଥନ ବେଳେ ଏହି ହାତକୁ ହଲାଇ ଛାୟା କଣ୍ଢେଇ ନିଜର ଅଭିବ୍ୟକ୍ତି ପ୍ରକାଶ କରିଥାଏ। କଣ୍ଢେଇର ପଛପଟେ ପ୍ରଦୀପ ଜଳାଇ ସ୍କ୍ରିନ୍ ଉପରେ ଏହାର ଛାୟା ପକାଇ ଅଭିନୟ କରାଯାଏ। ପ୍ରତି ଦଳରେ ୭ ଜଣରୁ ୯ ଜଣ ଯାଏ ବ୍ୟକ୍ତି ରହି ନାଟକ ପରିବେଷଣ କରିଥାନ୍ତି।

ଓଡ଼ିଶାରେ ଏହି ଛାୟା ନାଟକ "ରାବଣ ଛାୟା" ନାମରେ ଖ୍ୟାତ। ଏହାର ପାତ୍ରପାତ୍ରୀ ତଥା ଛାୟା ବୃକ୍ଷ, ପାହାଡ଼, ରଥ ଆଦି ହରିଣ ଚମଡ଼ାରେ ପ୍ରସ୍ତୁତ ହୋଇଥାଏ। କଣ୍ଢେଇର ଆକାର ଅତି ଛୋଟ ଅର୍ଥାତ୍ ଦୁଇ ଫୁଟ ମଧ୍ୟରେ ସୀମିତ ତଥା ଏହାର ଅବୟବଗୁଡ଼ିକ ସ୍ୱତନ୍ତ୍ର ଭାବେ ସଂଯୁକ୍ତ ହୋଇଥାଏ। ଏହି କଣ୍ଢେଇ ମାଧ୍ୟମରେ ଛାୟାଗୁଡ଼ିକ

...ଣିତ ହୋଇ ଅଭିନୟର ଗତିକୁ ବାସ୍ତବ ଭାବେ ରୂପାୟିତ କରିଥାନ୍ତି ।

ଓଡ଼ିଶାରେ ଛାୟା କଣ୍ଢେଇ ନାଚ ମୁଖ୍ୟତଃ ମଧ୍ୟଯୁଗୀୟ କବି ବିଶ୍ୱନାଥ ଖୁଣ୍ଟିଆଙ୍କ ବିଚିତ୍ର ରାମାୟଣର କଥାବସ୍ତୁ ଉପରେ ଆଧାରିତ ।

ଅନ୍ଧ୍ରପ୍ରଦେଶର ଛାୟା କଣ୍ଢେଇ ନାଚକୁ "ଥୋଲୁବୋମାଲାଟ୍ଟା" କହନ୍ତି । ଏହି ଛାୟା କଣ୍ଢେଇର ରଙ୍ଗ ଅତ୍ୟନ୍ତ ଉଜ୍ଜ୍ୱଳ । ଏହା ଭାରତର ସମସ୍ତ ଛାୟା କଣ୍ଢେଇ ଅପେକ୍ଷା ଆକାରରେ ବଡ ଓ ଏହାର ଅବୟବ, ଛାତି, କହୁଣୀ, ଆଣ୍ଠୁ, ବେକ ଆଦି ସ୍ୱତନ୍ତ୍ର ଭାବେ ଖଚିତ ହୋଇ ତା' ସହିତ ବାଉଁଶ ପାତ ଲାଗିଥାଏ । ଏହି ବାଉଁଶ ପାତ ସାହାଯ୍ୟରେ ଏହା ସଞ୍ଚାଳିତ ହୁଏ । ଏହାର କଥାବସ୍ତୁ ରାମାୟଣ, ମହାଭାରତ ଓ ପୁରାଣର କଥାବସ୍ତୁ ଉପରେ ଆଧାରିତ ।

କର୍ଣ୍ଣାଟକର ଛାୟା କଣ୍ଢେଇ ନାଟକକୁ "ତୋଗଲୁଗୋଯେସ୍ୱାଟ୍ଟ୍" କହନ୍ତି । ଏହା ବିଭିନ୍ନ ରଙ୍ଗରେ ରଞ୍ଜିତ ହୋଇଥାଏ ଏବଂ ରାମାୟଣ, ମହାଭାରତ ଓ ପୁରାଣର କଥାବସ୍ତୁ ଉପରେ ଅଭିନିତ ହୋଇଥାଏ ।

## (୨) ସୂତ୍ର କଣ୍ଢେଇ (String or Marionette Puppet

ସୂତା ଦ୍ୱାରା ସଞ୍ଚାଳିତ କଣ୍ଢେଇକୁ ସାଧାରଣତଃ ସୂତ୍ର କଣ୍ଢେଇ ବା Marionette Puppet କହିଥାନ୍ତି । ଏହି "ମେରିନେଟ୍" ଏକ ଫରାସୀ ଶବ୍ଦ । ଏହାର ଅର୍ଥ ସ୍ୱଚ୍ଛ ଆନନ୍ଦ । ଏହି ଶ୍ରେଣୀୟ କଣ୍ଢେଇ ନାଚ ଖ୍ରୀଷ୍ଟାବ୍ଦ ୧୮ଶ ଶତାବ୍ଦୀ ମଧ୍ୟରେ ଫ୍ରାନ୍ସର ବିଭିନ୍ନ ଧାର୍ମିକ ଉତ୍ସବରେ ଅଭିନୀତ ହେଉଥିଲା । ଏହା ମୁଖ୍ୟତଃ କାଠରେ ତିଆରି ହେଉଥିବାରୁ ସୂତ୍ର କଣ୍ଢେଇ କହିଲେ ପ୍ରାୟ ସମସ୍ତେ କାଠ କଣ୍ଢେଇକୁ ବୁଝିଥାନ୍ତି ।

ଆମ ଦେଶରେ କାଠ କଣ୍ଢେଇର ପରମ୍ପରା ଅତି ପ୍ରାଚୀନ । ଅଭିନେତା ରଙ୍ଗମଞ୍ଚ ପରିଶୀଳନା କରିବାର ବହୁ ପୂର୍ବରୁ କାଠ କଣ୍ଢେଇ ...ମଞ୍ଚରେ ନିଜର ପ୍ରଭୁତ୍ୱ ବିସ୍ତାର କରି ସାରିଥିଲା । ସାଧାରଣତଃ ...ଏ ସୂତ୍ର ଧରି କଣ୍ଢେଇ ସଞ୍ଚାଳନ କରିଥାଏ ତାକୁ "ସୂତ୍ରଧର" କୁହାଯାଏ । ଏହି ଶବ୍ଦ ପ୍ରଥମେ କେବଳ କଣ୍ଢେଇ ନାଚର ସଞ୍ଚାଳନ ...ର୍ଥେ ବ୍ୟବହୃତ ହେଲେ ମଧ୍ୟ ପରବର୍ତ୍ତୀ ପର୍ଯ୍ୟାୟରେ ମାନବୀୟ ନାଟକ ... Human Theatreର ନିର୍ଦ୍ଦେଶକ ବା ସଞ୍ଚାଳକକୁ "ସୂତ୍ରଧର" ...ଲି କୁହାଗଲା । ଖ୍ରୀ: ପୂ: ୨ୟ ଶତାବ୍ଦୀରୁ ୪ର୍ଥ ଶତାବ୍ଦୀ ମଧ୍ୟରେ ...ତ ନାଟ୍ୟଶାସ୍ତ୍ରରେ ମଧ୍ୟ "ସୂତ୍ରଧର" ଶବ୍ଦ ବ୍ୟବହୃତ ହୋଇଛି । ଏହି ...ି ଅନେ Theatre Terminology ଭିତରେ ଜଡ଼ିତ ...ହୋଇଥିଲେ ମଧ୍ୟ ଏହାର ବ୍ୟୁତ୍ପତ୍ତି ଯେ କଣ୍ଢେଇ ନାଚରୁ ଆଗତ, ଏ... କେହି ଅସ୍ୱୀକାର କରି ପାରିବେ ନାହିଁ । ତେଣୁ କଣ୍ଢେଇ ନାଚର ...ି "ନାଟ୍ୟଶାସ୍ତ୍ର"ର ରଚନାର ବହୁ ପୂର୍ବରୁ ହୋଇଥିବା ପ୍ରମାଣିତ ... ।

...ାଚୀନ ଭାରତୀୟ ଦାର୍ଶନିକମାନେ ମଧ୍ୟ ଭଗବାନଙ୍କୁ ବିଶ୍ୱ ବ୍ରହ୍ମାଣ୍ଡର ...ଧର" ବୋଲି ମାନୁଥିଲେ । ସେମାନଙ୍କ ଦୃଷ୍ଟିରେ ସମଗ୍ର ବିଶ୍ୱ ...ି ଗୋଟିଏ କଣ୍ଢେଇ ରଙ୍ଗମଞ୍ଚ ବା Marionette Theatre ...କଳ୍ପିତ ହୋଇଥିଲା । ଶ୍ରୀମଦ୍ ଭଗବଦ୍ ଗୀତାରେ ମଧ୍ୟ ...ନଙ୍କୁ ସତ୍ତ୍ୱ, ରଜ, ତମ ରୂପୀ ତ୍ରି ସୂତ୍ରର "ସୂତ୍ରଧର" ରୂପେ ...ାଇଛି । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ "ସୂତ୍ରଧର" ଆଦି ଶବ୍ଦର ...ାର Marionette Theatre ସମେତ "ସୂତ୍ରଧାର"ର ... ପରମ୍ପରାକୁ ସ୍ୱୀକୃତ କରେ । ପରବର୍ତ୍ତୀ ପର୍ଯ୍ୟାୟରେ ପ୍ରାଚୀନ ମିଶର, ରୋମ୍ ତଥା ଚୀନ୍‌ରେ ଏହା ଧାର୍ମିକ ଉତ୍ସବ ଏବଂ ଐତିହାସିକ ବ୍ୟକ୍ତିତ୍ୱ ତଥା ସେମାନଙ୍କ କୃତିତ୍ୱ କାଠ କଣ୍ଢେଇ ମାଧ୍ୟମରେ ଅଭିନୀତ ହୋଇଥିଲେ ମଧ୍ୟ ଅଦ୍ୟାବଧି ଭାରତର ରାଜସ୍ଥାନ, ଓଡ଼ିଶା, ତାମିଲ୍‌ନାଡୁ, କର୍ଣ୍ଣାଟକ, ଆନ୍ଧ୍ର ଆଦି ସ୍ଥାନରେ କାଠ କଣ୍ଢେଇମାନ ରାମାୟଣ, ମହାଭାରତ ତଥା ଭାଗବତର ନାମକଥାଗୁଡ଼ିକୁ ପାରମ୍ପରିକ ଢଙ୍ଗରେ ଅଭିନୀତ କରି ଭାରତୀୟ ସଂସ୍କୃତି ଓ ଏହାର ଅବିଚଳିତ ପରମ୍ପରାକୁ ବଞ୍ଚାଇ ରଖି ସମେ ଶିକ୍ଷା କ୍ଷେତ୍ରକୁ ଚିର ପ୍ରବାହିତ କରିବାରେ ସମର୍ଥ ହୋଇପାରିଛନ୍ତି ।

ଏହି ସୂତ୍ର ସଞ୍ଚାଳିତ କାଠ କଣ୍ଢେଇ ଭାରତର ବିଭିନ୍ନ ପ୍ରଦେଶରେ ବିଭିନ୍ନ ଧାରାରେ ଗଠିତ ହୋଇ ନିଜସ୍ୱ ଶୈଳି ଓ ମୌଳିକତାକୁ ପ୍ରତିପାଦନ କରିଛି ।

ରାଜସ୍ଥାନରେ ସୂତ୍ର କଣ୍ଢେଇ ମୁଖ୍ୟତଃ "କାଠପୁତୁଲୀ" ନାମରେ ପରିଚିତ । ଏହି କଣ୍ଢେଇଗୁଡ଼ିକର ମୁଖାକୃତି ଗୋଲାକାର ହୋଇ ସାମାନ୍ୟ ଲମ୍ବିଥାଏ । ଏହାର ମୁଖର ରଙ୍ଗ ଧଳା କିମ୍ବା ହଳଦିଆ; ମାଛ ଭଳି ଲମ୍ବା ଆଖି ଓ ଓଠ କାନକୁ ସ୍ପର୍ଶ କରୁଥାଏ । ଏହାର ପାଦ ନଥାଏ । ରାଜା ଓ ସମ୍ଭ୍ରାନ୍ତମାନଙ୍କ କଣ୍ଢେଇ ସାଧାରଣ କଣ୍ଢେଇମାନଙ୍କ–ଠାରୁ ଉଚ୍ଚ । ଉଚ୍ଚକୋଟୀର ନାଟକୀୟ ପ୍ରଭାବ ନିମିତ୍ତ ମଞ୍ଚ ଉପରେ ସାଧାରଣ ବ୍ୟକ୍ତିଙ୍କ କଣ୍ଢେଇ ମହାରାଜାଙ୍କ କଣ୍ଢେଇ ସମ୍ମୁଖରେ ଲୋଟିପଡ଼ି ଥରୁଥିବାର ଦେଖାଯାଏ । ନର୍ତ୍ତକୀ ନିଜର କମରଠାରେ ଝଟ୍‌କା ଦେଇ ନୃତ୍ୟ କରିଥାଏ । ଏହି କଣ୍ଢେଇ ମାତ୍ର ଖଣ୍ଡିଏ କାଠରେ ତିଆରି ହୋଇ Stuffed Kags ନିର୍ମିତ ହାତଗୁଡ଼ିକ ଖଚିତ ହୋଇ ମଧ୍ୟଯୁଗୀୟ ରାଜସ୍ଥାନୀ ପୋଷାକ ଓ ଅଳଙ୍କାର ଆଦି ପରିଧାନ କରିଥାଏ । ପ୍ରତି କଣ୍ଢେଇରେ ୩ଟାରୁ ୫ଟା ପର୍ଯ୍ୟନ୍ତ ସୂତ୍ର ବା String ଲାଗିଥାଏ । କଣ୍ଢେଇଗୁଡ଼ିକ ମଞ୍ଚର ଉପର ଭାଗରୁ ସଞ୍ଚାଳିତ କରାଯାଏ ।

ଓଡ଼ିଶାର ସୂତ୍ର କଣ୍ଢେଇ "ସଖୀକଣ୍ଢେଇ" ନାମରେ ଖ୍ୟାତ । ରାଜସ୍ଥାନୀ କଣ୍ଢେଇ ଭଳି ଏହା ହାଲୁକା କାଠରେ ତିଆରି ହୋଇଥାଏ । ଏହାର ପାଦ ନଥାଏ; ଶରୀରର ଆବରଣ ପାଦ ପର୍ଯ୍ୟନ୍ତ ଦୋହଲିଥାଏ । କଣ୍ଢେଇର ବହୁତ ଖଣ୍ଡା ବା Joints ଥାଏ । ୫ଟାରୁ ୬ଟା ପର୍ଯ୍ୟନ୍ତ ସୂତ୍ର କଣ୍ଢେଇରେ ଲାଗି ସଞ୍ଚାଳନର ସୁବିଧା ପାଇଁ ଏକ ତ୍ରିକୋଣ କାଠରେ ସଂଯୁକ୍ତ ହୋଇଥାଏ । ଏହି କଣ୍ଢେଇଗୁଡ଼ିକର ପ୍ରକୃତି ଓଡ଼ିଶାର ମନ୍ଦିରଗୁଡ଼ିକରେ ଥିବା ମୂର୍ତ୍ତିମାନଙ୍କ ପରି ଓ ଆବରଣ ଆଦି ଯାତ୍ରା ତଥା ଲୋକ ନାଟକ ଭଳି ।

ତାମିଲ୍‌ନାଡୁର ସୂତ୍ର କଣ୍ଢେଇକୁ "ବୋମ୍ମଲାଟ୍ଟମ୍" କହନ୍ତି । ମୁଖ୍ୟତଃ ତାନ୍‌ଜୋର୍ ଜିଲ୍ଲାରେ ଏହି ଅଭିନୟ ହୁଏ । ବୋମ୍ମଲାଟ୍ଟମ୍ କଣ୍ଢେଇ ସମସ୍ତ ଭାରତୀୟ କଣ୍ଢେଇ ଅପେକ୍ଷା ଆକାରରେ ଖୁବ୍ ବଡ଼ ଓ ଓଜନିଆ । ଏହାର ଉଚ୍ଚତା ୪ ଫୁଟ ୬ ଇଞ୍ଚ ଓ ଓଜନ ୧୦ କିଲୋ ହେବ । ଏହାର ବାହୁଗୁଡ଼ିକ ଖଣ୍ଡା ବା Joints ଥାଏ । ଏହି କଣ୍ଢେଇର ଅଭିନୟକୁ ବିନାୟକ ପୂଜା, କୋମାଳି, ଆମାନେଆଡମ୍, ପୁସ୍ତିକ୍‌ଧାଟମ୍ ଆଦି ଚାରି ଭାଗରେ ବିଭକ୍ତ କରାଯାଏ ।

କେରଳର ସୂତ୍ର କଣ୍ଢେଇ ନାଚକୁ "ଗସେସ୍ୱାଟ୍ଟମ୍" କୁହାଯାଏ । ଏହି କଣ୍ଢେଇଗୁଡ଼ିକର ଆକାର ଗୋଲାକୃତ, ପାଦ ଥାଏ ଏବଂ ଛାତି ସହିତ କହୁଣୀ ଓ ଆଣ୍ଠୁ ଆଦି ସଂଯୁକ୍ତ ରହେ । ମୁଖ୍ୟତଃ ଏହାଦ୍ୱାରା "ଯକ୍ଷଗାନ" ଅଭିନୀତ ହୋଇଥାଏ । ଏହାର ସଙ୍ଗୀତ ତଥା ବାଦ୍ୟ ଯନ୍ତ୍ରର ପରିବେଷଣ ଅତ୍ୟନ୍ତ ଚିତ୍ତାକର୍ଷକ ।

କର୍ଣ୍ଣାଟକର ସୂତ୍ର କଣ୍ଢେଇ ନାଚକୁ "ଗୋମ୍ବେଆଟ୍ଟା" କହନ୍ତି । ଏହାର ଉପସ୍ଥାପନା, କଥାବସ୍ତୁ ଓ ବେଶଭୂଷା ଠିକ୍ କେରଳର "ଯକ୍ଷଗାନ" ଭଳି ହୋଇଥାଏ ।

# ସମଗ୍ର ବିଶ୍ୱରେ କାଠ କଣ୍ଢେଇର ବିକାଶ ଧାରା

ଏ କଥା ସତ୍ୟ ଯେ ଭାରତ ଭଳି ଏସିଆର କେତେକ ଦେଶରେ କାଠ କଣ୍ଢେଇର ବିଶୁଦ୍ଧ ପରମ୍ପରାଗତ ଶୈଳିମାନ ଆଜି ବି ସେମାନଙ୍କ ପ୍ରମୁଖ ଅଙ୍ଗ ହୋଇ ରହିଛି; କିନ୍ତୁ ୟୁରୋପର ଅଧିକାଂଶ ପରମ୍ପରାଗତ କାଠ କଣ୍ଢେଇ ପ୍ରାୟଶଃ ଲୁପ୍ତ ହୋଇ ଯାଇଛି। ଇଟାଲୀ, ଇଂଲଣ୍ଡ ତଥା ଜର୍ମାନୀରେ ଯେଉଁ ସବୁ ପରମ୍ପରାଗତ କାଠ କଣ୍ଢେଇ ଦଳ ବିଦ୍ୟମାନ ତାହା ନିଷ୍ପ୍ରାଣ ହୋଇ ଗଲାଣି ତଥା ଜନମାନସକୁ ପ୍ରେରଣା ଦେବାରେ ସମ୍ପୂର୍ଣ୍ଣ ଅସଫଳ ହୋଇଛି। ଆଜି କାଠ କଣ୍ଢେଇଗୁଡ଼ିକ ସମ୍ବନ୍ଧରେ ୟୁରୋପ ଓ ଆମେରିକାରେ ଯେଉଁଭଳି ହଲଚଲ ଦେଖା ଦେଇଛି ସେଭଳି ଅନ୍ୟ କେଉଁଠି ନାହିଁ; କିନ୍ତୁ ସେଠାରେ ମଧ୍ୟ କାଠ କଣ୍ଢେଇ ନୂଆକରି ଜନ୍ମ ନେଇ ପ୍ରସିଦ୍ଧି ଲାଭ କରିଛି। ପରମ୍ପରାଗତ କାଠ କଣ୍ଢେଇଗୁଡ଼ିକ ସହିତ ଏ କଣ୍ଢେଇଗୁଡ଼ିକର କୌଣସି ସମ୍ବନ୍ଧ ନଥିଲେ ବି ଏହା ଏକ ନବୀନ ନାଟ୍ୟତନ୍ତ୍ର ରୂପେ ବିକାଶ ଲାଭ କରି ବିଭିନ୍ନ ପରୀକ୍ଷା ନିରୀକ୍ଷା ଭିତରେ ସମାଜର ବିଭିନ୍ନ ସ୍ତରକୁ ବିସ୍ତାରିତ ହୋଇ ଶିକ୍ଷ ସଂସ୍ଥା ଆଦି କ୍ଷେତ୍ରରେ ନିଜର ପ୍ରଭୁତ୍ୱ ବିସ୍ତାର କରିଛି।

ଏହିଭଳି ସଂସ୍ଥାମାନଙ୍କ ମଧ୍ୟରେ ଚେକୋସ୍ଲୋଭେକିଆରେ "ୟୁନିମା" (UNIMA) ନାମକ ଅନ୍ତରାଷ୍ଟ୍ରୀୟ କଣ୍ଢେଇ ସଂସ୍ଥା ଅନ୍ୟତମ। ଏହା ବିଶ୍ୱର ବହୁ ପ୍ରକାରର କାଠ କଣ୍ଢେଇ ସଂସ୍ଥା ସହିତ ସମ୍ପର୍କ ରଖିଛି। କାଠ କଣ୍ଢେଇ ସଂସ୍ଥାଗୁଡ଼ିକୁ ବିଭିନ୍ନ ପ୍ରକାରରେ ନିର୍ଦ୍ଦେଶ ଦେଇ କଣ୍ଢେଇ ନାଚର ବିକାଶ ସାଧନ କରାଉଛି। ସେହିଭଳି ଇଟାଲୀର ଭଲିବଲାଠାରେ (Tipetu Stebile Doll Equile, "ଟିପେଟ୍ରୋ ଷ୍ଟେବିଲ୍ ଡଲ୍ ଇକ୍ୱିଲ୍", କଣ୍ଢେଇମାନଙ୍କର ଏକ ପ୍ରତିନିଧି ସଂଗ୍ରହାଳୟ ରହିଛି। ଏଇଠି କଣ୍ଢେଇମାନଙ୍କର ମାଧ୍ୟମରେ ଶିଶୁମାନଙ୍କୁ ଭାଷା, ଗଣିତ, ଇତିହାସ, ସାମାଜିକ ବିଜ୍ଞାନ, ସିଲାଇ, ଚିତ୍ରାଙ୍କନ, ସଙ୍ଗୀତ, ନୃତ୍ୟ ଆଦି ସମସ୍ତ ବିଷୟ ଶିକ୍ଷା ଦିଆଯାଏ। ଜର୍ମାନ୍ ଦେଶରେ ମଧ୍ୟ "ୟୁରାନିସ୍କା" ସଂସ୍ଥା କଣ୍ଢେଇ ନାଚର ବିକାଶ ଦିଗରେ ସତତ ପ୍ରୟାସୀ।

କଣ୍ଢେଇ ନାଚର ବିକାଶ ଦିଗରେ ୟୁରୋପ ଆଦି ଦେଶଗୁଡ଼ିକରେ ଯେଉଁ କେଇଜଣ ବ୍ୟକ୍ତି ବିଶେଷ ନିରନ୍ତର ଚେଷ୍ଟା କରି ଆସିଛନ୍ତି ସେମାନଙ୍କ ମଧ୍ୟରେ ଇଂଲଣ୍ଡର ଫିଲପୋଟ୍ ଓ ତାଙ୍କ ପତ୍ନୀ ଶ୍ରୀମତୀ ବାସଲେଟ୍ କେବଳ ଇଂଲଣ୍ଡରେ କାହିଁକି, କଣ୍ଢେଇ ଦୁନିଆରେ ସର୍ବଶ୍ରେଷ୍ଠ କଳାକାର। କାଠ କଣ୍ଢେଇ ଜଗତରେ ସେ "ପଞ୍ଚୋପଞ୍ଚ" ନାମରେ ଖ୍ୟାତ। ସେହିଭଳି ଜର୍ମାନ୍‌ର ଶ୍ରୀମତୀ ଏଲିଜାବେଥ୍ ସୁଲଜ୍‌ଙ୍କ କଥା ପୂର୍ବରୁ ସୂଚିତ କରାଯାଇଛି।

ତେବେ ପରମ୍ପରାକୁ ଛାଡ଼ି ୟୁରୋପୀୟ ଦେଶର କଣ୍ଢେଇ ଓ କଣ୍ଢେଇ ନାଚ ଜନମାନସ ପାଇଁ ଯେତେ ମନୋରଞ୍ଜକ ହୁଅନ୍ତୁ ନା କାହିଁକି, ତୁଳନାତ୍ମକ ଦୃଷ୍ଟିରୁ ଭାରତର ପାରମ୍ପରିକ କାଠ କଣ୍ଢେଇ ସେମାନଙ୍କ ଅପେକ୍ଷା ଅତ୍ୟନ୍ତ ମନୋରଞ୍ଜକ ଏବଂ ଜନମାନସକୁ ସ୍ପର୍ଶ କରିବା ପାଇଁ ଏଥିରେ ସର୍ବାଧିକ ଶକ୍ତି ରହିଛି। ଯେଣୁକରି ଭାରତୀୟ କାଠ କଣ୍ଢେଇ ଭାରତୀୟ ସଂସ୍କୃତିର ସଂସ୍ଥାପନ ନିମିତ୍ତ ହଜାର ବର୍ଷ ପୂର୍ବେ ଇଣ୍ଡୋନେସିଆ, ଜାଭା, ସୁମାତ୍ରା, ଶ୍ରୀଲଙ୍କା, ବ୍ରହ୍ମଦେଶ, ଚୀନ୍ ତଥା ଜାପାନ ଯାଇଥିଲା ଏବଂ ଏହା ଅତ୍ୟନ୍ତ ସରଳ ଢଙ୍ଗରେ ସେ ଦେଶଗୁଡ଼ିକର ଜନମାନସ ଉପରେ ଭାରତୀୟ ସଂସ୍କୃତିର ପ୍ରଭାବ ପ୍ରତିଷ୍ଠା କରି ପାରିଥିଲା। ତେବେ ବହୁ ବର୍ଷ ଧରି ଏହି ପରମ୍ପରାକୁ ଆମେ ଆମ ଦେଶରେ ଅବହେଳିତ କରିଥିଲେ ମଧ୍ୟ ଭାରତର କେତେକ ପ୍ରଦେଶରେ ଆଜି ଅଳ୍ପ ବହୁତେ ଏହା ଉଦ୍‌ଜୀବିତ ହୋଇ ରହିଛି। ଏହାର ପୁନଃ ବିକାଶ ପାଇଁ ଆଜି ଏ ଦେଶରେ ଯେଉଁଭଳି ପ୍ରୟାସ ହେବା କଥା ତାହା ହୋଇପାରି ନାହିଁ। ତଥାପି କାଠ କଣ୍ଢେଇକୁ ସାମାନ୍ୟ ଆଧୁନିକତାର ମୋଡ଼ ଦେଇ ଆଜି ମଧ୍ୟ କଲିକତାର Children's Little Theatre, Youth Puppet Theatre, ଅହମଦାବାଦର ଦର୍ପଣ ଏକାଡେମୀ, ଲକ୍ଷ୍ନୌର Literacy Centre ଓ ଅନ୍ୟ କେତେକ କଣ୍ଢେଇ ଯାତ୍ରା ଦଳ କଣ୍ଢେଇ ନାଚ ପ୍ରଦର୍ଶନ କରୁଛନ୍ତି।

ଏହାକୁ ଶିକ୍ଷା କ୍ଷେତ୍ରକୁ ବିଶେଷ ଭାବେ ବିସ୍ତାରିତ କରିବା ପାଇଁ ଯେଉଁମାନଙ୍କ ଅବଦାନ ଅବିସ୍ମରଣୀୟ ସେମାନଙ୍କ ମଧ୍ୟରେ ଶ୍ରୀ ଦେବୀଲାଲ୍ ସାମର୍ ଅନ୍ୟତମ। ସେ ରାଜସ୍ଥାନର ଉଦୟପୁରଠାରେ "ଲୋକ କଳା ମଣ୍ଡଳ" ଅନୁଷ୍ଠାନ ପ୍ରତିଷ୍ଠା କରି ପ୍ରାରମ୍ଭିକ ସ୍ତରରେ ଏହିଭଳି ଏକ ପ୍ରକଳ୍ପ ନେଇ ଯେତେବେଳେ ବିଶ୍ୱବିଦ୍ୟାଳୟ ଅନୁଦାନ କମିଶନ (U. G. C.)ରୁ ସାହାଯ୍ୟ ଭିକ୍ଷା କଲେ ତାଙ୍କୁ ନିରାଶ ହେବାକୁ ପଡ଼ିଲା। ଶେଷରେ ରାଜସ୍ଥାନର ଅତିରିକ୍ତ ଶିକ୍ଷା ସଞ୍ଚାଳକଙ୍କୁ ବିନତି କରି ସେ ସଫଳ ହୋଇଥିଲେ। ପ୍ରାରମ୍ଭରେ ଏହାର ପ୍ରାୟୋଗିକ ଉପଯୋଗିତା ସମ୍ବନ୍ଧରେ ଜାଣିବା ପାଇଁ ରାଜସ୍ଥାନର ଅତିରିକ୍ତ ଶିକ୍ଷା ସଞ୍ଚାଳକ ତାଙ୍କ ନିକଟକୁ ଅଳ୍ପ ସମୟ ପାଇଁ ଆଠ ଜଣ ଶିକ୍ଷକଙ୍କୁ ପ୍ରେରିତ କରିଥିଲେ। ସେମାନେ ଶୈକ୍ଷିକ କଣ୍ଢେଇ (Educational Puppet) ତିଆରିବା ପରେ ଶିକ୍ଷା କ୍ଷେତ୍ରରେ ଏହାର ପରୀକ୍ଷଣ ପାଇଁ ପ୍ରଥମେ ଏଭଳି କେତେକ ପିଲାଙ୍କୁ ନିଆଗଲା ଯେଉଁମାନେ ପାଠ ପଢ଼ାରେ ଥିଲେ ଅତି ଦୁର୍ବଳ ଓ ସ୍ୱଭାବରେ ଅତ୍ୟନ୍ତ ଦୁଷ୍ଟ ତଥା ଚଞ୍ଚଳ ମସ୍ତିଷ୍କ। ତେବେ କଣ୍ଢେଇ ପ୍ରସ୍ତୁତିଠାରୁ ଆରମ୍ଭ କରି ଏହାର ସଞ୍ଚାଳନ ଆଦି କାର୍ଯ୍ୟରେ ମନୋନିବେଶ କରିବା ଦ୍ୱାରା ସେମାନଙ୍କ ସ୍ୱଭାବରେ ପରିବର୍ତ୍ତନ ହେବା ସଙ୍ଗେ ସଙ୍ଗେ ସୃଜନାତ୍ମକ କାର୍ଯ୍ୟରେ ରୁଚି ବଢ଼ିବାରୁ ଶିକ୍ଷା ବିଭାଗ କଣ୍ଢେଇ କଳାକୁ ଶୈକ୍ଷିକ ଉପଯୋଗ ନିମିତ୍ତ ପଥ ପରିଷ୍କାର କରିଦେଲେ।

ଆଜି ଶୈକ୍ଷିକ କଣ୍ଢେଇ କଳା ସମେତ ଦେବୀଲାଲ୍ ସାମରଙ୍କ ଭାରତୀୟ ପାରମ୍ପରିକ କଣ୍ଢେଇ କଳା ସମଗ୍ର ବିଶ୍ୱରେ ଆଦୃତ ହୋଇ ପାରିଛି। ସେ କାଠ କଣ୍ଢେଇ ସମ୍ବନ୍ଧୀୟ ଅନ୍ତରାଷ୍ଟ୍ରୀୟ ସମାରୋହରେ ବହୁବାର ଭାରତୀୟ ପ୍ରତିନିଧି ରୂପେ ଯୋଗ ଦେବାର ସୁଯୋଗ ଲାଭ କରିଥିଲେ। ମୁଖ୍ୟତଃ ବୁଖାରେଷ୍ଟଠାରେ ହୋଇଥିବା ତୃତୀୟ ଅନ୍ତରାଷ୍ଟ୍ରୀୟ ସମାରୋହରେ ଯୋଗ ଦେଇ ସେ କାଠ କଣ୍ଢେଇର ବିଭିନ୍ନ ପ୍ରବୃତ୍ତି, ଗତିବିଧି ତଥା ଆଧୁନିକ ପ୍ରୟୋଗ ସମ୍ବନ୍ଧରେ ଅତି ନିକଟରୁ ଅଧ୍ୟୟନ କରିବାର ସୁଯୋଗ ପାଇଥିଲେ। ଏହି ସମାରୋହରେ ୩୦ଟି ଦେଶର ୪୨ଟି କଣ୍ଢେଇ ନାଚ ଦଳ ନିଜର ଏକହଜାର ପ୍ରତିନିଧିମାନଙ୍କ ସହିତ ଯୋଗ ଦେଇଥିଲେ। ଶୈକ୍ଷିକ ତଥା ଜନ ଶିକ୍ଷଣ କ୍ଷେତ୍ରରେ କଣ୍ଢେଇ କିପରି ପ୍ରଭାବ ପକାଇ ପାରେ ତାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ଶ୍ରୀ ସାମର ଏଇଠି ଦେଖିଥିଲେ। ଏହି ସମାରୋହରେ ବୁଲ୍‌ଗେରିଆର ଏକ ସଂସ୍ଥା ଅତ୍ୟନ୍ତ ପ୍ରଭାବଶାଳୀ କଳା ପ୍ରଦର୍ଶନ କରିଥିଲା; ଯେଉଁଥିରେ ଜଣେ କଳା ଅଧ୍ୟାପକ ମାନବୀ ରୂପରେ ନିଜ ପ୍ରକୋଷ୍ଠରେ ବସି ରଙ୍ଗ ମାଧ୍ୟମରେ ଚିତ୍ର ତିଆରି କରୁଥିଲେ। ତୁରନ୍ତ ତାଙ୍କରି ଟେବୁଲ୍ ଓ ଥାକ ଅଗଣାରୁ କଣ୍ଢେଇ ରୂପରେ [illegible] କୋଠରୀକୁ ପଶି ଆସିଥିଲେ। ସେମାନେ ପରସ୍ପର ମଧ୍ୟରେ କଳି [illegible] ଅଧ୍ୟାପକଙ୍କୁ କାମ କରାଇ ଦେଲେ ନାହିଁ। ଅଧ୍ୟାପକ ପ୍ରଥମେ ସେମାନଙ୍କ ଆଡ଼କୁ ବିଶେଷ ଧ୍ୟାନ ଦେଇ ନଥିଲେ, କିନ୍ତୁ ସାମାନ୍ୟ ବିଳମ୍ବରେ ସେ ନିଜ ସ୍ଥାନରୁ ଉଠି ବୁଝି ହେବା ପାଇଁ କହିଲେ। ଫଳ କିଛି ହେଲା ନାହିଁ। ସେ ସଙ୍ଗେ ସଙ୍ଗେ ଆଲମାରିରୁ କିଛି ଖେଳଣା କାଢ଼ି ପିଲାଙ୍କ ଆଗରେ ଥୋଇ ଦେଲେ। ପିଲାମାନେ କଳିଗୋଳ ଛାଡ଼ି କଣ୍ଢେଇ ଖେଳରେ ଲାଗିଗଲେ। ଅଧ୍ୟାପକ ନିଶ୍ଚିନ୍ତରେ ନିଜ କାର୍ଯ୍ୟ ସମ୍ପାଦନ କଲେ।

କଣ୍ଢେଇମାନଙ୍କ ଏଭଳି ପ୍ରଦର୍ଶନରେ ଦେବୀଲାଲ୍ ଖୁବ୍ ପ୍ରଭାବିତ ହୋଇଥିଲେ। ଏହା ବ୍ୟତୀତ ଏହି ସମ୍ମିଳନୀରେ ଶ୍ରୀ ସାମରଙ୍କ ଦ୍ୱାରା

ଅଭିନୀତ ପରମ୍ପରାଗତ କାଠ କଣ୍ଢେଇ ନାଚ ବିଶ୍ୱରେ ପ୍ରଥମ ପୁରସ୍କାର ଲାଭ କରି ପ୍ରମାଣିତ କରି ଦେଲା ଯେ କାଠ କଣ୍ଢେଇ ହିଁ କେବଳ କଣ୍ଢେଇ ଶାସ୍ତ୍ରକୁ ପାଳନ କରୁଛି ।

ଦେବୀଲାଲ୍ ସାମରଙ୍କ ପାରମ୍ପରିକ କଣ୍ଢେଇ ନାଚ ଇଂଲଣ୍ଡରେ ମଧ୍ୟ ପ୍ରଦର୍ଶିତ ହୋଇଥିଲା । ଏହି ପ୍ରଦର୍ଶନ ଦେଖି ବିଶ୍ୱ ବିଖ୍ୟାତ କଣ୍ଢେଇ ନାଚ ବିଶାରଦ ପଞ୍ଚୋପକ୍ ତାଙ୍କୁ ପତ୍ରରେ ଲେଖିଥିଲେ – "ଏଭଳି ମାର୍ମିକ ପ୍ରଦର୍ଶନୀ ମୁଁ କେବେ ଦେଖି ନଥିଲି । ଏହି କଣ୍ଢେଇଗୁଡ଼ିକର ଯେଉଁ ଜୀବନୀ ଶକ୍ତି ରହିଛି, ତାହା ଆଧୁନିକ କଣ୍ଢେଇ ଭିତରେ ଦୁର୍ଲଭ × × × ମୋତେ ଏହା କଥା ବଡ଼ ଆନନ୍ଦିତ କରିଛି କି ଆପଣଙ୍କ ପରମ୍ପରା ଏଯାଏଁ ପ୍ରାଣବନ୍ତ ରହିଛି, ଯେଉଁ କ୍ଷେତ୍ରରେ ଇଂଲଣ୍ଡରେ ଆମର 'ପଞ୍ଚ' ଏବଂ 'ଜୁଡ଼ି' ନାମକ କାଠ କଣ୍ଢେଇ ପରମ୍ପରା ଆଜି ସମ୍ପୂର୍ଣ୍ଣ ରୂପେ ନିଷ୍ପ୍ରାଣ ହୋଇ ଗଲାଣି । ଯେଉଁ ଦେଶରେ ଏଭଳି ପ୍ରାଣବନ୍ତ କାଠ କଣ୍ଢେଇର ପରମ୍ପରା ରହିଛି ସେଠାରେ ତ ଶିକ୍ଷାପକ କଣ୍ଢେଇଗୁଡ଼ିକର କାମ ଆମଠାରୁ ମଧ୍ୟ ସରଳ ହେବ ।"

## (୩) ଛଡ଼ କଣ୍ଢେଇ (Rod Puppet)

ଛଡ଼ କଣ୍ଢେଇ ସାଧାରଣତଃ ବାଉଁଶ ଛଡ଼ ବା (Rod) ସାହାଯ୍ୟରେ ପରିଚାଳିତ ହୋଇଥାଏ । ଏହି କଣ୍ଢେଇର ତଳୁ ଉପର ପର୍ଯ୍ୟନ୍ତ ଏକ ଲମ୍ବା ଓ ଶକ୍ତ ଛଡ଼ ଲାଗିଥାଏ ଓ ହାତଗୁଡ଼ିକରେ ସ୍ୱତନ୍ତ୍ର ଛଡ଼ ସଂଯୁକ୍ତ ହୋଇ ସଞ୍ଚାଳିତ ହୋଇଥାଏ । ଏହା ଅନ୍ୟାନ୍ୟ କଣ୍ଢେଇ ଅପେକ୍ଷା ବଡ଼ । ଭାରତ, ଜାପାନ୍ ଓ ୟୁରୋପର କେତେକ ଦେଶରେ ଏହାର ପ୍ରଚଳନ ଥିଲେ ମଧ୍ୟ ଏହା ଜାଭାରୁ ପ୍ରଥମେ ଉଦ୍ଭବ ହୋଇଥିଲା ବୋଲି କେତେକ ଯୁକ୍ତି ବାଢ଼ିଥାନ୍ତି ।

ଇଣ୍ଡୋନେସିଆରେ ଏହି କଣ୍ଢେଇ (Wayang Goleck) ୱେଙ୍ଗ୍ ଗୋଲେକ୍ ନାମରେ ଖ୍ୟାତ । ଦୀର୍ଘ ୯୦୦ ବର୍ଷ ଧରି ଏହା ବିଭିନ୍ନ ଆକୃତିରେ ଏଯାଏଁ ପ୍ରଚଳିତ ହୋଇ ଆସିଛି । ସେହିଭଳି ଇଟାଲୀୟ ଛଡ଼ କଣ୍ଢେଇକୁ (Orlando) ଓର୍‌ଲାଣ୍ଡୋ କହନ୍ତି । ଦୀର୍ଘ ୨୦୦ ବର୍ଷ ଧରି ଏହା ସେ ଦେଶରେ ସଞ୍ଚାଳିତ ହୋଇ ଆସୁଛି । ଆମ ଦେଶରେ କେବଳ ଓଡ଼ିଶା ଓ ବଙ୍ଗଳାରେ ଏଭଳି କଣ୍ଢେଇ ନାଚ ଦେଖିବାକୁ ମିଳେ । ଓଡ଼ିଶାର ଛଡ଼ କଣ୍ଢେଇ ୧୨ ଇଞ୍ଚରୁ ୧୮ ଇଞ୍ଚ ଉଚ୍ଚତା ବିଶିଷ୍ଟ ଏବଂ ଏହାର ସଙ୍ଗୀତଗୁଡ଼ିକ ଓଡ଼ିଶୀ ସଙ୍ଗୀତ ଭଳି; କିନ୍ତୁ ପଶ୍ଚିମ ବଙ୍ଗର ନଦୀଆ ଜିଲ୍ଲାରେ ୩ ଫୁଟ ୬ ଇଞ୍ଚରୁ ୪ ଫୁଟ ବିଶିଷ୍ଟ ଅର୍ଥାତ୍ ଜାପାନର (Bunraku) ବୁନ୍‌ରାକୁ ଭଳି ଆକୃତିର ଏହି ଛଡ଼ କଣ୍ଢେଇ ଦେଖିବାକୁ ମିଳେ । ଏ କଣ୍ଢେଇଗୁଡ଼ିକୁ ତିନି ଜଣରୁ ପାଞ୍ଚ ଜଣ ପର୍ଯ୍ୟନ୍ତ ସଞ୍ଚାଳନ କରିଥାନ୍ତି ।

## (୪) ଦସ୍ତାନା କଣ୍ଢେଇ (Glove Puppet)

ସୂତା କଣ୍ଢେଇଠାରୁ ଦସ୍ତାନା କଣ୍ଢେଇ ସଞ୍ଚାଳନ ଆହୁରି ସହଜ । ଆକାରରେ ଏହି କଣ୍ଢେଇ ଖୁବ୍ ଛୋଟ ଓ ସଞ୍ଚାଳକକୁ ଦସ୍ତାନା ଭିତରେ ହାତ ପୁରାଇ ମୁଖ୍ୟତଃ ତିନୋଟି ଆଙ୍ଗୁଳି ସାହାଯ୍ୟରେ ଚଳାଇବାକୁ ହୋଇଥାଏ । ଏହିଭଳି ଏକ ପ୍ରକାରର କଣ୍ଢେଇ ଇଂଲଣ୍ଡରେ ଜନ୍ମ ନେଇ 'ମିଷ୍ଟର ପଞ୍ଚ' ନାମରେ ଆଜକୁ ପ୍ରାୟତଃ ୩୦୦ ବର୍ଷ ପୂର୍ବେ ଲୋକପ୍ରିୟତା ଲାଭ କରିଥିଲା । ଆମ ଦେଶରେ କେରଳ, ଓଡ଼ିଶା, ଉତ୍ତର ପ୍ରଦେଶ ଓ ପଶ୍ଚିମ ବଙ୍ଗରେ ନିଜସ୍ୱ ଆଞ୍ଚଳିକ ଶୈଳୀରେ ଏହି ପରମ୍ପରା ବଞ୍ଚି ରହିଛି ।

କେରଳରେ ଏହି କଣ୍ଢେଇ ପ୍ରଦର୍ଶନକୁ 'କେଲିକେତୁ' କୁହନ୍ତି । ପଣ୍ଡିଆନ୍ ନାମକ ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀର ଲୋକମାନଙ୍କ ଦ୍ୱାରା ଏହା ସଞ୍ଚାଳିତ ହୁଏ । ରାମାୟଣ ଓ ମହାଭାରତର କଥାବସ୍ତୁ ଉପରେ ଆଧାରିତ ଏହି ନାଚ ଠିକ୍ 'କଥାକଳି' ଶୈଳୀରେ ପ୍ରଦର୍ଶିତ ହୋଇଥାଏ । ତେବେ ଉତ୍ତର ପ୍ରଦେଶରେ ଦସ୍ତାନା କଣ୍ଢେଇ ନାଚରେ ସଞ୍ଚାଳକ ସାମାଜିକ ସମସ୍ୟାଗୁଡ଼ିକ ଉଠାଇଲା ବେଳେ ଓଡ଼ିଶାର ଦସ୍ତାନା କଣ୍ଢେଇ ଚାଳକ ହାତରେ ଢୋଲକ ବଜାଇ ସଂଳାପଗୁଡ଼ିକୁ ଢୋଲକର ଥାପ ଅନୁଯାୟୀ ପ୍ରକାଶ କରିଥାଏ ।

ଦସ୍ତାନା କଣ୍ଢେଇ ସଞ୍ଚାଳନ ବିଶେଷ ଭାବେ ଶିକ୍ଷା କ୍ଷେତ୍ରରେ ଛୋଟ ଛୋଟ ଶିଶୁମାନଙ୍କ ପାଇଁ ଅତ୍ୟନ୍ତ ଉପଯୋଗୀ ହୋଇଥାଏ । ବ୍ୟାଖ୍ୟାନ ପଦ୍ଧତି ଦ୍ୱାରା ଶିଶୁମାନଙ୍କୁ ଅତ୍ୟନ୍ତ ଗମ୍ଭୀରତାର ବାତାବରଣ ମଧ୍ୟରେ ନପଢ଼ାଇ ଦସ୍ତାନା କଣ୍ଢେଇ ମାଧ୍ୟମରେ ଯଦି ମନୋରଞ୍ଜନାତ୍ମକ ଢଙ୍ଗରେ ପଢ଼ାଯିବ, ତେବେ ପ୍ରାରମ୍ଭରୁ ଅଧ୍ୟୟନ ପ୍ରତି ଶିଶୁର ରୁଚି ବଢ଼ିବ ।

ଏ କଥା ସତ୍ୟ ଯେ ଆମ ଦେଶରେ କଣ୍ଢେଇ ନାଚର ପରମ୍ପରା ବିଶ୍ୱର ସବୁ ଦେଶଠାରୁ ପୁରୁଣା କିନ୍ତୁ ଏହି ପରମ୍ପରାକୁ ବଞ୍ଚାଇ ରଖିବା ପାଇଁ ଯେଭଳି ସାର୍ବଜନୀନ ଚେଷ୍ଟା ହେବା କଥା ତାହା ହୋଇପାରି ନାହିଁ । ଆଜି ଏ ଦେଶର ବିଭିନ୍ନ ପ୍ରଦେଶରେ ଯେଉଁ କେଇଟି କଣ୍ଢେଇ ନାଚର ସ୍ଥାୟୀ ମଞ୍ଚ ରହିଛି ଓ ନାଟକ ଅଭିନୀତ ହେଉଛି ତହିଁର ପରିଚାଳକମାନେ ଅର୍ଥନୈତିକ ସମସ୍ୟା ଭିତରେ ବୋହଲି ପଡ଼ିଛନ୍ତି । ଯେଉଁ କେଇଟି କଣ୍ଢେଇ ନାଚ ଦଳ ବିଭିନ୍ନ ସ୍ଥାନରେ ଭ୍ରମଣ ପୂର୍ବକ କଳା ପ୍ରଦର୍ଶନ କରୁଛନ୍ତି ସେମାନଙ୍କୁ ମଧ୍ୟ ଆଶାଜନକ ସରକାରୀ ଅନୁଦାନ ଓ ସାର୍ବଜନୀନ ସହାନୁଭୂତି ମିଳୁ ନଥିବା ପରିଲକ୍ଷିତ ହେଉଛି । ତେଣୁ ଏହାର ବିକାଶ ଦିଗରେ ଯଦି ସମୂହ ଚେଷ୍ଟା ନହୁଏ ତେବେ ଇଂଲଣ୍ଡର 'ପଞ୍ଚ' ଏବଂ 'ଜୁଡ଼ି' ଭଳି ଏ ଦେଶର ବର୍ଷ ବର୍ଷର ପରମ୍ପରା ଦିନେ ନଷ୍ଟ ହୋଇଯିବ ।

---

ସନ୍ଦର୍ଭ :


1. Contemporary Hungarian Puppet Theatre, Corvina Press.
2. Frieda Gates, Easy to make Puppet, Heavy House Publishers, 20 Water side Plaza, New York-10010.
3. The Arts in India, CCRT, New Delhi.
4. କଥା କଥନ୍ କି ଶୈଲିୟାଁ, CCRT, New Delhi.
5. ପୁତ୍‌ଲୀ ନାଟକ, CCRT, New Delhi.
6. ଡ: ନରେନ୍ଦ୍ରକୁମାର, ଦୃଶ୍ୟ ଶ୍ରାବ୍ୟ ସାମଗ୍ରୀ କେ ରୂପମେଁ କାଠ୍ ପୁତ୍‌ଲୀ କା ପ୍ରୟୋଗ, ପ୍ରାଇମେରୀ ଶିକ୍ଷକ୍, ଜୁଲାଇ ୧୯୮୩, NCERT, New Delhi.
7. ଦେବୀଲାଲ୍ ସାମର୍, କାଠ୍ ପୁତ୍‌ଲୀ କଲା ଔର ଶିକ୍ଷା, ଭାରତୀୟ ଲୋକ୍ କଲା ମଣ୍ଡଲ୍, ଉଦୟପୁର, ରାଜସ୍ଥାନ
8. ଦୈନିକ୍ ହିନ୍ଦୁସ୍ତାନ୍, ୩/୧/୧୯୮୬ ।
9. Speech of Shri Jiban Pani at CCRT.


---

ସରସ୍ୱତୀ ବିହାର,
ଟରଭା, ବଲାଙ୍ଗିର–୭୬୭ ୦୧୬

# ଅନ୍ନରୁ ଜୀବନ ଆସେ

ପ୍ରହରାଜ ସତ୍ୟନାରାୟଣ ନନ୍ଦ

ଅନ୍ନରୁ ଜୀବନ ଆସେ, ଅନ୍ନରୁ ମରଣ,
ପଲକରେ ଅଦ୍ଭୁତ ଅନ୍ନ ଅଗ୍ନିଷ୍ଠ ଚାଉଳ/ପକ୍ଷୀ ପରି ଉଡିଯାଏ
ନୀଳ ଧୂଆଁ ଡାଳେ ଡାଳେ ପାରିହୋଇ ନୀଳ ସରୋବର,
ମେଘର ଦେଶରୁ ଫେରେ ନୂଆ ରଙ୍ଗ, କର୍ମ ଇନ୍ଦ୍ରାହାର,
ବର୍ଣ୍ଣପରି ଜଳଧାର ଉତ୍ସ ତଃ ପ୍ରକୃତି ମନର । ॥ ୫

ସାତ୍ୱା ଘାସରଙ୍ଗା ପୃଥ୍ୱୀ, ଶ୍ୟାମଳ କୋମଳ,
ଶିଶୁର ଚିକ୍କଣ ଚର୍ମ ତାଳୁକାରେ ଅଗ୍ନି ଟଳମଳ,
ତମରି ବାହୁରେ ବନ୍ଧା ମାର୍ଗଣାର ଧାନପେନ୍ଥା ଶାଢୀ,
ତମେ ଦେଖିହୋଇ ନାହିଁ ଏ ଆକାଶ ଡାକିଚି ସେପରି,
ଶ୍ୟାମଳ କୋମଳ ତୃଣ, କ୍ଷଣ କ୍ଷଣ ହମ୍ବାରଡି ଛାଡି
ଗେହ୍ଲା ହୁଏ ମଥା ପାଖେ ନାଚି ନାଚି କଅଁଳ ବାଛୁରୀ,
କଦଳୀ ପତ୍ରରେ କାପ୍ତା ତା'ଚମ୍ପୁରେ ପୁଳାଏ ଆକାଶ,
ଏମିତି ରଖିଚି ପାଦ ନିଜେ ଅବା ବସାଇଚି ପାଶ । ॥ ୧୩

କାହିଁକି ଲୁଚୁଚ ତୁମେ ବାରନ୍ଦାରେ, ସିଡିରେ, ଛାତରେ
ହାତରେ ନାଇଁତ କାମ, ଦସ୍ତାବିଜ୍ ହାତ ପାଆନ୍ତାରେ,
କାହିଁକି ଲୁଚୁଚ ତୁମେ ଅଲଗା ରଖି ପୋଡା ଦୁଇପଟ
ତୁମେ କ'ଣ ସବୁଦିନ ଲୁଚିବାରେ ରଖିବ କପଟ,
ସିନ୍ଦୁର ନାହିଁକି ନାହିଁ ଅମର ବା ବାଉଁଶ ଢୁଲିଆ
ଅଥଚ ସମସ୍ତ ପ୍ରେମ ଦୁଇପଦେ ହୋଇଅଛି ଠିଆ । ॥ ୧୯

ତୁମେ ଉଲଗ୍ନ ନୀଳ କୋମଳ ପ୍ରାନ୍ତର
ନୀଳ ନୀଳ ନିର୍ଜନତା ପ୍ରତ୍ୟୟର ନୀଳ ହସ୍ତ ଧର
କି ନୀଳ ଚଞ୍ଚଳ ଆଖି ଦେଖୁଚି କି ତମାଳ ପତ୍ରରେ
ନୀଳ ପାହାଡର ନକ୍ସା ଆକାଶର ରଙ୍ଗୀ କାହିଁଣରେ । ॥ ୨୩

ମୋ ଦେହ କେମିତି ଲାଗେ ମୋତେ ଜନ୍ମା ତୁମେ ବୁଝି ନାହିଁ
ମୋ ଦେହ କେମିତି ଲାଗେ ପବନରେ ତୁମେ ଛୁଇଁ ନାହିଁ,
ମୋ ଦେହ କେମିତି ଲାଗେ ଅନ୍ୟଙ୍କୁ ଓ ଅନ୍ୟାନ୍ୟମାନଙ୍କୁ
ମୋ ଦେହର ଆକର୍ଷଣ ଛୁଇଁଦିଏ ବୃକ୍ଷକୁ, ଲତାକୁ । ॥ ୨୭

ତୁମେ ଉଡିପାର ନାହିଁ ସେଥିପାଇଁ ଅଣ୍ଟା ସିଧା କରି
ଗାବୁଚ ସାମ୍ନାରେ ଛତ, ପଛରେ ପାଚେରୀ,
ସବୁ ହିତ ପରି ତାଳ ବାଆଁରେ ଓ ଡାହାଣ ଆଡକୁ
ବାଉଁଶ କଣିର ନୀଳ ଚଂଚଳ କିଆରୀ
ତୁମେ ଅବା ନିଃଶବ୍ଦରେ ଝର/ଅଜଣା ପ୍ରପାତ ପରି,
ତୁମ ଶ୍ୱାସ ଧାନ ଶିଂଷା ପରି ଏଣେତେଣେ ଚିତା ଅଙ୍କେ
ପବନରେ ଖେଳାଏ ଉର୍ଚିଗୀ । ॥ ୩୪

ଶସ୍ୟ ନା ଶସ୍ତ ନା ଶକ୍ତି କିଏ ସେ ନିଜର
ତୁମେ ନିଜେ ଯୋଡି ରଖ ଘର ଓ ବାହାର
ଅନ୍ନରୁ ଜୀବନ ଧ୍ୱନି ଅକାର, ଉକାର
ମୁଖା ବିନ୍ଦୁ ପରି 'ଶୂନ୍ୟ' ହୃଦୟରେ ନାହିଁ ହାହାକାର । ॥ ୩୮

ଉରଣ, ଉରଣ ସୁନା ବାସ୍ନାଧାନ, ଶିଙ୍ଗାରହାରର
ଅଣୁଲା ଅଣୁଲା ବାସ୍ନାମାଣରେ ତା' କଳା କଳା କଉଡିର ତୋରା
ତମେ ଦେବୀ ହେଲ କେବେ ପାଟ ପିନ୍ଧି ଅନୁଚ୍ଚ ବେଦୀରେ
ଲାଜରେ ପଡିଲ ନଇଁ ହାତେ ରଖି ସମ୍ପଦ ପସରା । ॥ ୪୨

ନୀଳ ମାର୍ଗଣାର ଖରା, ଢଳଢଳ ଆଖିର ଇଶାରା
ପତ୍ରରେ, ଫୁଲରେ ତୁମ ଶ୍ୟାମକୁଞ୍ଜ ଚିକ୍କଣ ଘାଘରା ।
ଦର୍ପଣ ସାମ୍ନାରେ ଦେହ, ଶସ୍ୟଦେବୀ, ହରପ୍ପା ପଥର,
କାନ୍ଥରେ ମୁଖର ତୁମେ, ମହାକାବ୍ୟ ଅପୂର୍ଣ୍ଣ ଭାସ୍କର । ॥ ୪୬

ପୁପ, ମଣ୍ଡା, କ୍ଷୀରୀ ଆଉ ଛେନା ପଣା ଥାଳିରେ ପରଶି
ସାମ୍ନାରେ ବସିଲେ ଜଣେ ଆଉ ଜଣେ ପାରେ ନାହିଁ ଲୁଚି ।
ଦେହର ଲାବଣ୍ୟ ପରି ଶସ୍ୟଶସ୍ତ ତା' ଭିତରେ କିଏ,
କ୍ଷୁଧା ନା ତୃଷା ନା କ୍ଳାନ୍ତି ପାପୁଲିରେ ଅନ୍ନ ଭରିଦିଏ ।

ଜୀବନ, ଜୀବନ ଚେଷ୍ଟା ଭରିବାକୁ ସମୟର ଥଳି
ମକୁ ଚିକ୍କଣ ଦିଶେ ଲହୁଣୀ ଓ କାଜୁ, ସରପୁଲି । ॥ ୫୦

ତୁମେ ଭରିଦେଲ ଅଳି, ଅଳରୁ ଜୀବନ
ମୁଁ ବୁଝିନି କିଏ ହେଲା ଅକ୍ଷି, କାନ, ପ୍ରବୃ ବୃନ୍ଦାବନ,
ତୁମେ ଗଢ଼ିଦେଲ ଯିନା କଳ କବ୍‌ଜା ବାହାରୁ ଦେଖିଲେ
ପ୍ରଥମ ଜନମୀ ପିତା, ଦ୍ୱିତୀୟ ଖାଦ୍ୟରେ,
ଶମୁକାରେ ମୁକ୍ତା ପରି ଗର୍ଭରେ କେସର
ଫୁଟିଥିଲା ଦିନୁଦିନ ଚିତ୍ର ପରି କଳା ସୁକୋମଳ । ॥ ୫୮

ପରେ ଅଦ୍ଭୁତ ମୁକ୍ତ: ତିଳ ଓ ତଣ୍ଡୁଳ
ଶସ୍ୟ ହୋଇ ଫେରିଆସେ ମାଟିକୁ ଓ
ଶୀ ଝିଲକୁ ନୀଳ ତୃଣାଙ୍କୁର,
କଣ୍ଠକୁ ପଦ୍ମୁଁ ନାଦ,
ଅନ୍ତରସ ହୃଦୟ ଗୁହାକୁ
ଅସ୍ଥି ଅସେ ଅସ୍ଥିକୁ ଓ
ମାଂସ ଅସେ ମାଂସ ପିଣ୍ଡୁଳାକୁ,
କେ ରାଜା ଟାଳିପାରେ ନାହିଁ
ସୁଧାରେ ବା ଷୋଉରେ ପୁଷ୍ଟରେ... । ॥ ୬୬

ଜଳ ବକ୍‌ଜା ପରି ଦେହ ପବନରେ କଦଳୀ ବାହୁଙ୍ଗା
ଥିରୁ ଥିରୁ ଝରୁଥାଏ ବିଚିତ୍ର ପୋଷାକ,
ଦେହରେ ଗୁମାଲ ଖଣ୍ଡେ ପାଦପାଏ ଢାଙ୍କିଥିବା କୁଶ
ଦଶ ପାଏ ବେଦନା ଓ ଲୋମରନ୍ଧ୍ରେ ଅଣୁ ଅଣୁ ସ୍ୱେଦ,
ଶରୀର ଅଧ୍ୟରେ ପୃଥ୍ୱୀ ଶୀର୍ଷରେ ଆକାଶ । ॥ ୭୨
ମର୍ଗଶର ନୀଳ ଖରା, ତଳତଳ ପାରଦ ବଗରା,
ପତ୍ରରେ, ଫୁଲରେ ତୁମ ଶ୍ୟାମକୁଞ୍ଜ ଚିକ୍‌କଣ ଘାଘରା । ॥ ୭୪

ମୁଁ କି ଦେହ, ଅଥବା ଦେହର ଜ୍ଞାନ, ଦେହ ପରିବେଶ
ଅକ୍ଷିରେ ହୁଏନା ମାପି ଅବଶିଷ୍ଟ ଦିନର ଆୟୁଷ ।
ମେଦ ନୁହେଁ, ମାଂସ ନୁହେଁ, ଚର୍ମ ବା କଲୁଷ
ଦେହପରୁ ଭିନ୍ନ କିଏ, ନାସାପୁଟେ ଲୋଭ ହୁଏ ଶୋଷ । ॥ ୭୮

ଶୂନ୍ୟରେ ବାନ୍ଧିଛି ନଗା, ଶୂନ୍ୟରେ ଝୁଲୁଛି
ଶୂନ୍ୟର ପଞ୍ଜୁରୀ ଏକ ତା' ଭିତରେ କେଉଁ ସୁନା ପକ୍ଷୀ,
ମୋଘର, ମୋ' ପରିବାର, ମୋ' ଛାୟା ସୁନ୍ଦର
ମୋ' ଶରୀର 'ମୁଁ' ନୁହେଁ ଅନିତ୍ୟ ସହର । ॥ ୮୨

॥ ଆହା ମୋ' ଶରୀର ॥

ଭାସୁରକ ନାମେ ଥିଲା ସିଂହଟିଏ ପ୍ରତାପୀ ପ୍ରବଳ,
ଶିକାର ଅଣିଲା ଦିନେ, ତ୍ରସ୍ତ ପଶୁକୁଳ
ସୁଝାସ କରେନ ପ୍ରଭୁ, ଯେନ ଅବିକଳ
ଅଳିରେ ସଜାଡ଼ା ଖାଦ୍ୟ ଭଳି ଏକ ଖାଦକ ତୁମର,
ଭୋକରେ କରନି ନଷ୍ଟ ମୃଗ, ଶଶା, ବରାହ ନିକର,
ଦିନ ପ୍ରତି ଏକ ପଶୁ ହୋଇବ ହାଜର,
ତୁମ ତୃପ୍ତ କ୍ଷୁଧାର ସଙ୍କେତ
ପଠାଇବା ଅସୁ ଦ୍ୱାରେ ହିମ ସକାଳରେ ।
ହେ ମହାମହିମ କୃପାକର ହେ ଏଥର,
ଶାନ୍ତିରେ ରହିବୁ ଆମେ ତୁମ ପ୍ରଜାକୁଳ । ॥ ୯୦

ସମ୍ମତ ହୋଇଲେ ରାଜା ଭାସୁରକ ଶାନ୍ତି ପଶୁକୁଳ
ସ୍ଥିର କଲେ ଦିନ ବାର କାହା ପାଳି କେବେ,
ସକାଳୁ ଠେକୁଆଟିଏ ସରୁ ବଣ ବାଟେ
ଭୀରୁ ପାଦ ବଢ଼ାଇଲା ଭୟେ ଥରହର,
କିଛିଦୂର ଯିବା ପରେ ସୁଗଭୀର କୂଅ ପାଖେ ରହି
ତଳକୁ ଚାହିଁଲା ଛାଇ ସୁନ୍ଦର ଦିଶଇ । ॥ ୯୮

ଛାଇ ଦେଖୁ ଦେଖୁ ଗଲା ବେଳ ବିତି ସିଂହ ଗରଗର
ଉତ୍‌କେଶର ଭାବେ ପୁଣି କରିବ ଶିକାର । ॥ ୧୦୦

ଏମନ୍ତ ସମୟେ ଶଶା ଠିଆ ହେଲା ଯୋଡ଼ି ରଖି ହାତ
ଏମିତି ବିପଦ ପ୍ରଭୁ ଉଦ୍ଧରିବ ଆମକୁ କେମିତି
ଗାଧ୍ରା ଓଗାଳିଲା ସିଂହ ତୁମଠାରୁ ବେଶୀ ଭୟଙ୍କର
ସିଂହ ହୁଙ୍କାରିଲା ଯିବି କରିବି ମୁଁ ଅବଶ୍ୟ ସମର । ॥ ୧୦୪

"ଦନ୍ତହୀନ ସର୍ପ, ରାଜା ବାସ୍ତୁହୀନ, ହାତୀ ମଦହୀନ
ହୁଅନ୍ତି ନିରସ୍ତ୍ର କିନ୍ତୁ ଦୁର୍ଗବାସୀ ସିଂହ ବଳବାନ
ଦୁର୍ଗରୁ ବାହାରି ପଥ ଅବରୋଧ କଲା ସେ ଆମର
ପଶୁକୁଳ ଅରଣ୍ୟର ସାହା ଲୋଡ଼େ, ହେ ନୃପପ୍ରବର ।" ॥ ୧୦୮

"ଦୁର୍ଗବାସୀ ଶତ୍ରୁ ଯଦି ବଳବାନ୍ ମୁଁ ନୁହେଁ ଅଥର୍ବ
ତୁ ଯଦି ଦେଖାଉ ତାହା ଭାଙ୍ଗିଦେବି ଯେତେ ତା'ର ଗର୍ବ ।"
ସିଂହ ପଛେ ପଛେ ଶଶା ମୃଗ ହେଟା ଶୃଗାଳ ବରାହ
"ଦେଖ, ଦୁର୍ଗ ଭୟଙ୍କର ତା' ଭିତରେ ଶତ୍ରୁ ଭୟାବହ",
କହିଲା ଶଶକ, "ପ୍ରଭୁ ଦୁର୍ଗ ତଳେ ପାଣିର କୋଠରୀ
ଶୋଇଛି ପାଖଣ୍ଡ ପଶୁ କ୍ଷୁଦ୍ର ନୁହେଁ ଉତ୍‌କେଶରୀ ।" ॥ ୧୧୪

କୂଅ କାନ୍ଥିଗରେ ସିଂହ ବେକ ଥୋଇ କଲାକ ଗର୍ଜନ
ଶତ୍ରୁ ପ୍ରତି ଗୀମରଡ଼ି ଦେଖିଲା ତା' ଛାୟା ଭାସମାନ,
ବିଭ୍ରମ ତାଣ୍ଡବ ରଚି ଲମ୍ଫ ଦେଲା ବ୍ୟଗ୍ର ପାଦ ତୋଳି
ନାହିଁ ତ ସିଂହ ଏ ଦୁର୍ଗେ ଅହା ମୋର ଦେହ ମୁଁ କି କଲି ।"
॥ ୧୧୮

ବିୟୋଗାନ୍ତ ନାଟକର ଶେଷଦୃଶ୍ୟ ଜ୍ୱା' ପାଇଁ ସମ୍ପଦ
ନାଚିଲେ ଉଲ୍ଲାସେ ପଶୁ ରାଜା ଆମ ସତରେ ଶ୍ୱାପଦ ।
ଦେହର ବିଘାତ ଶେଷ ମୋହାନ୍ଧ, ମୂର୍ଦ୍ଧାର
ପାଣିରେ ଭାସିବାବେଳେ ମଉଛବ ମହୁମାଛିଙ୍କର । ॥ ୧୨୨

ମୋ ଘର ମୋ ପରିବାର ମୋ ଛତ୍ର ସୁନ୍ଦର
ମୋ ଦେହ ତ ମୁଁ ନୁହେଁ ବାଙ୍କୁଣି ଉହାର,
ଅଳରୁ ଜୀବନ ଅସେ, ବାସ୍ନା ରାଶି ରାଶି
ମେଘରୁ ଓହ୍ଲାଏ ବିନ୍ଦୁ ଭୂଇଁର ବତିଶା,
ମଳାବାନ୍ଧି ଶୋଇଥିବା ସାବ୍‌କା ସାପ ପରି ଏ ପୃଥିବୀ
ତୁମେ ଜନ୍ମମା ଜାଣିନାହିଁ ବାରନ୍ଦାରେ ବସିଛନ୍ତି କବି । ॥ ୧୨୮

ସେ ପାଇଁ ପବିତ୍ର ପାତ୍ର ଭରିଯାଏ ଢାଙ୍କରି ରକ୍ତରେ,
ସେ ପାଇଁ କାସ୍ତାର ଶିଶୁ ଡେଇଁପଡ଼େ ବୋଉର କୋଳରେ,
ସେ ପାଇଁ ବଣାକୁ ବାନ୍ଧି ଗଗାପାଦେ ଚତୁର ଗୋପାଳ
ପିଣ୍ଡାରୁ ଶୁଣାଏ ବଂଶୀ, କୁଞ୍ଜରେ ଝଙ୍କାର । ॥ ୧୩୨

ତାଳରୁ ଓହଳେ ଲତା ତାଳରୁ କଳମା
ଅଳ ହୁଏ ମହୁଲଣି ପାଚନର ବିଧି ଅନୁକ୍ରମି,
ଶଯ୍ୟ ନା ଶସ୍ତ ନା ଶାନ୍ତି କିଏ ସେ ନିକର
ତୁମେ ଏକା ପୋଟିପାର ଘର ଓ ବାହାର । ॥ ୧୩୬

ମାର୍ଗଶିର ନୀଳ ଶରା ତୁଲ୍ ପରି ତୁଲନ୍ତା ଅୟତ
ପତ୍ରରେ, ଫୁଲରେ ତୁମ ତାମ୍ବାଳରା ଛୋଟ ଦନ୍ତ ଗତ ।

ଦେହରୁ ସୁନ୍ଦର ଶ୍ୱାସ ଏମିତି ସେ କେବେ ଅମୃହରା
ହେବା ପାଇଁ ଇଛା ହୁଏ ବୁଲିବାକୁ ଅନେକ ବଖରା,
କମାରଶାଳର ବେଦୀ, କେଉଁଠି ସେ ପିତୁଳି ପାହାର
ମୁହୂର୍ତ୍ତ ଗଢିବା ପାଇଁ ମୁହୂର୍ତ୍ତର ନିହଣ ଦୁର୍ବାର । ॥ ୧୪୨

*[ଦୀର୍ଘ କବିତା "ହିରଣ୍ୟୟେନ ସବିତା ରଥେନା"ର ପ୍ରଥମ ଅଧ୍ୟାୟ—୧]*




ଭବାନୀପାଟଣାରେ ୧୯୯୦ ଉତ୍କଳ ଦିବସ ସମାରୋହ ଉପଲକ୍ଷେ ସାଂସ୍କୃତିକ କାର୍ଯ୍ୟକ୍ରମ

● ସୁନ୍ଦରେ ତ୍ରୁଟିର....

## ରମ୍ୟାଣୀ ବୀକ୍ଷା :

# ହୁମାର ବିମଳେଶ୍ୱର

ଶ୍ରୀ ବିରଞ୍ଚି ମିଶ୍ର

ହୁମା ଏକ କ୍ଷୁଦ୍ର ଜନପଦ। ସମ୍ବଲପୁରଠାରୁ ପ୍ରାୟ ୩୦ କିଲୋମିଟର ଦକ୍ଷିଣରେ ମହାନଦୀ କୂଳରେ ଏହା ଅବସ୍ଥିତ। ଚୌହାଣ ରାଜତ୍ୱ କାଳରେ ଖ୍ରୀ: ସପ୍ତଦଶ ଶତାବ୍ଦୀର ଷଷ୍ଠ ଦଶକରେ ଏଠାରେ ନିର୍ମିତ ହୋଇଥିଲା ବିମଳେଶ୍ୱର ଶିବଙ୍କ ମନ୍ଦିର ରାଜା ବଳିଆର ସିଂଙ୍କ ଆଦେଶରେ। ଅନାମଧେୟ ଓ ଅଖ୍ୟାତ ଗ୍ରାମ 'ହୁମା' ସମଗ୍ର ପଶ୍ଚିମ ଓଡ଼ିଶାରେ ପ୍ରଧାନତଃ ପ୍ରସିଦ୍ଧି ଲାଭ କରିଛି ଏକ ଶୈବ କ୍ଷେତ୍ର ରୂପେ। ସମ୍ବଲପୁର ଜିଲ୍ଲାରେ ନିର୍ମିତ ଅଷ୍ଟ ଶମ୍ଭୁ ମନ୍ଦିରମାନଙ୍କ ମଧ୍ୟରେ ହୁମାର ବିମଳେଶ୍ୱର ଶିବଙ୍କ ସ୍ଥାନ ଶୀର୍ଷରେ। ଅନ୍ୟ ସାତ ଶମ୍ଭୁ ହେଲେ ଗାଇସମାର ବାଲୁଙ୍କେଶ୍ୱର, ସୋରଣାର ସ୍ୱପ୍ନେଶ୍ୱର, ଦେଓଗାଁର ବିଶ୍ୱନାଥ, ସରଣ୍ଡାର ବିଶ୍ୱେଶ୍ୱର, ଅମ୍ବାଭୋନାର କେଦାରନାଥ, ନୀଲଜୀର ନୀଳକଣ୍ଠେଶ୍ୱର ଓ ମାନେଶ୍ୱରରେ ପ୍ରତିଷ୍ଠିତ ମାନେଶ୍ୱର।

ହୁମାଠାରେ କପିଳେଶ୍ୱର ଶିବଙ୍କ ଆବିର୍ଭାବ ସମ୍ପର୍କରେ ଅନେକ କିମ୍ବଦନ୍ତୀ ପ୍ରଚଳିତ ଅଛି। ସମ୍ବଲପୁରର ପ୍ରଥମ ଚୌହାଣ ରାଜା ବଳରାମ ଦେବଙ୍କ ରାଜତ୍ୱ କାଳରେ ହୁମାଠାରେ ଏକ ଦରିଦ୍ର ଗାଈ ଜଗୁଆଳ ମହାନଦୀ କୂଳକୁ ଗାଈ ଚରାଇବାକୁ ଯାଉଥିଲା। ତା' ଗୋଠରେ ଏକ କାଳି ଗାଈ ପ୍ରତିଦିନ ନଦୀ ଗର୍ଭସ୍ଥ ଏକ ପ୍ରସ୍ତର ସଙ୍କୁଳ ସ୍ଥାନକୁ ଯାଉଥିଲା ଓ କିଛି ସମୟ ପରେ ଫେରୁଥିଲା। ଏହା ଲକ୍ଷ୍ୟ କରି ଦିନେ କୌତୂହଳବଶତଃ ଉକ୍ତ ଗାଈ ଜଗୁଆଳ କାଳି ଗାଈର ପଛେ ପଛେ ଯାଇ ଦେଖିଲା ଯେ ଗାଈଟି ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲା କ୍ଷଣି ତା'ର ପହ୍ନାରୁ ସ୍ୱତଃ କ୍ଷୀର ଧାର ଝରି ଆସୁଛି। ଏହା ଦେଖି ସରଳ ଗାଈଆଳ ମନରେ ଭକ୍ତି ଭାବର ଉଦ୍ରେକ ହେଲା ଓ ସେଠାରେ ସ୍ୱୟଂ ଭୂଲିଙ୍ଗ ଅବିର୍ଭୂତ ହୋଇଛନ୍ତି ଭାବି ପ୍ରତିଦିନ ପୂଜା ଆରାଧନା କରିବାକୁ ଲାଗିଲା।

ମହାନଦୀର ପ୍ରସ୍ତର ଶଯ୍ୟାରେ ଭଗବାନ ଶିବଶମ୍ଭୁଙ୍କ ସ୍ୱୟଂ ଆବିର୍ଭାବ ସମାଦରେ ସ୍ୱରିଆଡ଼େ ପ୍ରସ୍ରାରିତ ହେଲା ଓ ପ୍ରତିଦିନ ଦର୍ଶନାର୍ଥୀ ଯାତ୍ରୀଙ୍କ ସଂଖ୍ୟା ବଢ଼ିବାକୁ ଲାଗିଲା। ରାଜା ବଳରାମ ଦେବ ମଧ୍ୟ ଏ ଖବର ଶୁଣି ଦର୍ଶନ କରିବାକୁ ଆସିଲେ ଏବଂ ଭଗବାନ ଶିବଙ୍କ ଚିରକାଳ ସେବା ପୂଜା ନିମନ୍ତେ ହୁମା ସହିତ ସାତ ଖଣ୍ଡ ଗ୍ରାମ ପ୍ରଦାନ କଲେ। ଏହି ସବୁ ଗ୍ରାମ ମହାନଦୀ ଗର୍ଭରେ ଏକ କ୍ଷୁଦ୍ର ଦ୍ୱୀପ ମଧ୍ୟରେ ଅବସ୍ଥିତ। ଚୌହାଣ ବଂଶର ପଞ୍ଚମ ରାଜା ବଳିଆର ସିଂ ଖ୍ରୀ: ସପ୍ତଦଶ ଶତାବ୍ଦୀର ଷଷ୍ଠ ଦଶକରେ ଏଠାରେ ଏକ ସୁନ୍ଦର ମନ୍ଦିର ନିର୍ମାଣ କରାଇଲେ।

ଅନ୍ୟ ଏକ କିମ୍ବଦନ୍ତୀରୁ ଜଣାଯାଏ ଯେ ଜନୈକ ଗଉଡ଼ ପ୍ରତିଦିନ ମହାନଦୀ କୂଳରେ ଥିବା ଉନ୍ନତ ଶିଳାଖଣ୍ଡ ଉପରେ ଏକ କ୍ଷୀର ଭାଣ୍ଡ ଅର୍ପଣ କରିବା କ୍ଷଣି ସଙ୍ଗେ ସଙ୍ଗେ ଉକ୍ତ ଶିଳାଖଣ୍ଡ ସେହି କ୍ଷୀର ସବୁ ପାନକରି ଯାଉଥିଲା। ଏହି ଆଶ୍ଚର୍ଯ୍ୟଜନକ ଘଟଣା କ୍ରମେ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କଲା ଓ ଧୀରେ ଧୀରେ ହୁମା ଏକ ବିଖ୍ୟାତ ଶୈବ କ୍ଷେତ୍ର ରୂପେ ପରିଚିତ ହେଲା ଓ ଶେଷରେ ବିମଳେଶ୍ୱର ଶିବଙ୍କ ମନ୍ଦିର ନିର୍ମିତ ହେଲା। ଏହା ଏତେ ବେଶୀ ଖ୍ୟାତିଲାଭ କରିଥିଲା ଯେ ଚୌହାଣ ରାଜତ୍ୱ ସମ୍ପର୍କରେ ଆଲୋକପାତ କରୁଥିବା 'ଜୟ ଚନ୍ଦ୍ରିକା' କାବ୍ୟର ଲେଖକ ପ୍ରହଲ୍ଲାଦ ଦୁବେ ସମଗ୍ର ସମ୍ବଲପୁର ଅଞ୍ଚଳକୁ ହୁମା ରାଜ୍ୟ ବୋଲି ଅଭିହିତ କରିଛନ୍ତି। ଏ ଅଞ୍ଚଳର କୁମାରୀ କନ୍ୟାମାନଙ୍କର ହୁମୋ ଖେଳ ଯୋଗୁ ମଧ୍ୟ ସମ୍ବଲପୁରକୁ ହୁମା ଦେଶ ବୋଲି ବର୍ଣ୍ଣନା କରାଯାଏ।

ପ୍ରଚଳିତ କିମ୍ବଦନ୍ତୀମାନଙ୍କର ସତ୍ୟାସତ୍ୟ ଯାହା ଥାଉନା କାହିଁକି, ଏକ ଶୈବ କ୍ଷେତ୍ର ରୂପେ ହୁମାର ଖ୍ୟାତି ସୁଦୂର ପ୍ରସାରୀ। ପଶ୍ଚିମ ଓଡ଼ିଶାର ଧର୍ମପ୍ରାଣ ବ୍ୟକ୍ତିମାନେ ଶ୍ରୀକ୍ଷେତ୍ର ଦର୍ଶନ ସାଗି ହୁମା ଦର୍ଶନକୁ ମଧ୍ୟ ଅପରିହାର୍ଯ୍ୟ ମନେ କରନ୍ତି। ଶିବରାତ୍ରୀ ଦିନ ଏଠାରେ ଏକ ବଡ଼ ମେଳା ହୁଏ ଓ ହଜାର ହଜାର ଯାତ୍ରୀ ସମାଗତ ହୁଅନ୍ତି।

ତୀର୍ଥ ଯାତ୍ରା ଦୃଷ୍ଟିରୁ ହୁମା ଯେତିକି ଆକର୍ଷଣୀୟ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିକୋଣରୁ ଏହା ତତୋଧିକ ଗୁରୁତ୍ୱପୂର୍ଣ୍ଣ। ଚୌହାଣ ରାଜତ୍ୱ କାଳରେ ଏକ ସ୍ୱତନ୍ତ୍ର ମନ୍ଦିର ନିର୍ମାଣ ଶୈଳୀ ଆରମ୍ଭ ହୋଇଥିବାର ଲକ୍ଷ୍ୟ କରାଯାଏ। ଏକ ନିଜସ୍ୱ ସ୍ୱାତନ୍ତ୍ର୍ୟ ସ୍ୱାକ୍ଷର ବହନ କରି ନିର୍ମିତ ହୋଇଛି ହୁମାର ବିମଳେଶ୍ୱର ମନ୍ଦିର। କୌଣସି ଚିରାଚରିତ ପନ୍ଥା ଅନୁସରଣ ନକରି ଏହା ବକ୍ର ଭାବରେ ନିର୍ମିତ ହୋଇଛି। ମନ୍ଦିର ପ୍ରାଚୀରରେ ଥିବା ମୁଖ୍ୟ ପ୍ରବେଶ ଦ୍ୱାର ତଥା ପାର୍ଶ୍ୱବର୍ତ୍ତୀ ଅନ୍ୟ ଦୁଇଟି ଯୁଗ୍ମ ମନ୍ଦିର ମଧ୍ୟ ବକ୍ର ଭାବରେ ନିର୍ମିତ ହୋଇଛି। ଅନ୍ୟ କୌଣସି ମନ୍ଦିର ଏହିପରି ବକ୍ର ଭାବରେ ନିର୍ମିତ ହୋଇଥିବାର ଆଜି ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ। ପିସା ନଗରୀରେ ଥିବା Leaning Tower ଏମିତି ବକ୍ର ଭାବରେ

ନିର୍ମିତ । ତେଣୁ ମନ୍ଦିର ନିର୍ମାଣ ଶୈଳୀ ଆଲୋଚନା ପ୍ରସଙ୍ଗରେ ହୁମା ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରେ ।

ହୁମାର ମନ୍ଦିର କାହିଁକି ଯେ ଏପରି ବକ୍ର ଭାବରେ ନିର୍ମିତ ହେଲା, ତାହା ନିର୍ଣ୍ଣୟ କରିବା ଗବେଷଣା ସାପେକ୍ଷ । ଦୁର୍ବଳ ପତନ ହେତୁ ମନ୍ଦିରଟି ମାଟି ତଳକୁ ବସିଯାଇ କାଳକ୍ରମେ ତାହା ଉତ୍ତର ଦିଗକୁ ଢଳି ପଡ଼ିଛି ନା ଶିଳ୍ପୀର ନିର୍ମାଣ ବୈଚିତ୍ର୍ୟ ହେତୁ ତାହା ଜାତ ସାରରେ ବକ୍ର ଭାବରେ ନିର୍ମାଣ କରାଯାଇଛି, ଏହାର ସଠିକ୍ ଉତ୍ତର ଏବେ ବି ନିଶ୍ଚିତ ହୋଇନାହିଁ । ତେବେ ମନ୍ଦିରର ପତନ ଯେ ଦୁର୍ବଳ ନୁହେଁ, ଏହା ସ୍ପଷ୍ଟ ରୂପେ ଜଣାପଡ଼େ । ତେଣୁ କାଳକ୍ରମେ ମନ୍ଦିରଟି ତଳକୁ ବସିଯାଇଛି ବୋଲି ସନ୍ଦେହ କରିବା ଅମୂଳକ । ଏହା ଯଦି ହୋଇଥାନ୍ତା ତେବେ ମନ୍ଦିରଟି ସହିତ ତା'ର କଳସ ମଧ୍ୟ ଉତ୍ତର ଦିଗକୁ ଢଳି ଯାଇଥାନ୍ତା । ମାତ୍ର ବକ୍ର ମନ୍ଦିରର ସିଧା ଭାବରେ ମୁଣ୍ଡି ମରାଯାଇଛି । ଏ ସମ୍ପର୍କରେ ମଧ୍ୟ ଏକ କିମ୍ବଦନ୍ତୀ ଶୁଣିବାକୁ ମିଳେ । ମନ୍ଦିର ନିର୍ମାଣ ସିଧା ଭାବରେ ଆରମ୍ଭ କରାଯାଇଥିଲା ଓ କେବଳ ମୁଣ୍ଡି ମାରିବା ବାକି ଥିଲା । ପରଦିନ ସକାଳୁ ଦେଖାଗଲା ଯେ ସମଗ୍ର ମନ୍ଦିରଟି ଉତ୍ତର ଦିଗକୁ ଢଳି ଯାଇଛି । ଶିଳ୍ପୀମାନେ ଏହି ବିପର୍ଯ୍ୟୟର କାରଣ ବୁଝି ନପାରି ବିବ୍ରତ ଓ ଆଶଙ୍କିତ ହୋଇ ପଡ଼ିଲେ । ରାଜାଙ୍କ ତରଫରୁ ମନ୍ଦିର ନିର୍ମାଣ କାର୍ଯ୍ୟ ତଦାରଖ କରୁଥିବା ଶ୍ରୀ ଦିବାକର ହୋତାଙ୍କୁ ସେଦିନ ବିମଳେଶ୍ୱର ସ୍ୱପ୍ନରେ କହିଲେ ଯେ ସେ ଏକ ବକ୍ର ମନ୍ଦିରରେ ରହିବାକୁ ଇଚ୍ଛା କରନ୍ତି । ତେଣୁ ତାଙ୍କର ଇଚ୍ଛାରେ ହିଁ ମନ୍ଦିରଟି ବକ୍ର ହୋଇଛି । ଏଥିରେ ନିର୍ମାଣ ଜନିତ କୌଣସି ତ୍ରୁଟି ନାହିଁ । କିନ୍ତୁ ମନ୍ଦିରଟିର ସିଧା ଭାବରେ ମୁଣ୍ଡି ମରାହେବ ବୋଲି ସେ ମତ ଦେଲେ । ତେଣୁ ମନ୍ଦିରଟିର ସିଧା ମୁଣ୍ଡି ମରାହେଲା ।

ହୁମା ମନ୍ଦିର ବିମାନ ଓ ଜଗମୋହନ ଦୁଇ ଭାଗରେ ବିଭକ୍ତ ହୋଇଛି । ବିମାନଟିର ଗର୍ଭଗୃହ ବର୍ଗାକାର ବିଶିଷ୍ଟ ଓ ଏଠାରେ ଅଧିଷ୍ଠିତ ଶିବ ଓ ଶକ୍ତି ଭୂତଳଗାମୀ ଯାହା ସର୍ବଦା ଜଳମଗ୍ନ ଥାଏ । ଗର୍ଭଗୃହ ପ୍ରବେଶ ଦ୍ୱାରରେ ଗଜଲକ୍ଷ୍ମୀ ମୂର୍ତ୍ତି ଖୋଦିତ ହୋଇଛି । ବିମାନ ଓ ଜଗମୋହନ ଉଭୟ ଖୋଦିତ ପଥର ଦ୍ୱାରା ନିର୍ମିତ । ମାତ୍ର ଜଗମୋହନର ସ୍ଥାନେ ସ୍ଥାନେ ଇଟା ମଧ୍ୟ ବ୍ୟବହୃତ ହୋଇଛି । ମନ୍ଦିରର ଚତୁଃପାର୍ଶ୍ୱରେ ଏକ ଉଚ୍ଚ ପ୍ରାଚୀର ଘେରି ରହିଛି ଓ ଭିତରକୁ ପ୍ରବେଶ କରିବା ପାଇଁ ତିନୋଟି ଦ୍ୱାର ରହିଛି ।

ହୁମାର ଅନ୍ୟ ଏକ ଆକର୍ଷଣ ହେଲା ମହାନଦୀ ଗର୍ଭରେ ଥିବା ବିଭିନ୍ନ ପ୍ରକାରର ମାଛ । ମନ୍ଦିର ପ୍ରାଚୀରକୁ ଲାଗି ବହି ଯାଉଥିବା ଅଣଓସାରିଆ ଜଳ ଧାରାରେ ବିଭିନ୍ନ ପ୍ରକାର ଚିତ୍ର ବିଚିତ୍ର ହୋଇଥିବା ଅସଂଖ୍ୟ ମାଛ ସ୍ୱଚ୍ଛନ୍ଦରେ ବିଚରଣ କରୁଥାନ୍ତି । ଏମାନଙ୍କୁ 'କୁଡ଼ୋ' ମାଛ ବୋଲି କୁହାଯାଏ । ଏମାନଙ୍କୁ ଧରିବା, କାଟିବା ବା ଖାଇବା ପାପ ବୋଲି ବିବେଚିତ ହୁଏ । ମୁଢ଼ି ବା ଚକଟା ଅଟାର ଗୋଳା ନଦୀ ଗର୍ଭକୁ ଫିଙ୍ଗିଦେଲେ ଶତାଧିକ ମାଛ ଏକ ସଙ୍ଗରେ ତେଣି ପଡ଼ନ୍ତି ତାକୁ ଖାଇବା ପାଇଁ । ସେଗୁଡ଼ିକୁ ହାତରେ ଧରି ପାଣିର ଠିକ୍ ଉପରକୁ ଦେଖାଇଲେ ମାଛମାନେ ତାହା ହାତରୁ ଝାମ୍ପି ନିଅନ୍ତି । ସ୍ୱଳ୍ପ ଜଳ ଧାରରେ ମାଛମାନଙ୍କ ସହିତ କ୍ରୀଡ଼ା କରିବା ଏକ ମଧୁର ଅନୁଭୂତି । ନିଜେ ନଦେଖିଲେ ବା ନିଜେ ଅନୁଭବ ନକଲେ ସେ କଥା ବିଶ୍ୱାସ କରିହେବ ନାହିଁ ।

ହୁମାର ପ୍ରାକୃତିକ ସୌନ୍ଦର୍ଯ୍ୟ ମଧ୍ୟ ଅବର୍ଣ୍ଣନୀୟ । ଦୂର ପାହାଡ଼ରେ ଅସ୍ତଗାମୀ ସୂର୍ଯ୍ୟ ଧୀରେ ଧୀରେ ତଳକୁ ଯାଉଥିବା ବେଳେ ତାଙ୍କର ବିଚ୍ଛୁରିତ ବିଦାୟ ରଶ୍ମି ମନ୍ଦିର ପଶ୍ଚିମ ପ୍ରାଙ୍ଗଣକୁ ସ୍ୱର୍ଣ୍ଣାଭ କରିଦିଏ । ସୂର୍ଯ୍ୟ ସମ୍ପୂର୍ଣ୍ଣ ଅସ୍ତ ହୋଇଯାନ୍ତି, ଅଥଚ ରାତିର ଅନ୍ଧକାର ପୃଥିବୀକୁ ଗ୍ରାସ କରି ନଥାଏ, ସେହି ଛାୟାଚ୍ଛନ୍ନ ମୁହୂର୍ତ୍ତରେ ଆନ୍ଦୋଳିତ ହେଉଥିବା ମହାନଦୀର ଶିକର-ସ୍ପର୍ଶଦାୟୀ ଜଳଧାରା କୂଳରେ ଠିଆ ହୋଇ ରହିବା ଏକ ରୋମାଞ୍ଚକର ଅନୁଭୂତି ।

ଅନୁଶାସନ ସଚିବ,
ପର୍ଯ୍ୟଟନ ବିଭାଗ,
ଭୁବନେଶ୍ୱର ।

■ ବିଶ୍ୱର ଅନ୍ୟ ରାଷ୍ଟ୍ରମାନଙ୍କଠାରୁ ହୁଏତ ଆମର ବହୁତ କିଛି ଶିଖିବାର ଅଛି କିନ୍ତୁ ମୋର ବିଶ୍ୱାସ ଆମର ଐତିହ୍ୟରୁ ଅନେକ କିଛି ଶିଖିବାକୁ ହେବ । ଭାରତର ଆତ୍ମା ଜୀବନ୍ତ ଏବଂ ବିବେକ ପ୍ରଖର, ତେଣୁ ଆମକୁ ବସ୍ତୁବାଦୀ ପ୍ରଗତି ଓ ତା'ର ମୂଲ୍ୟବୋଧ ସହିତ ନୀତି ଓ ଆଧ୍ୟାତ୍ମିକ ମୂଲ୍ୟବୋଧର ଏକ ସଂହତି ଖୋଜି ବାହାର କରିବାକୁ ହେବ । ଏହି ସଂହତିର ସୂତ୍ର, ଆମ ଦେଶକୁ ଆଗେଇ ଯିବାରେ ଯେତିକି ସାହାଯ୍ୟ କରିବ, ବିଶ୍ୱ ମାନବ ସମାଜକୁ ଶାନ୍ତି ଓ ପ୍ରଗତି ପଥରେ ସେତିକି ଆଗେଇ ନେବ । ଏକଦେଶଦର୍ଶିତା ଯୋଗୁଁ ଯେଉଁ ବିପଦ ଦେଖା ଦେବାର ସମ୍ଭାବନା ରହିଛି ଏହାଦ୍ୱାରା ତାହା ଦୂର ହୋଇ ପାରିବ ।

—ଶାସ୍ତ୍ରୀଜୀ

• ସାଂସ୍କୃତିକ ଐତିହ୍ୟ

# ଶ୍ରୀ ଗୀତଗୋବିନ୍ଦରେ ରାଧାମାଧବ କେଳି

ଡଃ ଗୋପୀନାଥ ମହାପାତ୍ର

କାଳିଦାସଙ୍କଠାରୁ ଆରମ୍ଭ କରି ସେକ୍ସପିଅରଙ୍କ ପର୍ଯ୍ୟନ୍ତ ବିଶ୍ୱର ପ୍ରସିଦ୍ଧ କବିମାନେ ପ୍ରାୟ ଏକାଧିକ ବା ଅନେକ ଗ୍ରନ୍ଥ ରଚନା କରି ଯଶସ୍ୱୀ ହୋଇଛନ୍ତି । ମାତ୍ର ଖଣ୍ଡିଏ ପୁସ୍ତକ ଲେଖି ବିଶ୍ୱ କବିମାନଙ୍କ ଦରବାରରେ ସମ ଆସନରେ ବସିବାର ଗୌରବ ଅର୍ଜନ କରି ପାରିଛନ୍ତି ଓଡ଼ିଶାର ପ୍ରାତଃ ସ୍ମରଣୀୟ କବି କେନ୍ଦୁବିଲ୍ୱ ଗ୍ରାମନିବାସୀ ଶ୍ରୀ ଜୟଦେବ । ଲଳିତ ପଦ ବନ୍ଧନରେ ସେ ଯେଉଁରି ରାଧାକୃଷ୍ଣଙ୍କ କେଳି ରହସ୍ୟ ପ୍ରଖ୍ୟାପନ କଲେ ତାହା ପାଠକର ହୃଦୟତନ୍ତ୍ରୀକୁ ସଙ୍ଗୀତର ମଧୁର ମୂର୍ଚ୍ଛନାରେ ଝଙ୍କୃତ କରିଦେଲା । ସଙ୍ଗୀତ ଶାସ୍ତ୍ରର ଭକ୍ତ ପ୍ରାଣରେ ଆନନ୍ଦର ଅମୃତ ସ୍ରୋତ ପ୍ଲାବନ କଲା । ଦେବାଳୟରେ ତଥା ପୁରପଲ୍ଲୀରେ ସର୍ବତ୍ର ଲୋକ ମୁଖରୁ ଗୁଞ୍ଜରି ଉଠିଲା :

"ଧୀର ସମୀରେ ଯମୁନା ତୀରେ ବସତି ବନେ ବନମାଳୀ"

ଅଥବା "ଲଳିତ ଲବଙ୍ଗ ଲତା ପରିଶୀଳନ କୋମଳ ମଳୟ ସମୀରେ" । ଏହା ହିଁ ବିଶ୍ୱ ପ୍ରସିଦ୍ଧ "ଗୀତଗୋବିନ୍ଦ"ର ମହତ୍ତ୍ୱ । ଏଇଠି ଅନ୍ତର୍ଦର୍ଶୀ ଶ୍ରୀ ଜୟଦେବଙ୍କର କୃତିତ୍ୱର କାରିଗରୀ ଶକ୍ତି । ପ୍ରୀତି, ରତି, ଭକ୍ତିର ସମନ୍ୱୟରେ ଗଢ଼ି ଉଠିଛି ଏହି ପବିତ୍ର ସାହିତ୍ୟ କୃତି ଶ୍ରୀ ଗୀତଗୋବିନ୍ଦ । ସକଳ ଶ୍ରେଣୀର ଅନୁରାଗୀ ସହୃଦୟ ହୃଦୟାହ୍ଲାଦକ, ଏହି ପବିତ୍ର ଗୀତଗୋବିନ୍ଦ । ରୀତି ଯୁଗୀୟ ଓଡ଼ିଆ କବିମାନଙ୍କର ଆଦର୍ଶ ସୂତ୍ର ଓ ପଦ ଲାଳିତ୍ୟର ଅପୂର୍ବ ଭଣ୍ଡାର ଏହି ଗୀତଗୋବିନ୍ଦ । ଅପ୍ରାକୃତ ପ୍ରେମ ମୂର୍ତ୍ତି ରାଧାଶ୍ୟାମଙ୍କର ପବିତ୍ର ପ୍ରେମ ପସରା ତଥା ରସିକ ରସରାହକ ଭଣ୍ଡାର ଏହି ଚିର ଭାସ୍ୱର ଗୀତଗୋବିନ୍ଦ କବି କୃତି ଏକ ସ୍ମରଣୀୟ ଆଲେଖ୍ୟ ମାତ୍ର । ପଦ ସରଳ ଧ୍ୱନିରେ ମାନସ ମୋହନ କରି ଜନ ମନରେ ପରମାନନ୍ଦ ସୃଷ୍ଟି କରି ଏହି ମଞ୍ଜୁଳ ଗ୍ରନ୍ଥ ବ୍ରହ୍ମାସ୍ୱାଦ ସହୋଦର ରସର ନିଷ୍ପତ୍ତି କରାଇ ଚମତ୍କାର ଭାବ ରାଜ୍ୟରେ ସହୃଦୟକୁ ଅବସ୍ଥାପିତ କରିଥାଏ । ଏହା ହିଁ 'ଗୀତଗୋବିନ୍ଦ'ର ବିଶେଷତ୍ୱ । ସେଥିପାଇଁ କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ଭଳି ବଡ଼ ବଡ଼ କବିମାନେ କବି ଜୟଦେବଙ୍କ ପଦକଞ୍ଜରେ ମଥାନତ କରି ଗାଇ ଅଛନ୍ତି ,

"କହେ ଉପେନ୍ଦ୍ର ଭଞ୍ଜ ଟେକି ବେନି ବାହାକୁ
କବି ଟେକେ କବି ପଣେ ନ ମଣେ ମୁଁ କାହାକୁ ।
ଜୟଦେବ କବିବର (ଦୀନକୃଷ୍ଣ) ଏକା ମୋର ଶରଣ
ଆନ କବିଙ୍କର ମୁଣ୍ଡେ ମୋର ବାମ ଚରଣ ।"

ବିଶ୍ୱ ନିୟନ୍ତା ଭଗବାନଙ୍କର ପ୍ରିୟତମ ହେବା ପାଇଁ ପ୍ରତ୍ୟେକ ଭକ୍ତ ଆଶାୟୀ । କିଏ ଭଗବାନଙ୍କୁ ପୁତ୍ର ଭାବରେ ନିଜର କରିବାକୁ ଚେଷ୍ଟା କରେ ତ କିଏ ବନ୍ଧୁ ଭାବରେ ଆପଣାର କରିବାକୁ ଲାଗିପଡ଼େ । କିଏ ପୁଣି ପିତା ରୂପେ ତ କିଏ ପୁଣି ମାତା ଭାବରେ । ଉଦ୍ଦେଶ୍ୟ ହେଲା, କ'ଣ ବୋଲି ତାକୁ ଗ୍ରହଣ କଲେ ସେ ଅଧିକ ଭଲ ପାଇବେ, ପାଖକୁ ଆସିବେ, ଭକ୍ତ ତାଙ୍କୁ ଛୁଇଁବ, ଦେଖିବ, ହୃଦୟ ଖୋଲି ସବୁ କଥା କହିବ; ସବୁ କରିବ ପୁଣି ନିଃସଙ୍କୋଚରେ । ପିତା ଭାବରେ ଡାକି ଯଦି ଉଦ୍ଦେଶ୍ୟ ପୂରଣ ନ ହେଲା, ତେବେ ଭକ୍ତ ଚିନ୍ତା କଲା, ମାଆ ତ ସ୍ନେହମୟୀ; ମାଆ ଭାବରେ ଡାକିଲେ ଭଗବାନ ନିଶ୍ଚୟ ଆସି ତାକୁ କୋଳେଇ ନେବେ । ଏଇଠି ହିଁ ଶକ୍ତି ଉପାସନାର ମୂଳତତ୍ତ୍ୱ ନିହିତ । ମାତ୍ର ମାତା ଭାବରେ ଡାକି ଯଦି ସବୁ କଥା କହି ନ ହେଲା, ଉଦ୍ଦେଶ୍ୟ ଯଦି ସାଧିତ ନ ହେଲା, ତେବେ ପୁଣି କି ଭାବରେ ଡାକିବାକୁ ହେବ ? ଲୌକିକ ବିଗ୍ରହକୁ ଅଙ୍ଗୀକାର କରି ଭକ୍ତ ଭଗବାନ ଓ ଭଗବତୀ ଅଥବା ଶିବ ଶକ୍ତି ଉଭୟଙ୍କୁ ପ୍ରାର୍ଥନା କଲା । ତେଣୁ ଭକ୍ତ ଲେଖନୀରୁ ଝରି ପଡ଼ିଲା, —

"ଶିବ ଶକ୍ତ୍ୟା ଯୁକ୍ତୋ ଯଦି ଭବତି ଶକ୍ତଃ ପ୍ରଭବିତୁମ୍"

ଅଥବା

"ନମଃ ଶିବାୟୈ ଚ ନମଃ ଶିବାୟ" ।

ଶିବଙ୍କ ସହିତ ଶକ୍ତିକୁ ମିଶାଇ ଆଉ ଏକ ପର୍ଯ୍ୟାୟରେ ଏକାକାର କରି ଅର୍ଦ୍ଧନାରୀଶ୍ୱର ଭାବରେ ଭଗବଦ୍ ପ୍ରୀତି ପାଇଁ ପୂଜାର୍ଚ୍ଚନା କରି ଚାଲିଲା ଭକ୍ତ ।

ତଥାପି ଭଗବାନଙ୍କର ନିକଟତର ହୋଇ ପାରିଲା ନାହିଁ ବୋଲି ଭକ୍ତ ଅନୁଭବ କଲା । ନିକଟତର ହେବା ପାଇଁ ପୁଣି ବାଟ ଖୋଜିଲା । ସମାଜର ରୀତି ପ୍ରତି ଦୃଷ୍ଟିପାତ କଲା ସେ । ଦେଖିଲା ସ୍ୱକୀୟା ପ୍ରୀତିଠାରୁ ପରକୀୟା ପ୍ରୀତି ଅଧିକ ଆକର୍ଷଣୀୟ, ଅଧିକ ପ୍ରୀତିପ୍ରଦ । ତେଣୁ ଲକ୍ଷ୍ମୀନାରାୟଣଙ୍କ ଯୁଗଳକୁ କିଛିଟା ପରିବର୍ତ୍ତନ କରି ଲକ୍ଷ୍ମୀଙ୍କୁ ପରକୀୟା ନାୟିକା ଭାବରେ ରାଧା ରୂପେ ସଂସାରକୁ ଆଣିଲା । ବିଷ୍ଣୁଙ୍କୁ କୃଷ୍ଣ ରୂପେ ଆବିର୍ଭୂତ କରାଇ ସେ ଦୁହିଁଙ୍କ ମଧ୍ୟରେ ପରକୀୟା ପ୍ରୀତି ଉପରେ ପ୍ରାଧାନ୍ୟ ଦେଲା । ସେହି ସବୁ ପରକୀୟା ପ୍ରୀତିକୁ ସାଙ୍ଗୋପାଙ୍ଗ ବର୍ଣ୍ଣନା କରି ନିଜେ ଆନନ୍ଦ ଲାଭ କରିବା ସଙ୍ଗେ ସମଗ୍ର ସମାଜକୁ ମଧ୍ୟ କୃଷ୍ଣ କାବ୍ୟ ମାଧ୍ୟମରେ ଆନନ୍ଦ ପ୍ରଦାନ କଲା । ପୁଣି ଆଉ ଏକ ପରିପ୍ରେକ୍ଷୀରେ ଏପରି ହେଲା ଯେ, ନିଜକୁ ନାରୀ ଭାବରେ,

ରାଧା ଭାବରେ ସଜାଇ ଅଭିସାର କରି କୃଷ୍ଣ ପ୍ରାପ୍ତି ପାଇଁ ଅହରହ ଶୁହିଁ ଭାବରେ ସଜାଇ ଅଭିସାର କରି କୃଷ୍ଣ ପ୍ରାପ୍ତି ପାଇଁ ଅହରହ ଶୁହିଁ ରହିଲା । ମନରେ ଅମାପ ବିଶ୍ୱାସ ରହିଲା, କୃଷ୍ଣ ନିଶ୍ଚୟ ପାଖକୁ ଆସିବେ, ଭଲ ପାଇବେ, ନିକଟ ହୋଇଯିବେ । ସେ ଯାହାହେଉ, ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତିକୁ ଅହରହ ଚିନ୍ତନ କରି, ସେ ଦୁହିଁଙ୍କର କେଳି ରହସ୍ୟକୁ ଉଦ୍‌ଘାଟନ କରିବାକୁ ଯାଇ ଭକ୍ତକବି ଜୟଦେବ ଲେଖନ୍ତି ଅମୃତୋପ୍ତ ଆହୁରି ଅଧିକ ରସଯୁକ୍ତ ଆନନ୍ଦ ମୁଖର ଭକ୍ତି କାବ୍ୟ ଶ୍ରୀ ଗୀତଗୋବିନ୍ଦ ରାଧାମାଧବଙ୍କର ଯମୁନା କୂଳର କେଳିରୁ କାବ୍ୟଟି ଆରମ୍ଭ ହୁଏ. –

"ରାଧାମାଧବୟୋର୍ଜୟନ୍ତି ଯମୁନା କୂଳେ ରହଃ କେଳୟଃ" ।

ହାଳଙ୍କର (୧ମ ଶତାବ୍ଦୀ) ଗାଥା ସପ୍ତଶତୀ, ଭଟ୍ଟନାରାୟଣଙ୍କର (୭ମ ଶତାବ୍ଦୀ) ବେଣୀ ସଂହାର, ଶଙ୍କରାଚାର୍ଯ୍ୟଙ୍କର (୮ମ–୯ମ ଶତାବ୍ଦୀ) ଅଚ୍ୟୁତାଷ୍ଟକ, ନାରାୟଣ ସ୍ତୋତ୍ର, ଆଚାର୍ଯ୍ୟଙ୍କ ନାରାୟଣାଷ୍ଟାଦଶକ ସ୍ତୋତ୍ର, ଆନନ୍ଦବର୍ଦ୍ଧନଙ୍କର (ନବମ ଶତକ) ଧ୍ୱନ୍ୟାଲୋକ, ରାଜଶେଖରଙ୍କର (ନବମ ଶତକ) କାବ୍ୟ ମୀମାଂସା, ତ୍ରିବିକ୍ରମ (୧୦ମ ଶତକ)ଙ୍କର ନଳଚମ୍ପୂ, ସୋମଦେବ ସୁରି (୧୦ମ ଶତାବ୍ଦୀ)ଙ୍କର ଯଶସ୍ତିଲକ ଚମ୍ପୂ, ଅଭିନବ ଗୁପ୍ତଙ୍କର (୧୧ଶ ଶତକ) ଧ୍ୱନ୍ୟାଲୋକର ଲୋଚନ ଟୀକା, କୁନ୍ତକ (୧୦ମ ଶତକ)ଙ୍କର ବକ୍ରୋକ୍ତି ଜୀବିତମ୍, ମାଳବ ରାଜ ବାକ୍‌ପତି ମୁଞ୍ଜଙ୍କର (୧୦ମ ଶତକ) ଶିଳାଲେଖ, ଭୋଜଙ୍କର (୧୧ଶ ଶତକ) ସରସ୍ୱତୀକଣ୍ଠାଭରଣ ଆଦି ଗ୍ରନ୍ଥମାନଙ୍କରେ ଜୟଦେବଙ୍କ (୧୨ଶ ଶତକ) ପୂର୍ବରୁ ରାଧାକୃଷ୍ଣଙ୍କର କେଳିର ବର୍ଣ୍ଣନା ପ୍ରସଙ୍ଗ ଦୃଷ୍ଟିଗୋଚର ହୋଇଥାଏ । ଏଥିରେ ଅନେକ ସ୍ଥାନରେ ଶ୍ରୀକୃଷ୍ଣଙ୍କୁ ମୁରରିପୁ, ଶ୍ରୀପତି, ମଧୁରିପୁ ଆଦି ବିଷ୍ଣୁଙ୍କର ନାମମାନ ରାଧା–କୃଷ୍ଣ କେଳି ପ୍ରସଙ୍ଗରେ କେବଳ କୃଷ୍ଣଙ୍କ ପାଇଁ ଉଲ୍ଲିଖିତ ହୋଇଛି । ଫଳରେ ଜୟଦେବଙ୍କ ପୂର୍ବରୁ କୃଷ୍ଣ ଯେ ସ୍ୱୟଂ ବିଷ୍ଣୁ, ଏହି ଭାବଧାରା ପ୍ରତିଷ୍ଠିତ ହୋଇ ସାରିଥିଲା । ତେବେ 'ରାଧା–ମାଧବ' ବିଶ୍ୱାସଧାରା ଜୟଦେବଙ୍କ ପୂର୍ବରୁ ପ୍ରତିଷ୍ଠିତ ହୋଇ ସାରିଥିଲେ ମଧ୍ୟ ବହୁଳ ଭାବରେ ଗ୍ରନ୍ଥମାନଙ୍କରେ ତାହା ଉଲ୍ଲିଖିତ ହୋଇ ନଥିଲା । ତଥାପି କେତେକ କବି ସ୍ୱକୀୟ କାବ୍ୟ କବିତାରେ ରାଧାମାଧବ କେଳିକୁ ସ୍ଥାନ ଦେଇଥିଲେ । ସୁଦୂର କାଶ୍ମୀରବାସୀ କ୍ଷେମେନ୍ଦ୍ର ଜୟଦେବଙ୍କ ପୂର୍ବରୁ ଏକାଦଶ ଶତକରେ ସ୍ୱୀୟ ଦଶାବତାର ଚରିତରେ କୃଷ୍ଣଙ୍କୁ କେଶବ ଓ ମାଧବ ବୋଲି କହି ରାଧାକୃଷ୍ଣଙ୍କର ପବିତ୍ର ପ୍ରୀତିର ବର୍ଣ୍ଣନା କରିଛନ୍ତି । ଯଥା, –

"କଥଂ ରାଧାମନାମନ୍ତ୍ର୍ୟ ଗତୋ ଭ୍ରମିତି ମାଧବଃ
ଅରତିଂ ପ୍ରାନ୍ତଦାଂ ଚିନ୍ତାଂ ବ୍ରଜନ୍ ଭେଜେ ବି ନିଃଶ୍ୱସନ୍ ।।"
ଶ୍ଳୋକ–୧୭୦ ।।

"ଯଜନ୍ ଗୋକୁଳଗୂଢ଼ କୁଞ୍ଜ ମଦନା ନ୍ୟାସଲୋକସ୍ୟନ୍ କେଶବଃ
ଯୋଷିତଂ ଲଳିତା ନନୋ ବନଲୁବା ସକ୍ଷୋଭ ଲୁଣ୍ଠାଞ୍ଜଳିଃ ।।" (୧୭୧ ଶ୍ଳୋକ)

ରାଧାମାଧବ ବିପ୍ରଯୋଗ ବିରଳ ଛାୟୋପମାନେ ମୁହୁ –
ଶାନ୍ତିଃ ପୀନ ପୟୋଧରାଗ୍ରକଳିତୈଃ ପୁଷ୍ଟତ୍ ଉଦପାଙ୍କୁରା ।। (ଶ୍ଳୋକ ୧୭)

ଏଥିରୁ ଜଣାଯାଉଛି, ଜୟଦେବଙ୍କ ପୂର୍ବରୁ କାଶ୍ମୀରଠାରୁ ଆରମ୍ଭ କରି ଭାରତବର୍ଷରେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତିର ବର୍ଣ୍ଣନା କରାଯାଉଥିଲା ଓ ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ବିଷ୍ଣୁ ଭାବରେ ଉପାସନା କରାଯାଉଥିଲା ।

କବି ଜୟଦେବ ସ୍ୱକୀୟ 'ଗୀତଗୋବିନ୍ଦ'ରେ 'ଆର୍ଯ୍ୟାସପ୍ତଶତୀ' ଗ୍ରନ୍ଥର ରଚୟିତା ଗୋବର୍ଦ୍ଧନାଚାର୍ଯ୍ୟଙ୍କୁ ଜାଣନ୍ତି ବୋଲି ଲେଖିଛନ୍ତି । ଏହି ଗୋବର୍ଦ୍ଧନାଚାର୍ଯ୍ୟ ରାଧାକୃଷ୍ଣଙ୍କର ପ୍ରେମ ବର୍ଣ୍ଣନା ପ୍ରସଙ୍ଗରେ କୃଷ୍ଣଙ୍କୁ ମଧ୍ୟ ବିଷ୍ଣୁ ବା ମଧୁମଥନ, ମଧୁଦ୍ୱିଷ ଭାବରେ ଚିତ୍ରଣ କରିଛନ୍ତି । ଯଥା,–

"ମଧୁମଥନ ମୌଳିମାଳେ ସଖି ତୁଳୟସି କିଂ ମୁଧା ରାଧାମ୍ ।
ଯତ୍ରବ ପଦମଦସୀୟଂ ସୁରଭୟିତୁଂ ସୌରଭୋଦ୍‌ଭେଦଃ ।।"
(ଶ୍ଳୋକ ୪୩୧)

"ଲଙ୍ଘୟିତୁ ମଖିଳ ଗୋପୀନିପୀତମାନସ୍ୟଂ ମଧୁଦ୍ୱିଷଂ ରାଧା ।
ଅଙ୍ଗେବ ପ୍ରକୃତି କଥାଂ ଗତ୍ୱୋର୍ଦ୍ଧସ୍ଥିତାର୍ଦ୍ଧ ତୁଙ୍ଗସ୍ୟ ।।"
(ଶ୍ଳୋକ ୫୧୦ ଆର୍ଯ୍ୟାସପ୍ତଶତୀ)

ଅତଏବ୍ କବି ଜୟଦେବ ପୂର୍ବସ୍ଥିତ ପରମ୍ପରାକୁ ଅଙ୍ଗୀକାର କରି ବିଷ୍ଣୁ କୃଷ୍ଣଙ୍କ ସହିତ ରାଧାଙ୍କୁ ମିଳନ କରାଇ ରାଧା–ମାଧବ କେଳି ଲୀଳାରେ ଲୀଳାୟିତ ସହୃଦୟ ହୃଦୟ ମୋଦକ 'ଗୀତଗୋବିନ୍ଦ' ରଚନା କରି ଶ୍ରୀ ଗୋବିନ୍ଦଙ୍କର ଅପାର ପ୍ରୀତି ବର୍ଦ୍ଧନ କରିଥିଲେ ।

ରାଧା ହେଉଛନ୍ତି 'ଗୀତଗୋବିନ୍ଦ'ର ନାୟିକା ଓ ଶ୍ରୀକୃଷ୍ଣ ହେଉଛନ୍ତି ନାୟକ । ରାଧାଙ୍କର କୃଷ୍ଣଙ୍କ ପ୍ରତି ଅନୁରାଗ, ବିରାଗ, ଅଭିମାନ ଆଦି ସମସ୍ତ କଥା ଏହି ଗ୍ରନ୍ଥରେ ବର୍ଣ୍ଣିତ ହୋଇଥିଲେ ମଧ୍ୟ କାବ୍ୟଟି ପ୍ରଭୁ ଶ୍ରୀକୃଷ୍ଣ ବା ଗୋବିନ୍ଦଙ୍କ ନାମରେ ନାମିତ । ପୁଣି ଏହି ଶ୍ରୀକୃଷ୍ଣ କେବଳ ଗୋପାଳକୃଷ୍ଣ ନୁହନ୍ତି; ସେ ହେଉଛନ୍ତି କବିଙ୍କ ଦୃଷ୍ଟିରେ ଅବତାରୀ ବିଷ୍ଣୁ। କାରଣ, ଭକ୍ତକବି ଜୟଦେବ ଥିଲେ କୃଷ୍ଣୈକ ପ୍ରାଣ । ସେହି କାରଣରୁ ଗ୍ରନ୍ଥଟିକୁ ଶ୍ରୀକୃଷ୍ଣଙ୍କୁ ସମର୍ପଣ କରି ପ୍ରତ୍ୟେକ ସର୍ଗର ଶେଷରେ ସର୍ଗଗୁଡ଼ିକୁ ମଧ୍ୟ ସେହି ବିଷ୍ଣୁ–କୃଷ୍ଣଙ୍କ ନାମରେ ନାମିତ କରିଛନ୍ତି ।

ପ୍ରଥମ ସର୍ଗଟିରେ ଅନେକ ନାରୀଙ୍କ ମେଳରେ ବାସନ୍ତୀ କ୍ରୀଡ଼ା ନିରତ କୃଷ୍ଣଙ୍କର ମନୋରମ ଗାଥା ଶୁଣାଇ କବି ଜୟଦେବ ଏ ସର୍ଗଟିକୁ 'ସାମୋଦ ଦାମୋଦରଃ' ବୋଲି ନାମିତ କରିଛନ୍ତି । 'ଦାମ' ଶବ୍ଦର ଅର୍ଥ ହେଉଛି ମାଳା । ଉଦର ପର୍ଯ୍ୟନ୍ତ ବିଳମ୍ବିତ ମାଳା ଧାରଣ କରିଥିବାରୁ ଶ୍ରୀକୃଷ୍ଣଙ୍କୁ କୁହାଯାଏ ଦାମୋଦର । ସେହି ଦାମୋଦର ବା ଶ୍ରୀକୃଷ୍ଣଙ୍କର ଆମୋଦ ଅଥବା ଆନନ୍ଦ ନିମିତ୍ତ ପ୍ରଥମ ସର୍ଗଟି ଉତ୍ସର୍ଗୀକୃତ ହୋଇପଡ଼ିଛି । ମଧୁ ମାସରେ ଅନେକ ନାରୀ ପରିବେଷ୍ଟଣରେ ବିଳସିତ ହୋଇ ଶୃଙ୍ଗାର ରସକୁ ସାକ୍ଷାତ୍ ମୂର୍ତ୍ତିମାନ କରି ଆନନ୍ଦ ରାସ ରସରେ ଉଲ୍ଲସିତ ହୋଇଥିବା ମୁରରିପୁ ବିଷ୍ଣୁ–କୃଷ୍ଣଙ୍କର ମହିମା ଓ ମାଧୁର୍ଯ୍ୟ ବର୍ଣ୍ଣନାରେ ମୁଖରିତ ହୋଇଛି ଶ୍ରୀ ଗୀତଗୋବିନ୍ଦର ପ୍ରଥମ ସର୍ଗ 'ସାମୋଦ ଦାମୋଦରଃ' ।

ଦ୍ୱିତୀୟ ସର୍ଗଟି ନାମିତ ହୋଇଛି 'ଅକ୍ଲେଶ ମାଧବ' ନାମରେ । ଶ୍ରୀକୃଷ୍ଣଙ୍କୁ ଏଠାରେ 'ମା' ବା ଲକ୍ଷ୍ମୀ, 'ଧବ' ବା ସ୍ୱାମୀ, ଏହି ଭାବରେ ଲକ୍ଷ୍ମୀପତି ବିଷ୍ଣୁ ଭାବରେ ଗ୍ରହଣ କରାଯାଇଛି । ମାତ୍ର ପ୍ରକୃତରେ କୃଷ୍ଣଙ୍କର ଲକ୍ଷ୍ମୀ ବୋଲି କେହି ସ୍ତ୍ରୀ ନଥିଲେ । ପୁଣି ଅନ୍ୟ ପୋଥି ଅନୁସାରେ ଏ ସର୍ଗଟିର ନାମ 'ଅକ୍ଲେଶ କେଶବ' ବୋଲି ରଖାଯାଇଛି । ଅର୍ଥାତ୍ ଏହି ସର୍ଗରେ କେଶବ ଗୋପୀମାନଙ୍କ ସୌନ୍ଦର୍ଯ୍ୟରେ ବିମୁଗ୍ଧ ହୋଇ ଭକ୍ତଜନଙ୍କର କ୍ଲେଶ ଦୂର କରୁଥିବାରୁ ସର୍ଗଟିର ନାମ ହୋଇଛି 'ଅକ୍ଲେଶ କେଶବ' । 'କ' ଶବ୍ଦର ଅର୍ଥ ହେଉଛି ଜଳ କେ – ଜଳରେ ଶବ ଭଳି ପ୍ରଳୟ କାଳରେ ଭାସୁଥିବାରୁ ବିଷ୍ଣୁଙ୍କୁ କେଶବ ବୋଲି କୁହାଯାଏ । ଅତଏବ୍ ଯିଏ ଲକ୍ଷ୍ମୀପତି ମାଧବ, ସିଏ ମଧ୍ୟ କେଶବ । ତେଣୁ ଜୟଦେବଙ୍କ ଦୃଷ୍ଟିରେ କୃଷ୍ଣ ହେଉଛନ୍ତି ବିଷ୍ଣୁଙ୍କଠାରୁ ଅଭିନ୍ନ ।

କବି ଜୟଦେବ ତୃତୀୟ ସର୍ଗଟିକୁ 'ମୁଗ୍ଧ ମଧୁସୂଦନ' ନାମରେ ନାମିତ କରିଛନ୍ତି । ମୁଗ୍ଧ ଶବ୍ଦର ଅର୍ଥ ମୋହଗ୍ରସ୍ତ । ମୁହ+କ୍ତ । ରାଧା ପ୍ରେମରେ ମୋହଗ୍ରସ୍ତ ବା ମୁଗ୍ଧ ହୋଇ ତାଙ୍କର କରୁଣା ଭିକ୍ଷା କରିଛନ୍ତି ମଧୁସୂଦନ ଶ୍ରୀକୃଷ୍ଣ । 'ଗୀତଗୋବିନ୍ଦ'ରେ ସେଥିପାଇଁ କୁହାଯାଇଛି,

ସଂମୁଗ୍ଧଂ ମଧୁସୂଦନସ୍ୟ ମଧୁରେ ରାଧା ମୁଖେନ୍ଦୌ ମୃଦୁ –
ସ୍ପନ୍ଦଂ କନ୍ଦଳିତା ଚିରଂ ଦଧତୁ ବଃ କ୍ଷେମଂ କଟା କ୍ଷୋମ୍ମୟଃ ।।

ଏଠାରେ କୃଷ୍ଣଙ୍କ ପାଇଁ ଯେଉଁ 'ମଧୁସୂଦନ' ଶବ୍ଦଟିର ପ୍ରୟୋଗ କରାଗଲା ତାହାର ଅର୍ଥ ହେଉଛି ମଧୁ ଓ କୈଟଭ ନାମକ ଦୈତ୍ୟଦ୍ୱୟଙ୍କର ବିନାଶକାରୀ । ଏହି ବିନାଶ ଶ୍ରୀକୃଷ୍ଣଙ୍କ ଦ୍ୱାରା ଦ୍ୱାପର ଯୁଗରେ ସଂଘଟିତ ହୋଇ ନଥିଲା, ହୋଇଥିଲା ବିଷ୍ଣୁଙ୍କ ଦ୍ୱାରା ସତ୍ୟ ଯୁଗରେ । ଏ କଥା ଜାଣି ମଧ କବି ଜୟଦେବ ଶ୍ରୀକୃଷ୍ଣଙ୍କୁ ମଧୁସୂଦନ, ମଧୁରିପୁ ଇତ୍ୟାଦି ଭାବରେ ଅଭିହିତ କରିଛନ୍ତି । କବିଙ୍କ ଦୃଷ୍ଟିରେ ଶ୍ରୀକୃଷ୍ଣ ବିଷ୍ଣୁଙ୍କ ଭିନ୍ନ ଅନ୍ୟ କେହି ନୁହନ୍ତି ।

ଚତୁର୍ଥ ସର୍ଗରେ କୃଷ୍ଣଙ୍କୁ ମଧ ମଧୁସୂଦନ ବୋଲି କୁହାଯାଇଛି । ଏ ସର୍ଗଟିର ନାମ ରଖାଯାଇଛି 'ସ୍ନିଗ୍ଧ ମଧୁସୂଦନ' । ରାଧା ପ୍ରେମରେ ଏ ସର୍ଗରେ ସ୍ନେହସିକ୍ତ (ସ୍ନିଗ୍ଧ) ହୋଇଛନ୍ତି କାମାନଳରେ ଦଗ୍ଧୀଭୂତ କୃଷ୍ଣ । ରାଧା ମଧ ଅନ୍ୟ ପକ୍ଷରେ କୃଷ୍ଣଙ୍କ ପାଇଁ କାମ ବାଧାରେ ଜର୍ଜରିତା । ତେଣୁ ସଖୀ ସନ୍ଦେଶ ଆଣି କୃଷ୍ଣଙ୍କୁ ଦେଇ ସେହି କଥା ପ୍ରକାଶ କରିଛି,–

"ସା ବିରହେ ତବ ଦୀନା ।
ମାଧବ ମନସିଜ୍ ବିଶିଖଭୟାଦିବ ଭାବନୟା ତ୍ୱୟି
ଲୀନା ॥"

ରାଧାଙ୍କର ଏ କାମ ବାଧା ଦୂର ହେବ କେବଳ ଶ୍ରୀକୃଷ୍ଣଙ୍କର ଅଙ୍ଗସଙ୍ଗ ରୂପୀ ଅମୃତ ରସ ପାନରେ ।

"ତ୍ୱଦଙ୍ଗ ସଙ୍ଗାମୃତ ମାତ୍ର ସାଧ୍ୟାମ୍ ।"
ଗୀତଗୋବିନ୍ଦମ୍ ୪/୨୦ ॥

ସଖୀ ପୁଣି ଦେଖୁଛି, କୃଷ୍ଣ କିପରି ରାଧାଙ୍କ ଚିନ୍ତାରେ ବ୍ୟାକୁଳିତ । ପଞ୍ଚମ ସର୍ଗରେ ସଖୀ ଯାଇ ଏ ବାର୍ତ୍ତା ରାଧାଙ୍କୁ ଜଣାଇ ତାଙ୍କୁ କୃଷ୍ଣଙ୍କ ପ୍ରତି ଅଧିକ ଅନୁରକ୍ତ କରିଛି । ପୁଣି ତାଙ୍କୁ କହିଛି, ହେ ରାଧେ ! ତୁମେ ଯମୁନା କୂଳକୁ ଆସି କୋଟି କାମ ସୁନ୍ଦର ରସିକ ମୋହନ ଶ୍ରୀକୃଷ୍ଣଙ୍କୁ ଅଭିସାର କର । ତା'ପରେ ସୁବେଶ ହୋଇ ଶ୍ରୀକୃଷ୍ଣଙ୍କୁ ବିମୋହିତ କରି ତାଙ୍କର ଆନନ୍ଦ ସନ୍ଦୀପିତ କରି ଅଖଣ୍ଡ ପୁଣ୍ୟ ଲାଭ କରିବାକୁ ସଖୀ ଅନୁରୋଧ କରିଛି ।

"ଚଳ ସଖୀ କୁଞ୍ଜଂ ସତିମିର ପୁଞ୍ଜଂ ଶୀଳୟ ନୀଳ
ନିଚୋଳମ୍ ।
ଉରସି ମୁରାରେ ରୁପହିତ ହାରେ ଘନଇବ ତରଳ
ବଳାକେ ।
ତଡ଼ିଦିବ ପୀତେ ରତି ବିପରୀତେ ରାଜସି ସୁକୃତ
ବିପାକେ ।
ବିଗଳିତ ବସନଂ ପରିହୃତ ରସନଂ ଘଟୟ
ଜଘନମପିଧାନମ୍
କିଶଳୟ ଶୟନେ ପଙ୍କଜ ନୟନେ ନିଧିମିବ ହର୍ଷ ବିଧାନମ ।"

(ଗୀତଗୋବିନ୍ଦମ୍ ୫/୫–୭ ॥)

ସଖୀ କହିଛି – ହେ ରାଧେ ! ତୁମକୁ ଅପେକ୍ଷା କରି ପଙ୍କଜ ନୟନ ପୁଣ୍ଡରୀକାକ୍ଷ ବନମାଳୀ ପଲ୍ଲବ ଶଯ୍ୟାରେ ଶୟନ କରିଛନ୍ତି । ତାହାଙ୍କୁ ଦେଖିଲେ ତୁମେ ନିଶ୍ଚୟ କାମ ତାପ ବିହ୍ୱଳିତ ହେବ । ହେ ରାଧେ ! ମୁରାରୀଙ୍କର ଅଭିଳଷିତ କାମନା ପୂର୍ଣ୍ଣ କର ।

ଏଠାରେ କବି ପ୍ରଭୁ ଶ୍ରୀକୃଷ୍ଣଙ୍କୁ ପଙ୍କଜ ନୟନ ବୋଲି କହିଛନ୍ତି । ତ୍ରେତା ଯୁଗରେ ରାମଚନ୍ଦ୍ରଙ୍କର ନାମ ଥିଲା ରାଜୀବ ଲୋଚନ । ମାତ୍ର ଏଠାରେ କୃଷ୍ଣ ହେଲେ ପୁଣି ରାଜୀବ ଲୋଚନ । "କିଶଳୟ ଶୟନେ ପଙ୍କଜ ନୟନେ ନିଧିମିବ ହର୍ଷ ବିଧାନମ୍" । ପୂର୍ବରୁ ତ କବି ଶ୍ରୀକୃଷ୍ଣଙ୍କୁ ଅବତାରି ରାମଚନ୍ଦ୍ର ବୋଲି ଘୋଷଣା କରିଛନ୍ତି । "ସମର ଶମିତ ଦଶକଣ୍ଠ" । ଅତଏବ୍, ଏଠାରେ ରାଜୀବ ଲୋଚନ ବୋଲି ଆଭଥରେ ବିଚାର କଲେ ଅସୁବିଧା କ'ଣ ?

ଅବଶେଷରେ କବି ସର୍ଗଟିର ନାମକରଣ କରିଛନ୍ତି "ସାକାଂକ୍ଷ ପୁଣ୍ଡରୀକାକ୍ଷ" । ଏହା ଫଳରେ କବି ଭାବନାରେ ପୁଣ୍ଡରୀକାକ୍ଷ, ମଧୁରିପୁ, ବିଷ୍ଣୁ, କୃଷ୍ଣ ସବୁ ଏକାକାର ହୋଇଛି ।

ରାଧାଙ୍କ ଅଭିସାରରେ କୃଷ୍ଣ ବସିଥାନ୍ତି । ତେଣେ ରାଧା ବିରହ ବାଧାରେ ଅସୁସ୍ଥା, ଶ୍ରୀକୃଷ୍ଣଙ୍କ ନିକଟକୁ ଆସିବାକୁ ଅସମର୍ଥା । ଏ ମର୍ମନ୍ତୁଦ ସମ୍ବାଦ ଦେଇ ଫେରିଛି ସଖୀ ଷଷ୍ଠ ସର୍ଗରେ । ରାଧା ହୋଇଛନ୍ତି ବାସକ ସଜ୍ଜା ନାୟିକା । ପ୍ରେମର ପ୍ଲାବନରେ ଖୋଜି ବସିଛନ୍ତି ଶ୍ରୀକୃଷ୍ଣଙ୍କୁ । ମନରେ ଆଙ୍କୁଛନ୍ତି ରତିକେଳିର ନାନାବିଧ ଚିତ୍ର । ପାଖରେ ଥିବା ସଖୀଙ୍କୁ କହୁଛନ୍ତି, ହେ ସଖୀ, ନଟବର ନାଗର କାହ୍ନୁ କେତେବେଳେ ମୋ ପାଖକୁ ଆସିବେ ? ରାଧା କାମ ବାଧାରେ ସାତ୍ତ୍ୱିକ ବିକାରଗ୍ରସ୍ତ ହୋଇଛନ୍ତି; ପ୍ରଳାପ କରୁଛନ୍ତି, ଲଜ୍ଜା ତ୍ୟାଗ କରିଛନ୍ତି, ରୋଦନ କରୁଛନ୍ତି । ଆଉ ମଧ ପୁଣି ସଖୀଙ୍କୁ ଦୂତୀ ରୂପେ ପଠାଇ ଅଭିସାର ପାଇଁ କରୁଣ ନିବେଦନ କରିଛନ୍ତି :

"ତ୍ୱରିତ ମୁପୈତି ନ କଥମଭିସାରମ୍ ।
ହରିରିତି ବଦତି ସଖୀ ମନୁବାରମ୍ ।
ଶ୍ଳିଷ୍ୟତି ଚୁମ୍ବତି ଜଳଧର କଳ୍ପମ୍ ।
ହରିରୁପଗତ ଇତି ତିମିର ମନଳ୍ପମ୍ ।
ଭବତି ବିଳମ୍ବିନୀ ବିଗଳିତ ଲଜ୍ଜା ।
ବିଳପତି ରୋଦତି ବାସକ ସଜ୍ଜା ॥

(ଗୀତଗୋବିନ୍ଦମ୍ ୬/୫–୭)

ଏହି ସର୍ଗଟିକୁ କବି ଧୃଷ୍ଟ ବୈକୁଣ୍ଠ ବୋଲି ନାମିତ କରିଛନ୍ତି । ଅର୍ଥାତ୍ ଶ୍ରୀକୃଷ୍ଣଙ୍କୁ ଏଠାରେ 'ବୈକୁଣ୍ଠ' ବୋଲି କୁହାଯାଇଛି । ମାତ୍ର ଶ୍ରୀକୃଷ୍ଣ ବାସ୍ତବରେ ବୈକୁଣ୍ଠ ନୁହନ୍ତି । କେବଳ ବିଷ୍ଣୁ ଭାବରେ ତାଙ୍କୁ ବୈକୁଣ୍ଠ ବୋଲି କୁହାଯାଇ ପାରେ । କାରଣ, ପୁରାଣ ଶାସ୍ତ୍ରାନୁସାରେ ବୈକୁଣ୍ଠ ଶବ୍ଦର ଦୁଇଟି ଅର୍ଥ ଅଛି । ଗୋଟିଏ ହେଉଛି ବିଷ୍ଣୁ ଓ ଅନ୍ୟଟି ତାଙ୍କର ବାସସ୍ଥାନ ।

ବ୍ରାହ୍ମଣ ଯୁଗ ଓ ଉପନିଷଦ ଯୁଗରେ 'ବୈକୁଣ୍ଠ'ର ଅର୍ଥ ଥିଲା ବୈଦିକ ଦେବତା ଇନ୍ଦ୍ର(୧) । ପ୍ରଜାପତିଙ୍କର ଅସୁରୀ କନ୍ୟା ବିକୁଣ୍ଠାଙ୍କର ପୁତ୍ର ଥିଲେ ବୈକୁଣ୍ଠ । ବୃହଦେବତା ମତରେ ସେ ଇନ୍ଦ୍ର ସମ ଶକ୍ତିଶାଳୀ ଥିଲେ । ପରେ ତାଙ୍କୁ ହିଁ ଉପେନ୍ଦ୍ର (ବିଷ୍ଣୁ) ବୋଲି କୁହାଯାଉଥିଲା । ବିଷ୍ଣୁ ଧର୍ମୋତ୍ତର (୩/୪୪/୯–୧୩) ଅନୁସାରେ ବୈକୁଣ୍ଠଙ୍କର ଚାରିଗୋଟି ମୁଣ୍ଡ, ଆଠଗୋଟି ହସ୍ତ ଓ ବାହନ ହେଉଛି ଗରୁଡ଼ । ଏହି ଗରୁଡ଼ାରୋହୀ ବୈକୁଣ୍ଠଙ୍କୁ ରୂପମଣ୍ଡନ ଗ୍ରନ୍ଥରେ (୩/୫୭/୫୦) ମହାବଳ ଅଷ୍ଟଭୁଜ ବିଷ୍ଣୁ ରୂପେ ଚିତ୍ରଣ କରାଯାଇଛି । ବିଭିନ୍ନ ସଂଗ୍ରହାଳୟରେ ଭାରତରେ ଏଭଳି ଅନେକ ବୈକୁଣ୍ଠ ବିଷ୍ଣୁଙ୍କର ମୂର୍ତ୍ତି ଦେଖିବାକୁ ମିଳେ । ସେ ଯାହାହେଉ, ଏହି ସର୍ବ ଶକ୍ତିମାନ୍ ବୈକୁଣ୍ଠ ରୂପୀ ବିଷ୍ଣୁ–କୃଷ୍ଣଙ୍କୁ ଲାଭ କରିବା ପାଇଁ ବ୍ୟାକୁଳ ହୋଇଛନ୍ତି ବୃଷଭାନୁଜା ରାଧା ।

ନାଗର ନାରାୟଣଙ୍କର ଆସିବାରେ ବିଳମ୍ବ ହେବାରୁ ରାଧାଙ୍କର ବିରହଜ୍ୱାଳା ବହୁଗୁଣିତ ହୋଇଛି । ସେ ନିଜର ଯୌବନକୁ ନିନ୍ଦା କରିଛନ୍ତି । ତାଙ୍କର କାମପୀଡ଼ାର ବର୍ଣ୍ଣନାରେ ମୁଖରିତ ହୋଇଛି ସପ୍ତମ ସର୍ଗ । ରାଧା ଆଶଙ୍କା କରୁଛନ୍ତି, ଶ୍ରୀକୃଷ୍ଣ ଅନ୍ୟ କେଉଁ ରମଣୀର ବଶରେ ରହିଯାଇଛନ୍ତି କି ? ଅଥବା ଅନ୍ୟ କେହି ବନ୍ଧୁ ତାଙ୍କୁ ଆସିବା ପାଇଁ ନିବୃତ୍ତ କରାଇଛି କି ? ଏହିଭଳି ରାଧାଙ୍କ ମନରେ ଅନେକ ଚିନ୍ତା, ଅନେକ ଅନୁଶୋଚନା । ଏହି ସମୟରେ ସଖୀ ବିରସ ମନରେ ଫେରି ଆସିଛି । ରାଧା ସଖୀଙ୍କର ଏହି ବିରସତା ଅବଲୋକନ କରି କହୁଛନ୍ତି, ସତେ କ'ଣ ମୋ ପ୍ରାଣର ପ୍ରିୟ ଶ୍ରୀକୃଷ୍ଣ ଅନ୍ୟ ଯୁବତୀ ସହିତ ରମଣ କଲେ ? ଏହି ଭାବନାରେ ମୁଖରିତ ହୋଇ ଉଠିଲେ ମହାକବି ଜୟଦେବ । ଏହି ପରକୀୟା ପ୍ରୀତିର ନାୟକ ହେଉଛନ୍ତି ନାଗର ନାରାୟଣ ନଟବର ଶ୍ରୀକୃଷ୍ଣ । ଏଥିପାଇଁ ସର୍ଗାନ୍ତରେ ଏହି ସର୍ଗଟିକୁ କବି ନାମିତ କଲେ 'ନାଗର ନାରାୟଣ' ଭାବରେ । ରାଧାଙ୍କ ସହିତ ଯେଉଁ

ପ୍ରକାରେ ଶ୍ରୀକୃଷ୍ଣ କେଳି କରିଥାନ୍ତି, ସେହିପରି ଅନ୍ୟ କାମିନୀଙ୍କ ସହିତ କରିଥିବେ ବୋଲି ରାଧା ଅନୁମାନ କରିବା ସ୍ୱାଭାବିକ୍ । ରାଧା ଜାଣନ୍ତି ଯେ, ଶ୍ରୀକୃଷ୍ଣଙ୍କ ପ୍ରୀତି ଲାଭ କରିଥିବା ରମଣୀ ସକଳ କାମ ବାଧାରୁ ନିସ୍ତାର ପାଏ । ମନରେ ତା'ର ଗ୍ଲାନି ଆସେ ନାହିଁ, ମଳୟ ପବନ ଆଉ ତା'ର ତନୁକୁ ଜଳାଏ ନାହିଁ ଓ କାମବାଣ ତାହାର କିଛି କରିପାରେ ନାହିଁ । କୃଷ୍ଣ ପ୍ରୀତିରେ ସମ୍ପୂର୍ଣ୍ଣ ସନ୍ତୁଷ୍ଟ ହୋଇ ସେ ପ୍ରାଣରେ ପୂର୍ଣ୍ଣତା ଲାଭ କରେ ଓ ଅପାର ଆନନ୍ଦକୁ ପ୍ରାପ୍ତ ହୁଏ । ତେଣୁ କବି କହିଛନ୍ତି ତଦୀୟ ଅମର ଲେଖନୀ "ଗୀତଗୋବିନ୍ଦ'ରେ, –

"ତପତ ନ ସା କିଶଳୟ ଶୟନେବ ।
x x x x
ସ୍ଫୁଟତି ନ ସା ମନସିଜ ବିଶିଖେନ ॥
x x x x
ଦଦତି ନ ସା ହୃଦି ବିରହ ଭରେଣ ॥
(ଗୀତଗୋବିନ୍ଦମ୍ ୭/୧–୫) ।

ରାଧା ଆଶାର ସୌଧ ତୋଳି ବସିଛନ୍ତି ଶ୍ରୀକୃଷ୍ଣଙ୍କ ଆଗମନ ପାଇଁ । ଶ୍ରୀକୃଷ୍ଣଙ୍କ ବିଳମ୍ବର ପ୍ରତିଟି ମୁହୂର୍ତ୍ତ ତାଙ୍କ ପାଇଁ ହୋଇଉଠିଛି ଅତ୍ୟନ୍ତ ଦୁର୍ବିସହ । ବେଳୁଁ ବେଳ ଖଣ୍ଡିତା ନାୟିକା ପାଲଟିଛନ୍ତି ରାଧା । ଏହିଭଳି ଅବସ୍ଥାରେ ଅଷ୍ଟମ ସର୍ଗରେ ରାଧାଙ୍କ ସମ୍ମୁଖରେ ଆବିର୍ଭୂତ ହୋଇଛନ୍ତି ନଟବର ନାଗର ଶ୍ରୀକୃଷ୍ଣ । ମାନିନୀ ରାଧାଙ୍କର ଅଭିମାନ ଦ୍ୱିଗୁଣିତର ହୋଇଛି । ଅନ୍ୟ ନାରୀ ସହିତ ରମଣ କରି କାଳିଆ କାହ୍ନୁ ଆଉ କାହିଁକି ଆସିଛନ୍ତି ତାଙ୍କ ପାଖକୁ ? ତେଣୁ ଶ୍ରୀକୃଷ୍ଣଙ୍କୁ ସେଠାରୁ ଖସିଯିବା ପାଇଁ ରାଧିକା ଅଭିମାନଭରା କଣ୍ଠରେ କହିଛନ୍ତି – "ଯାହି ମାଧବ ଯାହି କେଶବ" । ଏପରି ଅବସ୍ଥା ଦେଖି ଶ୍ରୀକୃଷ୍ଣ ଅନେକ ବୁଝାଇଛନ୍ତି, ମାତ୍ର ବିଫଳ ହୋଇଛନ୍ତି ।

ଏହି ସର୍ଗରେ ଶ୍ରୀକୃଷ୍ଣଙ୍କୁ ଲକ୍ଷ୍ମୀପତି ବା ନାରାୟଣ ବୋଲି କୁହାଯାଇ ସର୍ଗଟିକୁ "ବିଲକ୍ଷ ଲକ୍ଷ୍ମୀପତି" ବୋଲି ନାମିତ କରାଯାଇଛି । କବିଙ୍କ କଳ୍ପନାରେ ସ୍ୱୟଂ ଗୋଲକ ବିହାରୀ ବିଷ୍ଣୁ ଲୀଳାବିହାରୀ ହୋଇ ଲୌକିକ ରୀତିରେ କିପରି ସଂସାରରେ ଅବତୀର୍ଣ୍ଣ ହୋଇଛନ୍ତି ଓ ସାଧାରଣ ଭାବରେ କିପରି ଲୀଳା ଖେଳା କରିଛନ୍ତି, ତାହା ହୋଇଛି ମୁଖ୍ୟ ବର୍ଣ୍ଣନୀୟ ବିଷୟ ।

ରାଧାଙ୍କ ମାନଭଞ୍ଜନ କରିବା ପାଇଁ ବହୁ କାକୁତି ମିନତି କରିଛନ୍ତି ପ୍ରଭୁ ବ୍ରଜବିହାରୀ ମାଧବ । ସେତେବେଳେ ସେ ନିଜର ସଫଳ ପ୍ରଚ୍ଛନ୍ନ ଓ ନିଜତ୍ୱକୁ ତ୍ୟାଗ କରି ସବୁ କିଛି ଲୋଟାଇ ଦେଇଛନ୍ତି ପ୍ରେମର ପସରା ରାଧାଙ୍କର ପାଦତଳେ । ପୁଣି କହି ଚାଲିଛନ୍ତି, ହେ ରାଧେ ! ଆଉ ତୁମେ ମାଧବଙ୍କ ଉପରେ ମାନ କର ନାହିଁ ।

"ମାଧବେ ମା କୁରୁ ମାନିନି ମାନମୟେ" ॥

ଅୟି ସୁଲକ୍ଷଣେ ! କାହିଁକି ନିଜର ଯୌବନକୁ ସଦୁପଯୋଗ ନକରି ଏ ମନୋରମ ବସନ୍ତ କାଳରେ ମଦନ ମୋହନ ଶ୍ରୀକୃଷ୍ଣଙ୍କୁ ଫେରାଇ ଦେଉଛ ଓ ଏହି ତାଳ ଫଳନିଭ ବିପୁଳ କୁଚ ଦ୍ୱୟକୁ ବିଫଳ କରୁଛ ? ନବମ ସର୍ଗରେ ଖଣ୍ଡିତା ନାୟିକା ରାଧାଙ୍କୁ ଶାନ୍ତ କରିବା ପାଇଁ ସଖୀ ଏହିଭଳି ଭାବରେ ବୁଝାଇଛି ।

"ତାଳ ଫଳାଦପି ଗୁରୁମତି ସରସଂ
କିମୁ ବିଫଳୀକୁରୁଷେ କୁଚ କଳସମ୍" ॥

ସର୍ଗାନ୍ତରେ କବି ଜୟଦେବ ସର୍ଗର ନାମକରଣ କରିଛନ୍ତି 'ମୁଗ୍‌ଧମୁକୁନ୍ଦ' । ଏଠାରେ ମଧ୍ୟ ଶ୍ରୀକୃଷ୍ଣଙ୍କୁ ମୁକୁନ୍ଦ ବୋଲି କହିବା ପଛରେ ସେହି ବିଷ୍ଣୁ ଭାବ ହିଁ ନିହିତ ।

ସଖୀ ବୁଝାଇବାରେ ରାଧାଙ୍କର ହୃଦୟ ଦ୍ରବୀଭୂତ ହୋଇଛି ସତ, ମାତ୍ର ଅଭିମାନ ଦୂର ହୋଇନାହିଁ । ଦଶମ ସର୍ଗରେ ଦକ୍ଷିଣ ନାୟକ ଶ୍ରୀକୃଷ୍ଣ ସନ୍ଧ୍ୟାକାଳରେ ରାଧାଙ୍କ ନିକଟରେ ସ୍ୱୟଂ ଆବିର୍ଭୂତ ହୋଇଛନ୍ତି । ମାନଭଞ୍ଜନ ପାଇଁ ତଥା ଅଧରରସ ପାନ କରିବା ପାଇଁ ସମୁତ୍ସୁକ ରାଧାରମଣ ନାନା କାକୁତି ମିନତି ମଧ୍ୟରେ ନିଜର ଆବେଗ ଓ ଉତ୍କଣ୍ଠା ପ୍ରକାଶ କରିଛନ୍ତି । ସେ କହିଛନ୍ତି, ହେ ରାଧେ ! ତୁମେ ଅଳପ କିଛେ ହସିଦିଅ, ତୁମର ଏ ଦନ୍ତ କୌମୁଦୀ ମୋର ଏ ଦୁଃଖାନ୍ଧକାର ଦୂର କରିଦେଉ । ଏ ମାନ ତ୍ୟାଗ କର । ମଦନାନଳରେ ମୋର ମନ ଦଗ୍‌ଧୀଭୂତ ହେଉଛି । ତୁମ ମୁଖ କମଳରୁ ମୋତେ ମଧୁପାନ କରିବାକୁ ଦିଅ ।

"ଦେହି ମୁଖ କମଳ ମଧୁପାନମ୍"

ହେ ସୁନ୍ଦରୀ ! ମୋତେ ନିବିଡ଼ ଭୁଜ ବନ୍ଧରେ ଆଲିଙ୍ଗନ କର ।

"ଦେହି ଖର ନୟନ ଶରଘାତମ୍
ଘଟୟ ଭୁଜ ବନ୍ଧନମ୍, ଜନୟ ରଦ ଖଣ୍ଡନମ୍ ।
ଯେନ ବା ଭବତି ସୁଖ ଜାତମ୍" ॥

ହେ ସୁନ୍ଦରୀ ! ରାଧେ ! ତୁମେ ମୋର ଭୂଷଣ, ତୁମେ ମୋର ଜୀବନ, ତୁମେ ମୋର ଏ ଭବ ସାଗରର ରତ୍ନ ।

କ୍ରମେ କ୍ରମେ ଏପରି ଚାଟୁକ୍ତି ପ୍ରୟୋଗରେ ଶ୍ରୀକୃଷ୍ଣ ସୀମା ଟପିଗଲେ । ଅଭିମାନ ଭଞ୍ଜନ ପାଇଁ ଶେଷରେ କହିଲେ, "ହେ ରାଧେ ! ତୁମର ଏ ପଦ ପଲ୍ଲବ କାମ ବିଷଜ୍ୱାଳା ଦୂର କରିପାରେ । ଅତଏବ, ତୁମର ଏ ପଦ ଦ୍ୱୟକୁ ମୋର ମସ୍ତକରେ ସ୍ଥାପନ କର ।

"ସ୍ମରଗରଳ ଖଣ୍ଡନଂ ମମ ଶିରସି ମଣ୍ଡନମ୍ ।
ଦେହି ପଦ ପଲ୍ଲବମୁଦାରମ୍" ॥

ନାୟିକାର ମାନ ଭଞ୍ଜନ ଲାଗି ନାୟକଙ୍କୁ କେତେଦୂର ବିନମ୍ର ହେବାକୁ ହୁଏ, ସ୍ୱୟଂ ଶ୍ରୀକୃଷ୍ଣ ତାହାର ଏକ ଆଦର୍ଶ ଏଠାରେ ଉପସ୍ଥାପନ କରିଛନ୍ତି । ଫଳରେ ତାଙ୍କର ରାଧା ପ୍ରୀତିର ଅନାବିଳତା, ଦୃଢ଼ତା, ନିଷ୍ଠା ଓ ସର୍ବୋପରି ଏକପ୍ରାଣତା ପ୍ରକଟିତ ହୋଇଛି । ଏହି ଭାବନାରେ ରାଧାକୃଷ୍ଣ ଅଭେଦରେ ଏକାକାର ହୋଇଛନ୍ତି । ଅର୍ଦ୍ଧନାରୀଶ୍ୱର ଶିବଶକ୍ତି ଅଥବା ଚନ୍ଦ୍ରଚନ୍ଦ୍ରିକା ଭଳି ରାଧାକୃଷ୍ଣ ସମ୍ପୂର୍ଣ୍ଣ ତଦାକାରାକାରିତ ହୋଇଛନ୍ତି ।

କେତେକ ସଂସ୍କରଣରେ "ମୁଗ୍‌ଧମାଧବ"ର ନାମ "ଚତୁର ଚତୁର୍ଭୁଜ" ବୋଲି ଜାଣିବାକୁ ମିଳେ(୮) । ସେ ଯାହାହେଉ, ମାଧବ ଓ ଚତୁର୍ଭୁଜ ଉଭୟେ ବିଷ୍ଣୁବାଚକ । ପ୍ରକୃତ ପକ୍ଷରେ କୃଷ୍ଣ ମାଧବ ବା ଚତୁର୍ଭୁଜ ନହେଲେ ମଧ୍ୟ ତାଙ୍କୁ ବିଷ୍ଣୁ ବୋଲି ଜ୍ଞାନ କରାଯାଇ ଏପରି ନାମିତ କରାଯାଇଛି ।

କୃଷ୍ଣଙ୍କର ଅନୁନୟ ସତ୍ତ୍ୱେ ମଧ୍ୟ ରାଧିକା କୁଞ୍ଜକୁ ଯିବା ପାଇଁ ଉଦ୍ୟତ ହେଲେ ନାହିଁ । ତେଣୁ ଏକାଦଶ ସର୍ଗରେ ସଖୀ ପୁଣି ମାନ ଭଞ୍ଜନରେ ସାହାଯ୍ୟ କରିଛନ୍ତି । ଶ୍ରୀକୃଷ୍ଣଙ୍କର ରାଧାଙ୍କ ପ୍ରତି ଥିବା ଅନୁରକ୍ତିକୁ ସେ ପୁଣି ଦୋହରାଇଛନ୍ତି । ରାଧାଙ୍କର ଅଙ୍ଗ ଲାବଣ୍ୟକୁ ପ୍ରଶଂସା କରି ସଖୀ କହିଛନ୍ତି ଯେ, ବେଣୁପାଣି ଅତ୍ୟନ୍ତ ବିହ୍ୱଳିତ ହୋଇ ତାଙ୍କୁ ଅନାଇ ବସିଛନ୍ତି । ତେଣୁ ହେ ରାଧେ ! ତୁମକୁ ଦେଖିଲାକ୍ଷଣି ସେ ନିଶ୍ଚୟ ନିବିଡ଼ ଭାବରେ ଆଲିଙ୍ଗନ କରିବେ । ଏହା ଶୁଣି ରାଧା ସୁବେଶ ହୋଇ ନିକଟରେ ଯାଇ ପହଞ୍ଚିଲେ । ତାଙ୍କୁ ଏକାନ୍ତରେ ଦେଖି ଗୋବିନ୍ଦଙ୍କ ଆନନ୍ଦର ସୀମା ରହିଲା ନାହିଁ । ତେଣୁ କବି ଏହି ସର୍ଗଟିର ନାମକରଣ କଲେ "ସାନନ୍ଦ ଗୋବିନ୍ଦ" ।

ଅନ୍ତିମ ବା ଦ୍ୱାଦଶ ସର୍ଗ ରାଧାକୃଷ୍ଣଙ୍କ କେଳିର ଚରମ ସୋପାନକୁ ବର୍ଣ୍ଣନା କରେ । ରାଧା ଯାଇ ସୁସଜ୍ଜିତ ପଲ୍ଲବ ଶଯ୍ୟାର ଏକ ପ୍ରାନ୍ତରେ ବସିଲେ । ଶ୍ରୀକୃଷ୍ଣ ଅନୁନୟ କରି କହିଲେ, "ହେ ରାଧେ ! ତୁମେ ଏତେ ଦୂର ଚାଲି ଚାଲି ଆସିଲ । ପାଦକୁ କଷ୍ଟ ହୋଇଥିବ । ଏ ଶଯ୍ୟା ଉପରେ ପାଦ ରଖ, ମୁଁ ଟିକିଏ ପାଦ ସମ୍ବାହନ କରିଦିଏ । ଦିନେ ଶକୁନ୍ତଳାଙ୍କୁ ମଧ୍ୟ ଦୁଷ୍ମନ୍ତ ଏପରି କହୁଥିବାର ବର୍ଣ୍ଣନା କାଳିଦାସଙ୍କ

"ଅଭିଜ୍ଞାନ ଶାକୁନ୍ତଳମ୍"ରୁ ଦେଖିବାକୁ ମିଳେ । ସେ ଯାହାହେଉ, ପୁଣି ଶ୍ରୀକୃଷ୍ଣ କହିଲେ, ହେ ସଖୀ ! ତା'ପରେ ତୁମେ ମୋର ଉରରେ ତୁମର କୁଚ କଳସକୁ ସ୍ଥାପନ କରି ନିବିଡ଼ାଲିଙ୍ଗନରେ ମୋର ମନସିଜ ବାଧାକୁ ଶାନ୍ତ କରିବ ।

"ଉରସି କୁଚ କଳସଂ ବିନିବେଶୟ ଶୋଷୟ ମନସିଜ୍ ତାପମ୍" ।

ଏହି କଥାମାନ କହି ନାମ ସ୍ତୁତିରେ ରାଧାମୋହନ ରସିକ ପ୍ରବର ରାଧାଙ୍କୁ ରତି କେଳି ପାଇଁ ଉତ୍ସାହିତ କଲେ ଓ ନିଜେ ମଧ୍ୟ କେଳିରେ ଅଗ୍ରସର ହେଲେ । ରାଧା ମଧ୍ୟ ଲଜ୍ଜା ପରିହାର କରି କେଳି ସମରରେ କାନ୍ତଙ୍କୁ ଜୟ କରିବାକୁ ଉତ୍ସୁକ ହେଲେ । କବି ଲେଖିଲେ, —

"ମାରାଙ୍କେ ରତିକେଳିସଙ୍କୁଳ ରଣାରମ୍ଭେ ତୟା ସାହସ—
ପ୍ରାୟଂ କାନ୍ତ ଜୟାୟ କିଞ୍ଚିଦୁପରି ପ୍ରାରମ୍ଭୀୟତ୍ ସମ୍ଭ୍ରମାତ୍" ।

ରାଧାଙ୍କର ଏହି ଉତ୍ସୁକତା ହେଉଛି ଶ୍ରୀକୃଷ୍ଣଙ୍କର ସଫଳ କାମ କଳାର ପରିଚୟକ । କିଛି ସମୟ ପରେ ରାଧା କାମ କେଳିରେ ଅବସନ୍ନା ହେବାରୁ ଶ୍ରୀକୃଷ୍ଣ ତାଙ୍କର ଆଲୁଳାୟିତ କେଶକୁ ସଜାଡି ଦେଇଛନ୍ତି । ସେଥିରେ ତାଙ୍କର କସ୍ତୁରୀ ଲେପନ କରିଛନ୍ତି । ପ୍ରିୟାର ଆନନ୍ଦ ପାଇଁ ସବୁ ଉପଚାର କରିଛନ୍ତି । କାରଣ, ରତି କେଳିର ମହାସମରରେ କ୍ଲାନ୍ତକ୍ଲାନ୍ତା ହୋଇ ରାଧା ଏକାଧାରରେ ଦ୍ୱାକାମସ୍ତ ପୀଡ଼ା ଓ ତଜ୍ଜନିତ ଅହେତୁକୀ ଆନନ୍ଦରେ ଅଭିଭୂତା ହୋଇଛନ୍ତି । ସେହି ଅବସ୍ଥାକୁ ବର୍ଣ୍ଣନା କରି କବି ଜୟଦେବ ଲେଖିଛନ୍ତି, —

"ବ୍ୟାଲୋଲ କେଶପାଶସ୍ତରଳିତ ମଳକୈ ସ୍ୱେଦଲୋଲୌ
କପୋଲୌ
କ୍ଲିଷ୍ଟାବିମ୍ବାଧରଶ୍ରୀଃ କୁଚ କଳସରୁଚା ହାରିତା ହାର ଯଷ୍ଟିଃ ।
କାଞ୍ଚୀ କାଞ୍ଚିଦ୍‌ଗତାଶାଂ ସ୍ତନଜଘନପଦଂ ପାଣିନାଚ୍ଛାଦ୍ୟ ସଦ୍ୟଃ
ପଶ୍ୟନ୍ତି ସତ୍ରପଂ ମାଂ ତଦପି ବିଲୁଳିତସ୍ରଗ୍ଧରେୟଂ ଧିନୋତି" ॥

ରାଧାଙ୍କର ଅନୁନୟପୂର୍ଣ୍ଣ ପ୍ରାର୍ଥନାରେ ବିହ୍ୱଳିତ ହୋଇ ରସରାଜ ଶୃଙ୍ଗାରର ପ୍ରତିମୂର୍ତ୍ତି ଶ୍ରୀକୃଷ୍ଣ ରାଧାଙ୍କ ଲଲାଟରେ ତିଳକ ଲେଖି, କବରୀ ସଜାଡ଼ି, ନୀଳ ବସ୍ତ୍ର ପରିଧାନ କରାଇ, କଟିରେ ତାଙ୍କର ମେଖଳା କିଙ୍କିଣୀ ବନ୍ଧନ କରି ସବୁ ପ୍ରକାରେ ପ୍ରିୟାଙ୍କୁ ସଜାଡ଼ି ଦେଲେ । କବିଙ୍କ ଅମର ଲେଖନୀରେ ରାଧାକୃଷ୍ଣଙ୍କର ଆନନ୍ଦ ମୁଖରିତ ରତି କେଳିରସ କାମାମୃତ ଏକ ଚରମ ସୋପାନରେ ପରିବେଶିତ ହେଲା । ସମସ୍ତ ଗାନ୍ଧର୍ବ କଳା କୌଶଳର ପରାକାଷ୍ଠାକୁ ଅଙ୍ଗୀଭୂତ କରି ଆଦିରସ ଶୃଙ୍ଗାରକୁ ମୂର୍ତ୍ତିମାନ କରି ତଥା ରସାରଦ୍ଧ ସହିତ ବ୍ରହ୍ମାନନ୍ଦକୁ ସଂଯୋଗ କରି କବି ଜୟଦେବ ନାୟକ ଶ୍ରେଷ୍ଠ ଶ୍ରୀକୃଷ୍ଣଙ୍କ ଗୁଣ କୀର୍ତ୍ତନରେ ପ୍ରସିଦ୍ଧ ଗ୍ରନ୍ଥ "ଗୀତଗୋବିନ୍ଦ"କୁ ସାର୍ଥକ କରିଛନ୍ତି । ତେଣୁ କବି କହିଛନ୍ତି, —

ଯଦ୍ ଗାନ୍ଧର୍ବ—କଳାସୁ କୌଶଳମନୁଧ୍ୟାନଂଚ ଯଦ୍ ବୈଷ୍ଣବମ୍
ଯଚ୍ଛୃଙ୍ଗାର କବିବେକସାରମପି ଯଦ୍ କାବ୍ୟେଷୁ ଲୀଳାୟିତମ୍ ।
ତଦ୍ ସର୍ବଂ ଜୟଦେବ ପଣ୍ଡିତକବେଃ କୃଷ୍ଣୈକତା ମାସନଃ
ସାନନ୍ଦଂ ପରିଶୋଧୟନ୍ତୁ ସୁଧୟଃ ଶ୍ରୀଗୀତଗୋବିନ୍ଦତଃ ॥

"ନୀଳ ସଦ୍ମ" ସାତ୍ତରାପୁର ରୋଡ଼,
ପୁରୁଣାଭୁବନେଶ୍ୱର ଭୁବନେଶ୍ୱର—୨ ।



ସଚିବାଳୟଠାରେ ସମ୍ବାଦିକ ସମ୍ମିଳନୀରେ ମୁଖ୍ୟମନ୍ତ୍ରୀ..................

# ପରିବେଶ ସୁରକ୍ଷାରେ ଉଭୟଚରୀ ବେଙ୍ଗ

ଅଧ୍ୟାପକ ପ୍ରଫୁଲ୍ଲ କୁମାର ମହାନ୍ତି

"କି ବେଙ୍ଗ୍ ?" "କୁଣି ବେଙ୍ଗ୍ ।"

ଅତି ସାଧାରଣ ପ୍ରାଣୀ ହିସାବରେ ବେଙ୍ଗଟି ଆବାଳବୃଦ୍ଧବନିତା ସମସ୍ତଙ୍କ ପାଖରେ ଜଣାଶୁଣା । କେତେବେଳେ ଜଳଭାଗରେ ଓ କେତେବେଳେ ସ୍ଥଳଭାଗରେ ସମୟ କାଟୁଥିବାରୁ ବେଙ୍ଗକୁ ଉଭୟଚରୀ ପ୍ରାଣୀ (Amphibian) ବୋଲି କୁହାଯାଏ । ପ୍ରାଣୀ ଜଗତରେ ଏ ପ୍ରାଣୀର ବିଶେଷତ୍ୱ ହେଲା ଯେ ନିଜକୁ ଶତ୍ରୁମାନଙ୍କ ଠାରୁ ରକ୍ଷା କରିବା ପାଇଁ ନିଜର କିଛି ଉପାୟ ନଥିବା । ସେଥିପାଇଁ କିଛି ନ ହେଲେ ବେଙ୍ଗଟିକୁ ଦେଖିବା ମାତ୍ରକେ ମାରିବା [illegible] । ଅଉ ଠିକ୍ ସେତିକିବେଳେ ତାର [illegible] ବେଙ୍ଗକୁ ନ ମାରିବା ପାଇଁ କହିଥାନ୍ତି – "ବେଙ୍ଗ ମାରନା, କଣା ହୋଇଯିବୁ, କାନକୁ ଆଉ ଶୁଭିବ ନାହିଁ ।" [illegible] । ଏଭଳି ଅନେକ କଥା [illegible] ଅନେକ ଦିନରୁ [illegible] । ଏ [illegible] ନ ହେଲେ ବି [illegible] ଅନେକ କିଛି । ଏ ବେଙ୍ଗର ମର୍ମକୁ [illegible] କରାଯାଉ ।

ବେଙ୍ଗ ଅନ୍ୟାନ୍ୟ ଜୀବ ଓ ମଣିଷ ପରି ପରିବେଶର ଗୋଟିଏ ଅଂଶ । ପରିବେଶ ମାନେ କେବଳ ମଣିଷ ନୁହେଁ ; ମଣିଷ ଓ ତାର ଚତୁଃପାର୍ଶ୍ୱର ଜଡ଼ ଓ ପ୍ରାଣୀଗୁଡ଼ିକକୁ ନେଇ ପରିବେଶ ଗଠିତ । ଆଜିର ମଣିଷ ତାର ନିଜର ସ୍ୱାର୍ଥ ସାଧନ ଉଦ୍ଦେଶ୍ୟରେ ପ୍ରକୃତିକ ପରିବେଶକୁ ବିଭିନ୍ନ ଉପାୟରେ ବିକଳାଙ୍ଗ କରିବାରେ ଲାଗିଛି – ବିଶେଷ କରି ଖାଦ୍ୟ, ବାସଗୃହ ଓ ଶିଳ୍ପ ଉଦ୍ଦେଶ୍ୟରେ । ବେଶୁ ବେଙ୍ଗ ଅନେକ ଦିନରୁ ମଣିଷର ଏକ ଭଲ ଖାଦ୍ୟ ଭାବରେ ଗଣ୍ୟ ହୋଇଛି । ସେଥିପାଇଁ ଭାରତବର୍ଷରୁ ବିଦେଶକୁ ପ୍ରତିବର୍ଷ ଅନେକ ପରିମାଣରେ ବେଙ୍ଗ ମାଂସ ବା ବେଙ୍ଗ ରପ୍ତାନୀ କରାଯାଇ ବୈଦେଶିକ ମୁଦ୍ରା ଅର୍ଜନ କରାଯାଉଛି । ଏ ରପ୍ତାନୀ ବହୁଳ ଭାବରେ ହୋଇଆସିଛି ସ୍ୱାଧୀନତା ପର ଅର୍ଥାତ୍ ୧୯୪୭ ମସିହାଠାରୁ । ଭାରତରେ ଦେଖାଯାଉଥିବା ୨୭ ପ୍ରକାର ଗ୍ରାହ୍ମଣ ବେଙ୍ଗ ପରି ୩୭ ବେଙ୍ଗର ମାଂସଳ ଗୋଡଗୁଡ଼ିକୁ ରପ୍ତାନି କରିବା ହେଉଛି ଗୋଟିଏ ସୁନ୍ଦର ଲାଭଜନକ ବ୍ୟବସାୟ । ଏ ଗ୍ରାହ୍ମଣ ବେଙ୍ଗ ମଧ୍ୟରେ ମୁଖ୍ୟତଃ କେତେକ ବେଙ୍ଗ (Rana tigrina, Rana hexadactyla ଓ Rana crassa) ପ୍ରଧାନ; ସେଗୁଡ଼ିକ ରପ୍ତାନୀ ସାମଗ୍ରୀ ଭାବେ ସ୍ଥାନ [illegible] କରିଛନ୍ତି । କେବଳ ବାର୍ଷିକ ୨,୫୦୦ ଟନ୍ ବେଙ୍ଗ ଗୋଡ ଆମେରିକା ଓ ପଶ୍ଚିମ ୟୁରୋପୀୟ ଦେଶଗୁଡ଼ିକୁ ବିକ୍ରୟ କରାଯାଇ ପ୍ରାୟ ୭ କୋଟି ଟଙ୍କା ଅର୍ଜନ କରାଯାଉଥିବାର ହିସାବରୁ ଜଣାପଡ଼ିଛି । ବର୍ତ୍ତମାନ ପ୍ରଶ୍ନ ଉଠିପାରେ ଯଦି ବେଙ୍ଗ ରପ୍ତାନୀ ହୋଇ ପ୍ରଚୁର ବୈଦେଶିକ ମୁଦ୍ରା ଅର୍ଜନ କରାଯାଉଛି – ଆମର ଅସୁବିଧା ହେଲା କେଉଁଠି ?

ବୈଦେଶିକ ମୁଦ୍ରା ଅର୍ଜନ ହେଲା ସତ ; କିନ୍ତୁ ତା' ସହିତ ଆମର କୃଷିର ଉତ୍ପାଦନ ପରିମାଣରେ ହ୍ରାସ ପାଉଛି ବୋଲି ପରିସଂଖ୍ୟାନରୁ ଜଣାପଡ଼ିଛି । ଏହାର କାରଣ ହେଲା ବେଙ୍ଗମାନଙ୍କର ମୁଖ୍ୟ ଖାଦ୍ୟ ହେଲା କୀଟ ପତଙ୍ଗ ଓ ଲାର୍ଭା ଇତ୍ୟାଦି; ଯାହାର ସଂଖ୍ୟା କୃଷିକ୍ଷେତ୍ରରେ ସର୍ବାଧିକ । ବେଙ୍ଗମାନେ କୃଷିକ୍ଷେତ୍ରରେ ରହି ଏ କୀଟପତଙ୍ଗ ଓ ଲାର୍ଭାଗୁଡ଼ିକୁ ଖାଦ୍ୟରୂପେ ସେମାନଙ୍କ ଜୀବନକୁ ବଞ୍ଚାଇବାରେ ସହାୟକ ହୋଇଥାଆନ୍ତି । ସେହିଭଳି ଜଳାଶୟଗୁଡ଼ିକରେ ମଶା ଓ ମାଛି ଇତ୍ୟାଦିର ଲାର୍ଭାଗୁଡ଼ିକୁ ଖାଇଯିବା ଦ୍ୱାରା ତାଙ୍କର ବଂଶବୃଦ୍ଧି ହ୍ରାସ କରିଥାଆନ୍ତି । କୀଟମାନଙ୍କ ସଂଖ୍ୟା ପ୍ରାଣୀଜଗତରେ ସବୁଠାରୁ ଅଧିକ ହୋଇଥିବାରୁ କୃଷିକ୍ଷେତ୍ରର ତଥା କୃଷିକ୍ଷେତ୍ର ବାହାରେ ବି ସେମାନଙ୍କର ସଂଖ୍ୟା ଆଦୌ କମ୍ ନୁହେଁ । ସେହି କୀଟମାନଙ୍କୁ ଏଭଳି ପ୍ରାକୃତିକ ଉପାୟରେ ଲୋପ କରାନଗଲେ ବଂଶବୃଦ୍ଧି ହେବା ସଙ୍ଗେସଙ୍ଗେ କୃଷିର ଉତ୍ପାଦନ ହ୍ରାସ ପାଇବା ସ୍ୱାଭାବିକ୍ । ଏସବୁ କାରଣଗୁଡ଼ିକୁ ଅନୁଧ୍ୟାନ କରି ମହାରାଷ୍ଟ୍ରର ରତ୍ନଗିରି ଜିଲ୍ଲାର କଙ୍କନ କୃଷି ବିଦ୍ୟାପୀଠ (Konkan Krishi

Vidyapeeth)ର ଗବେଷଣାରୁ ଜଣାପଡ଼ିଛି ଯେ କୃଷି କ୍ଷେତ୍ରରେ ବେଙ୍ଗଗୁଡ଼ିକର ଅବସ୍ଥାନ ଯୋଗୁଁ ପୋକମାନଙ୍କ ଦ୍ୱାରା ଫସଲହାନୀ ଯଥେଷ୍ଟ କମିଯାଇ ହେକ୍ଟର ପିଛା ଉତ୍ପାଦନ ଅଧିକ ହୋଇଛି ।

ଏହା ବ୍ୟତୀତ ଭାରତୀୟ କୃଷି ଗବେଷଣା ସଂସ୍ଥା (Indian Council of Agriculture Research ବା ICAR) ମତ ପ୍ରକାଶ କରି କହିଛନ୍ତି ଯେ ବେଙ୍ଗମାନଙ୍କ ପାଇଁ କୃଷିକ୍ଷେତ୍ରର ପ୍ରାୟ ୯୦ ଭାଗ ଖାଦ୍ୟ ହେଉଛି ସଂକ୍ରମିତ ପୋକ ଯେଉଁମାନେ କୃଷିକ୍ଷେତ୍ରର ଗଛଗଛଲିଗୁଡ଼ିକୁ ଖାଇ ଉତ୍ପାଦନ ଯଥେଷ୍ଟ କମାଇଥାଆନ୍ତି । ଖାଦ୍ୟ ଓ କୃଷି ଗବେଷଣା ସଂସ୍ଥା (FAO) ର ଜଣେ ମୁଖପାତ୍ର Dr. Charles Fugler ୧୯୮୬ ମସିହା ଜୁନ୍ ମାସରେ ଭାରତ ଆସିଥିବା ସମୟରେ କହିଥିଲେ, କୃଷିକ୍ଷେତ୍ରରେ କେବଳ ଫସଲହାନି କରୁଥିବା ପୋକ ବଢ଼ିଯାଉଛନ୍ତି ତାହା ନୁହେଁ, ପୋକମାନଙ୍କୁ ନାଶ କରିବା ନିମିତ୍ତ ବ୍ୟବହୃତ କୀଟନାଶକ ଔଷଧ (Insecticides ବା Pesticides) ବେଙ୍ଗମାନଙ୍କର ଡିମ୍ବ ଓ ଲାର୍ଭାଗୁଡ଼ିକୁ ନାଶ କରିବା ଫଳରେ ସେମାନଙ୍କ ସଂଖ୍ୟାରେ ନ୍ୟୂନତା ଦେଖାଯାଉଛି । ଅର୍ଥାତ୍ ଏକ ପକ୍ଷରେ ବେଙ୍ଗମାନଙ୍କ ବଂଶକୁ ହ୍ରାସ କରାଗଲା ଓ ଅନ୍ୟ ପକ୍ଷରେ ପୋକମାନେ ବଢ଼ିଯାଉଥିବାରୁ କୀଟନାଶକ ଔଷଧ ପ୍ରୟୋଗ ଯୋଗୁଁ ଯେଉଁ କିଛି ବେଙ୍ଗମାନଙ୍କ ଲାର୍ଭା ରହିଥାନ୍ତି ସେମାନେ ବି ମରିଯିବାକୁ ଲାଗୁଛନ୍ତି । ସୁତରାଂ ଏତେ ଉପଯୋଗିତାକୁ ଜଟିଳ କରିବା ପରିବର୍ତ୍ତେ ବେଙ୍ଗମାନଙ୍କ ବଂଶକୁ କିଛି କ୍ଷତି ନ କରି ଯେପରି ପ୍ରକୃତିରେ ଅଛନ୍ତି, ସେପରି ରହିଲେ ପ୍ରାକୃତିକ ପରିବେଶ ଭାରସାମ୍ୟ (Natural Ecological Balance) ଉପଯୁକ୍ତ ରୂପେ ରକ୍ଷା କରାଯାଇ ପାରନ୍ତା ।

ଏହିପରି ଭାବରେ ବେଙ୍ଗମାନଙ୍କର ପ୍ରାଧାନ୍ୟ ଉପଲବ୍ଧି କରାଯାଇ ସେମାନଙ୍କ ସୁରକ୍ଷା ଓ ସଂରକ୍ଷଣ ପାଇଁ ପଦକ୍ଷେପ ନିଆଯାଉଛି । ଅନ୍ଧ୍ରପ୍ରଦେଶ, ମହାରାଷ୍ଟ୍ର, ତାମିଲନାଡୁ, କର୍ଣ୍ଣାଟକ, କେରଳ, ଗୁଜରାଟ ଗୋଆ, ପଶ୍ଚିମବଙ୍ଗ, ଓଡ଼ିଶା, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ଓ ବିହାର ଆଦି ରାଜ୍ୟଗୁଡ଼ିକ ବେଙ୍ଗ ରପ୍ତାନୀ କାର୍ଯ୍ୟକ୍ରମ ପାରିବାରିକ ପେଶାରୂପେ ଗ୍ରହଣ କରିଥିବାରୁ ସେମାନଙ୍କୁ ସେଥିରୁ ବଞ୍ଚିତ କରାଯାଉଛି ନିୟମାନୁଯାୟୀ । ପୁନଶ୍ଚ ବେଙ୍ଗଗୁଡ଼ିକୁ ଶିକାର କରି ଖାଦ୍ୟରୂପେ ବ୍ୟବହାର ନ କରିବା ନିମିତ୍ତ ମୁଖ୍ୟ ବନ୍ୟପ୍ରାଣୀ ତତ୍ତ୍ୱାବଧାରକ (Chief Wildlife Warden) ମତପ୍ରଦାନ କରିଛନ୍ତି ଯେ 1972 ମସିହାର ବନ୍ୟଜନ୍ତୁ ସଂରକ୍ଷଣ ଆଇନ୍ (wild life Protection Act. Part 2: Schedule 2) ଅନୁଯାୟୀ ବେଙ୍ଗମାନଙ୍କୁ ଶିକାର କରି ବାଣିଜ୍ୟ କାରବାରରେ ବିନିଯୋଗ କରିବା ବେଆଇନ୍ । ତୃତୀୟତଃ କୃଷି ମନ୍ତ୍ରଣାଳୟ ପକ୍ଷରୁ ପ୍ରସ୍ତାବ ମଧ୍ୟ ଦିଆଯାଇଛି ଯେ ବେଙ୍ଗଗୁଡ଼ିକୁ ତାଙ୍କର ଉପଯୁକ୍ତ ବଂଶବିସ୍ତାର (Population groowth) ପାଇଁ ଜଙ୍ଗଲ ସ୍ଥାନଗୁଡ଼ିକରେ ଛଡ଼ାଯିବା ଉଚିତ୍; କିନ୍ତୁ ସେମାନଙ୍କୁ ବେ ବନ୍ୟପରିବେଶ ମଧ୍ୟରୁ ଶିକାର କରିବା ନୀତି ବିରୁଦ୍ଧ । ଏହା ଯୋଗୁଁ ବାସ୍ତବିକ୍ ବେଙ୍ଗ ଶିକାର କମିଯାଇଥିଲେ ମଧ୍ୟ ସମ୍ପୂର୍ଣ୍ଣ ଭାବରେ ବନ୍ଦ ହୋଇପାରି ନାହିଁ, କାରଣ କେତେକ ମଣିଷ ସେମାନଙ୍କ ଖାଦ୍ୟ ପାଇଁ ଅଦ୍ୟାବଧି ଶିକାର କରି ଚାଲିଛନ୍ତି ।

ତେବେ ଯାହାହେଉନା କାହିଁକି ଯେହେତୁ ଭାରତ ଗୋଟିଏ କୃଷି ପ୍ରଧାନ ଦେଶ ଓ କୃଷି ଏ ଦେଶର ମୁଖ୍ୟ ମେରୁଦଣ୍ଡ, କୃଷିର ଉତ୍ପାଦନ ଠିକ୍ ରଖିବା ନିମିତ୍ତ ବେଙ୍ଗମାନଙ୍କୁ ସୁରକ୍ଷା ଏକାନ୍ତ ଆବଶ୍ୟକ । ଏହାଯୋଗୁଁ ପରିବେଶର ଖାଦ୍ୟ ଶିକୁଳି (Food Chain) ଠିକ୍ ରହିବା ସଙ୍ଗେସଙ୍ଗେ ପରିବେଶ ଭାରସାମ୍ୟକୁ ମଧ୍ୟ ଠିକ୍ କରିପାରିବ । ବିଶେଷ କରି ବୈଦେଶିକ ମୁଦ୍ରା ଅର୍ଜନ ତୁଳନାରେ ଆମ ଦେଶର କୃଷି ଉତ୍ପାଦନରେ ହ୍ରାସ ଅତି ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ ସରକାର ଯେତେ ପଦକ୍ଷେପ ନେଲେ ବି ଆମେ ସମସ୍ତେ ଏଥିରେ ସହଯୋଗ କରିବା ଉଚିତ୍ । ବିଶ୍ୱ ପ୍ରାଣୀ ସୁରକ୍ଷା ସମିତି (World Society for Protection of Animals) ବେଙ୍ଗମାନଙ୍କ ସୁରକ୍ଷା ଉଦ୍ଦେଶ୍ୟରେ ମତ ଦିଅନ୍ତି ଯେ ଛୋଟ ନିସହାୟ ପ୍ରାଣୀଟିଏ ହେଲେ ବି ସେ ଆମମାନଙ୍କ ମଧ୍ୟରୁ ଗୋଟିଏ । ଗୋଟିଏ ମୂଷା ଯେତିକି ଖାଦ୍ୟଶସ୍ୟ ନଷ୍ଟ କରିପାରେ ଗୋଟିଏ ବେଙ୍ଗ ସେତିକି ବା ତାଠାରୁ ଅଧିକ ଶସ୍ୟ ସୁରକ୍ଷା କରିପାରେ, ଏଥିରେ ଦ୍ୱିମତ ନାହିଁ । ସୁତରାଂ ବେଙ୍ଗ ନିଜକୁ ନିଜେ ରକ୍ଷା ନ କରି ପାରିଲେ ମଧ୍ୟ ଆମେ ତା ବଂଶକୁ ସୁରକ୍ଷା କରିବା ବିଧେୟ । ବୋଧହୁଏ ସେଥିପାଇଁ ଆମ ପୂର୍ବପୁରୁଷ "ବେଙ୍ଗ ମାରିଲେ କାଲା ହେବ" ବୋଲି କହି ବେଙ୍ଗ ବଂଶକୁ ପରୋକ୍ଷରେ ରକ୍ଷା କରିବା ଉଦ୍ଦେଶ୍ୟରେ ଉପଦେଶ ବାକ୍ୟ ଶୁଣାଉଥିଲେ ।

ସ୍ନାତକୋତ୍ତର ପ୍ରାଣୀବିଜ୍ଞାନ ବିଭାଗ,
ଉତ୍କଳ ବିଶ୍ୱବିଦ୍ୟାଳୟ,
ବାଣୀବିହାର—୭୫୧ ୦୦୪ ।

ଦେଶର ଭାଗ୍ୟ ଏହାର ବୁଦ୍ଧିଜୀବୀ ଶ୍ରେଣୀ ଉପରେ ନିର୍ଭର କରେ ବୋଲି କହିବା ଅତିରଞ୍ଜିତ ନୁହେଁ । ଯଦି ବୁଦ୍ଧିଜୀବୀ ଶ୍ରେଣୀ ନିଃସ୍ୱାର୍ଥପର ଓ ସ୍ୱାଧୀନଚେତା ତେବେ ସଙ୍କଟ ସମୟରେ ସେମାନଙ୍କର ନେତୃତ୍ୱ ବିଶ୍ୱାସଯୋଗ୍ୟ ।

(ଜାତିପ୍ରଥାର ନିଧନ : ଡକ୍ଟର ଆମ୍ବେଦକର)

# ସ୍ୱାଭିମାନ ପୁନଃ ପ୍ରତିଷ୍ଠାର ଶପଥ

ରାଜ୍ୟର ଅନଗ୍ରସରତା ଦୂର କରି ଓଡ଼ିଶାବାସୀଙ୍କ ସ୍ୱାଭିମାନ ପୁନଃପ୍ରତିଷ୍ଠା କରିବା ଉଦ୍ଦେଶ୍ୟରେ ରାଜ୍ୟ ସରକାରଙ୍କ ସଙ୍କଳ୍ପବଦ୍ଧ ନୂତନ ନୀତି, କାର୍ଯ୍ୟକ୍ରମ ଓ ନିଷ୍ପତ୍ତି ମଧ୍ୟରୁ କେତେକ :

- ଗ୍ରାମ୍ୟ ଅର୍ଥନୀତିର ବିକାଶ ଉଦ୍ଦେଶ୍ୟରେ ପ୍ରଥମ ପଦକ୍ଷେପ ସ୍ୱରୂପ କୃଷକ, ଗ୍ରାମ୍ୟ କାରିଗର ଓ କୃଷି ଶ୍ରମିକମାନଙ୍କ ଉପରୁ ଦଶହଜାର ଟଙ୍କା ପର୍ଯ୍ୟନ୍ତ ଋଣ ଛାଡ଼ ।
- କୃଷି ଉତ୍ପାଦନ ବୃଦ୍ଧି ଓ କୃଷକର ଉନ୍ନତି ପାଇଁ ଅଗ୍ରାଧିକାର ଭିତ୍ତିରେ କାର୍ଯ୍ୟକ୍ରମ । ଫଳପ୍ରଦ ଶସ୍ୟବୀମା ପ୍ରଚଳନ ।
- ଦ୍ରୁତ ଶିଳ୍ପାୟନ ଓ କୁଟୀରଶିଳ୍ପର ବିକାଶ ଦ୍ୱାରା ସମସ୍ତ ବେକାର ଯୁବକ ଯୁବତୀଙ୍କ ପାଇଁ କାମର ବ୍ୟବସ୍ଥା ।
- ରାଜ୍ୟରେ ଦ୍ୱିତୀୟ ଇସ୍ପାତ କାରଖାନା, ସ୍ପଞ୍ଜ ଲୁହା କାରଖାନା ଓ ତୈଳ ବିଶୋଧନାଗାର ପ୍ରତିଷ୍ଠା ଏବଂ ରେଳବାଇ ସମ୍ପ୍ରସାରଣ ଓ ବନ୍ଦର ପୋତାଶ୍ରୟର ବିକାଶ ସମ୍ପର୍କରେ ତୁରନ୍ତ ପଦକ୍ଷେପ ନିଆଯିବ । ବାସ୍ତବ ଦୃଷ୍ଟିଭଙ୍ଗୀ ନେଇ ବିଦ୍ୟୁତ୍ ଉତ୍ପାଦନ ବୃଦ୍ଧି ପାଇଁ ସର୍ବାଧିକ ଗୁରୁତ୍ୱ ଆରୋପ ।
- ପ୍ରତ୍ୟେକ ଗ୍ରାମରେ ପ୍ରାଥମିକ ବିଦ୍ୟାଳୟ, ପିଇବା ପାଣି, ସବୁଦିନିଆ ରାସ୍ତା ଓ ଚିକିତ୍ସା ବ୍ୟବସ୍ଥା ପାଇଁ ପଦକ୍ଷେପ ନିଆଯିବ ।
- ନାରୀ ନିର୍ଯ୍ୟାତନା ଓ ଯୌତୁକ ପ୍ରଥାର ଅବସାନ କରି ମହିଳାମାନଙ୍କର ସମୂହ ବିକାଶ ପାଇଁ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ କରାଯିବ ।
- ଜିଲ୍ଲା ପରିଷଦର ପୁନଃପ୍ରବର୍ତ୍ତନ ଦ୍ୱାରା ପଞ୍ଚାୟତରାଜ୍ ବ୍ୟବସ୍ଥାର ପୁନର୍ବିନ୍ୟାସ ଓ ପ୍ରତ୍ୟକ୍ଷ ନିର୍ବାଚନ ଜରିଆରେ ପଞ୍ଚାୟତରାଜ୍ ପ୍ରତିଷ୍ଠା । ମ୍ୟୁନିସିପାଲିଟି ଓ ଏନ୍: ଏ: ସି:ଗୁଡ଼ିକର ତୁରନ୍ତ ନିର୍ବାଚନ ପାଇଁ ବ୍ୟବସ୍ଥା ।
- ଆଦିବାସୀ ବହୁଳ ଅଞ୍ଚଳର ସର୍ବାଙ୍ଗୀନ ଉନ୍ନତି ପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରାଯିବ ।
- ପ୍ରଶାସନ ବ୍ୟବସ୍ଥାକୁ ଦକ୍ଷ, ନିରପେକ୍ଷ ଓ ଫଳପ୍ରସୂ କରିବା ପାଇଁ ବହୁବିଧ ପଦକ୍ଷେପ । ଜନସାଧାରଣଙ୍କ ଆପତ୍ତି ଅଭିଯୋଗ ଶୁଣି ପ୍ରତିକାର ବିଧାନ ପାଇଁ ନୂତନ ବିଭାଗ ସୃଷ୍ଟି । ଦୁର୍ନୀତି ବିରୁଦ୍ଧରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ସାଧାରଣ ଜୀବନକୁ ନିର୍ମଳ କରିବା ପାଇଁ ବ୍ୟବସ୍ଥା । ବେଆଇନ ଭାବେ ପୁଞ୍ଜି ଠୁଳ କରୁଥିବା ବ୍ୟକ୍ତିମାନଙ୍କ ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ ପାଇଁ ସ୍ୱତନ୍ତ୍ର ତଦନ୍ତକାରୀ ସଂସ୍ଥା ପ୍ରତିଷ୍ଠା କରାଯାଇଛି । ଜନସାଧାରଣଙ୍କ ଆଶା ଆକାଂକ୍ଷା ପୂରଣ କରି ଓଡ଼ିଶାକୁ ସର୍ବୋତ୍ତମ ରାଜ୍ୟରେ ପରିଣତ କରିବା ପାଇଁ ଆସନ୍ତୁ ଆଜିର ପବିତ୍ର ଦିବସରେ ଶପଥ ନେବା ।

ସୂଚନା ଓ ଲୋକ ସମ୍ପର୍କ ବିଭାଗ, ଓଡ଼ିଶା

ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା




## ପ୍ରତ୍ୟୟର ପ୍ରତିଶ୍ରୁତି

ଆମ ରାଜ୍ୟର ବାରିପଦାଠାରୁ ପଚିଶି କିଲୋମିଟର ଦୂର ବଡସାହି, ସେଠାରୁ ପ୍ରାୟ ଦୁଇ କିଲୋମିଟର ଗଲେ ପଡିବ ଛେଳିଆ ବୋଲି ଗୋଟିଏ ଗାଁ । ତ୍ରିବେଣୀ ବେହେରା ସେଇ ଗାଁର ଜଣେ ବିଧବା । ଆଗକୁ କେହି ନାହିଁ କି ପଛକୁ କେହି ନାହିଁ । ଅନେକ ଦିନ ତଳେ ଯେବେ ତାଙ୍କ ସ୍ୱାମୀଙ୍କ ମୃତ୍ୟୁ ହେଲା, ଅନନ୍ୟୋପାୟ ହୋଇ ସେ ନିଜ ବାପଘର ଗାଁ ଛେଳିଆକୁ ଚାଲି ଆସିଲେ । ବାପା ଭାଇଙ୍କ ଉପରେ ବୋଝ ହୋଇ ରହିବାକୁ ତାଙ୍କୁ ଭଲ ଲାଗିଲା ନାହିଁ । 'ଛେଳିଆ ଗୃହଲକ୍ଷ୍ମୀ ସମବାୟ ସମିତି' ନାମରେ ଅନୁଷ୍ଠାନଟିଏ ଗଢି ସେ ଗାଁର ଝିଅ ବୋହୂଙ୍କୁ ନେଇ ସାଇକେଲ୍ ଓ ରିକ୍ସା ଚକ ପାଇଁ ଫୁଲ ତିଆରି କାମରେ ଲାଗିପଡିଲେ । ଅଳସରେ ସମୟ କାଟିବା ପାଇଁ ତାଙ୍କୁ ସମୟ ମିଳିଲା ନାହିଁ । ସତୁରି ବର୍ଷର ବୃଦ୍ଧା ତ୍ରିବେଣୀ ବେହେରା........ ଏବେ ସମିତି କାମରୁ ଅବସର ନେଇଛନ୍ତି । କାରଣ ସମିତି କାମରେ ବାରିପଦା, କଟକ, ଭୁବନେସ୍ୱର ଆଦି ସ୍ଥାନକୁ ଦୌଡାଧାପଡ କରିବାକୁ ସେ ଆଉ ପାରୁନାହାନ୍ତି । ହେଲେ ତାଙ୍କ ହାତ ବନ୍ଦ ହୋଇନି, ନିଜ ପାଇଁ ନିଜେ ରୋଜଗାର କରିବାର ମନୋବୃତ୍ତିରେ ଏତେ ଟିକେ ବି ଊଣା ହୋଇନି ।

ଚଉମୋହାଠାରୁ ପାଞ୍ଚ କିଲୋମିଟର ଦୂର ବଣିଆ ବୋଲି ଗୋଟିଏ ଗାଁ । ସେଇ ଗାଁର କମାରମାନେ ଗଢିଥିଲେ ଗୋଟିଏ ସମବାୟ ସମିତି । ବଣିଆ ବହୁମୁଖୀ କାରିଗରୀ ସମବାୟ ସମିତି । ଖଦୀ ବୋର୍ଡ ପକ୍ଷରୁ ତାଙ୍କୁ ପ୍ରଥମେ କାର୍ଯ୍ୟକାରୀ ମୂଳଧନ ଆକାରରେ ଦୁଇହଜାର ଟଙ୍କା ମାତ୍ର ଦିଆଯାଇଥିଲା । ୧୯୭୯–୮୦ ମସିହାର କଥା । ସେହି ସମୟରେ ଥରେ ମୁଁ ଯାଇଥିଲି ସେଠିକୁ । କି ଆଗ୍ରହ ଥିଲା ସେମାନଙ୍କ ମନରେ, କି ଉଦ୍ଦୀପନା ! ତଙ୍ଗା ଓ କବାଟ ପାଇଁ କଣ୍ଟା ତିଆରି କାମ ଥିଲା ସେମାନଙ୍କର ମୁଖ୍ୟ ବ୍ୟବସାୟ । ଜଣ ଜଣ କରି ସେଇ ଗାଁର, ପ୍ରାୟ ପନ୍ଦର କୋଡିଏ ଜଣ କମାର ଭାଇଙ୍କ ସହ ମୁଁ କଥାବାର୍ତ୍ତା କରିଥିଲି । ସେମାନଙ୍କର କଥାରେ ଓ ମନୋବୃତ୍ତିରେ ଯେଉଁ ସାହସ ଓ ସମ୍ଭାବନାର ଝଲକ ଥିଲା ତାହା ମୋତେ ସେଦିନ ଅନନ୍ୟ–ସାଧାରଣ ମନେ ହୋଇଥିଲା । ସେଦିନ ଯେଉଁମାନେ ବଣିଆ ସମବାୟ ସମିତିର କର୍ଣ୍ଣଧାର ସହଯୋଗୀ ଥିଲେ ସେମାନଙ୍କ ମଧ୍ୟରୁ କେତେକ ସେପୁରକୁ ଗଲେଣି; ତଥାପି ସମିତି ଅଛି ଓ ଲୋକମାନେ ଉପକୃତ ହେଉଛନ୍ତି ।

ଶ୍ରୀ ବିଜୟକାନ୍ତ ମହାପାତ୍ର
ଲତାଭବନ, ବୁଢେଶ୍ୱରୀ କଲୋନୀ,
ଭୁବନେଶ୍ୱର–୭୫୧୦୦୬

## ଆଦର୍ଶ ଶ୍ରୀ ବାଲାଜୀ ଯୁବକ ସଙ୍ଘ

ଟିକିଟି ବ୍ଲକ୍‌ର ଲିଆଖାଇ ଗ୍ରାମରେ ଶ୍ରୀ ନରସିଂହ ପ୍ରଧାନଙ୍କ ସଭାପତିତ୍ୱରେ ଗୋଟିଏ ଯୁବକ ସଙ୍ଘ ଗଠନ କରାଯାଇ ୧୯୮୬ ମସିହାରେ ରେଜିଷ୍ଟ୍ରିଭୁକ୍ତ ହୋଇଅଛି । ୩୧ ଜଣ ସଭ୍ୟ ବିଶିଷ୍ଟ ଏହି ଯୁବକ ସଙ୍ଘ ନିଜ ଗ୍ରାମରେ ତଥା ଆଖପାଖ ଗ୍ରାମରେ ସେବା କାର୍ଯ୍ୟ ତଥା ସରକାରଙ୍କ ବିଭିନ୍ନ ଉନ୍ନତିମୂଳକ ଯୋଜନା ବିଶେଷ କରି ପରିବାର କଲ୍ୟାଣ, ବୃକ୍ଷ ରୋପଣ ଇତ୍ୟାଦି କାର୍ଯ୍ୟକ୍ରମ ସମ୍ପର୍କରେ ସର୍ବସାଧାରଣଙ୍କୁ ଅବଗତି କରାଇ ବିଶେଷ ସୁନାମ ଅର୍ଜନ କରି ପାରିଛନ୍ତି । ୧୯୮୮ ମସିହାରେ ଯୁବକ ସଙ୍ଘର ସଭ୍ୟମାନେ ଗ୍ରାମରେ ଥିବା ଭଗ୍ନ କୂପର ମରାମତି ଏବଂ ପଙ୍କୋଦ୍ଧାର କାର୍ଯ୍ୟ ସମ୍ପାଦନ କରିବା ସଙ୍ଗେ ସଙ୍ଗେ ଗ୍ରାମ ନାଳ ଏବଂ ରାସ୍ତା ସଫା କରି ଗ୍ରାମରେ ଏକ ସୁସ୍ଥ ବାତାବରଣ ସୃଷ୍ଟି କରି ପାରିଛନ୍ତି । ଉକ୍ତ ବର୍ଷ ପ୍ରବଳ ବର୍ଷା ଯୋଗୁଁ ଗ୍ରାମର ଗୁପାବନ୍ଧ ଭାଙ୍ଗି

ଯିବାରୁ ଯୁବକ ସଙ୍ଘର ସଭ୍ୟମାନେ ଗ୍ରାମବାସୀଙ୍କ ସହାୟତାରେ ରାତିରେ ସାତ ଘଣ୍ଟାରୁ ଉର୍ଦ୍ଧ୍ୱ ପରିଶ୍ରମ କରି ପାଣି ଅଟକାଇ ପାରିଥିଲେ । ବନ୍ଧ ଭିତରକୁ ସୁବିଧାରେ ଯାଇ ଗାଧୋଇବା ପାଇଁ ଯୁବକ ସଙ୍ଘର ସଭ୍ୟମାନେ ବନ୍ଧ କୂଳରେ ପକ୍କା ପାହାଚ ନିର୍ମାଣ କରିଛନ୍ତି । ୧୯୮୭-୮୮ ମସିହାରେ ପରିବାର କଲ୍ୟାଣ ବିଭାଗ ପକ୍ଷରୁ ଲିଆଖାର ଗ୍ରାମରେ ଯେଉଁ ଶିବିର ଅନୁଷ୍ଠିତ ହୋଇଥିଲା, ସେଥିରେ ଯୁବକ ସଙ୍ଘର ସଭ୍ୟମାନେ ସକ୍ରିୟ ଅଂଶ ଗ୍ରହଣ କରି ସମସ୍ତ ପ୍ରକାର ସହଯୋଗ କରିଥିଲେ । ସଭ୍ୟମାନେ ଶାରୀରିକ ଶ୍ରମଦାନ କରି ଏବଂ ନିଜ ଅଞ୍ଚଳର ବଦାନ୍ୟ ବ୍ୟକ୍ତିମାନଙ୍କଠାରୁ ସାହାଯ୍ୟ ପାଇ ଗୋଟିଏ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଛନ୍ତି । ଲିଆଖାର ସ୍କୁଲ ଏବଂ କୃଷ୍ଣପୁର ଉଚ୍ଚ ମଧ୍ୟ ଇଂରାଜୀ ବିଦ୍ୟାଳୟର ବାର୍ଷିକ ଉତ୍ସବରେ ଯୁବକ ସଙ୍ଘ ପକ୍ଷରୁ ପ୍ରତ୍ୟେକ ବିଷୟରେ ଶ୍ରେଷ୍ଠ ସ୍ଥାନ ହାସଲ କରିଥିବା ପିଲାମାନଙ୍କୁ ପୁରସ୍କାର ପ୍ରଦାନ କରାଯାଇଥାଏ । ସାମାଜିକ ବନୀକରଣ ବିଭାଗ ପକ୍ଷରୁ ଅନୁମତି ପାଇ ଯୁବକ ସଙ୍ଘର ସଭ୍ୟମାନେ ଚଳିତ ବର୍ଷ ୧୦,୦୦୦ ଚାରା ଗଛ ପ୍ରସ୍ତୁତ କରି ନିଜ ଗ୍ରାମରେ ତଥା ଆଖପାଖ ଗ୍ରାମରେ ମାଗଣାରେ ବଣ୍ଟନ କରିବା ପାଇଁ ପ୍ରସ୍ତାବ କରିଛନ୍ତି । ସଭ୍ୟମାନେ ପ୍ରକାଶ କରିଛନ୍ତି, ଚଳିତ ବର୍ଷ ଗ୍ରାମର ବନ୍ଧ କୂଳ ଏବଂ ଗ୍ରାମ୍ୟ ରାସ୍ତାର ଉଭୟ ପାର୍ଶ୍ୱରେ ଯୁବକ ସଙ୍ଘ ପକ୍ଷରୁ ବୃକ୍ଷ ରୋପଣ କାର୍ଯ୍ୟ ଗ୍ରହଣ କରାଯିବ ।

ସରକାରଙ୍କ ତରଫରୁ ଏହି ଯୁବକ ସଙ୍ଘ କୌଣସି ସାହାଯ୍ୟ ପାଇ ନଥିଲେ ମଧ୍ୟ ପ୍ରତ୍ୟେକ ସଭ୍ୟ ପ୍ରତି ମାସରେ କିଛି କିଛି ଚାନ୍ଦା ଦେଇ ଏବଂ ଗ୍ରାମବାସୀଙ୍କ ସାହାଯ୍ୟ ନେଇ ଏହି ସମସ୍ତ କାର୍ଯ୍ୟ କରିବାରେ ସମର୍ଥ ହୋଇ ପାରୁଛନ୍ତି । ନିକଟସ୍ଥ କୋଇଲଥୁଆ ଗ୍ରାମରେ ଘଟିଥିବା ଅଗ୍ନିକାଣ୍ଡ ବେଳେ ଯୁବକ ସଙ୍ଘର ସଭ୍ୟମାନେ ଦୁଃସାହସର ସହିତ ନିଆଁ ଲିଭାଇଥିଲେ ଏବଂ ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କୁ ଖାଦ୍ୟ ଏବଂ ବସ୍ତ୍ର ବଣ୍ଟନ କରିଥିଲେ ।

ଏହି ଯୁବକ ସଙ୍ଘ ଭବିଷ୍ୟତରେ ଚିକିଟି ଅଞ୍ଚଳ ତଥା ସାରା ଓଡ଼ିଶାରେ ଗୋଟିଏ ଆଦର୍ଶ ଯୁବକ ସଙ୍ଘ ରୂପେ ଖ୍ୟାତି ଅର୍ଜନ କରିବ ବୋଲି ଆଶା କରାଯାଏ ।

ଅନୁବିଭାଗୀୟ ସୂଚନା ଓ ଲୋକ ସମ୍ପର୍କ
ଅଧିକାରୀ, ଛତ୍ରପୁର, ଗଞ୍ଜାମ ।

# ଜାତୀୟ ଯୁବ ପୁରସ୍କାର ବିଜୟିନୀ : ଶୁଭଲକ୍ଷ୍ମୀ

କୁମାରୀ ଶୁଭଲକ୍ଷ୍ମୀ ନାୟକ ହେଉଛନ୍ତି ଓଡ଼ିଶାର ପ୍ରଥମ ମହିଳା ଯେ କି ସମାଜ ସେବା କ୍ଷେତ୍ରରେ ଉଲ୍ଲେଖନୀୟ ଭୂମିକା ନିମନ୍ତେ ୧୯୮୭-୮୮ରେ ଜାତୀୟ ସ୍ତରରେ ପୁରସ୍କୃତ ହୋଇଛନ୍ତି । ଅନଗ୍ରସର ଓ ଅନୁନ୍ନତ କଳାହାଣ୍ଡି ଜିଲ୍ଲାରେ ୧୯୬୫ ମାର୍ଚ୍ଚରେ କୁମାରୀ ନାୟକଙ୍କ ଜନ୍ମ ଏବଂ ଉକ୍ତ ଜିଲ୍ଲାର ପୂର୍ବତନ ବିଧାୟକ ତଥା ଅନ୍ୟତମ ସମାଜ ସେବୀ ଶ୍ରୀ ମହେଶ୍ୱର ନାୟକଙ୍କ କନ୍ୟା । କୁମାରୀ ଶୁଭଲକ୍ଷ୍ମୀ ଭବାନୀପାଟଣା ସରକାରୀ ବାଳିକା ବିଦ୍ୟାଳୟରୁ ମାଟ୍ରିକ୍, ଭୁବନେଶ୍ୱର ରମାଦେବୀ ମହିଳା ମହାବିଦ୍ୟାଳୟରୁ ଆଇ. ଏ. ଏବଂ ଭବାନୀପାଟଣା ସରକାରୀ ମହାବିଦ୍ୟାଳୟରୁ ବି. ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । କିନ୍ତୁ ଛାତ୍ରାବସ୍ଥାରୁ ହିଁ ଅଧ୍ୟୟନ ସାଙ୍ଗକୁ କ୍ରୀଡ଼ା କସରତ ଏବଂ ବିଭିନ୍ନ ସମାଜ ସେବା ଦିଗରେ ତାଙ୍କଠାରେ ବିଶେଷ ଆଗ୍ରହ ପରିଲକ୍ଷିତ ହୋଇଥିଲା । କଲେଜ ଅଧ୍ୟୟନ କାଳରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ ସମେତ କଲେଜ ଏନ୍. ସି. ସି.ରେ ସକ୍ରିୟ ଅଂଶ ଗ୍ରହଣ କରି ଉଚ୍ଚ ପ୍ରଶଂସିତ ହୋଇଥିଲେ । କ୍ରୀଡ଼ା କସରତ କ୍ଷେତ୍ରରେ ବି ସେ ଜଣେ ନିପୁଣ କ୍ରୀଡ଼ାବିତ୍ ରୂପେ ନିଜକୁ ପ୍ରତିଷ୍ଠିତ କରି ପାରିଥିଲେ । ୧୯୮୫, ୧୯୮୬ ଓ ୧୯୮୭ରେ ଅନୁଷ୍ଠିତ ଆନ୍ତଃକଲେଜ କ୍ରୀଡ଼ା ପ୍ରତିଯୋଗିତାରେ ସଟପୁଟ୍‌ରେ ନିରବଚ୍ଛିନ୍ନ ଭାବେ ଦ୍ୱିତୀୟ ସ୍ଥାନ ବଜାୟ ରଖି ବିଶେଷ ପ୍ରଶଂସିତ ହୋଇଥିଲେ ।

**ସମାଜ ସେବା**—ଛାତ୍ରାବସ୍ଥାରୁ ହିଁ ସମାଜ ସେବା ପ୍ରତି କୁମାରୀ ନାୟକଙ୍କଠାରେ ବିଶେଷ ଆଗ୍ରହ ପରିଲକ୍ଷିତ ହୋଇଥିଲା । ବିଶେଷ କରି ଗ୍ରାମାଞ୍ଚଳର ଗରିବ, ଦୁଃସ୍ଥ ମହିଳା ଓ ଶିଶୁମାନଙ୍କ କଲ୍ୟାଣ ସାଧନ ଦିଗରେ ସେ ସର୍ବଦା ତତ୍ପର । ୧୯୮୭ରେ ସେ ଭବାନୀପାଟଣାରେ ମାତୃଶ୍ରୀ ମହିଳା ମଣ୍ଡଳ ନାମକ ଏକ ସଂସ୍ଥା ଗଠନ କରି ଏହାର ସମ୍ପାଦିକା ଦାୟିତ୍ୱ ବହନ କରି ଆସୁଛନ୍ତି । ଏହି ସଂସ୍ଥା ଜରିଆରେ ସେ ନିୟମିତ ଚକ୍ଷୁ ଚିକିତ୍ସା ଶିବିର, ପରିବାର କଲ୍ୟାଣ ଶିବିରମାନ ଆୟୋଜନ କରି ଗ୍ରାମାଞ୍ଚଳର ଦୃଷ୍ଟିହୀନଙ୍କ ଦୃଷ୍ଟିଶକ୍ତି ଫେରାଇ ଆଣିବା ଏବଂ ପରିବାର କଲ୍ୟାଣ କାର୍ଯ୍ୟକ୍ରମର ସଫଳ ରୂପାୟନ ଦିଗରେ ଉଲ୍ଲେଖନୀୟ ପଦକ୍ଷେପ ନେଇ ଆସୁଛନ୍ତି । ଏହାଛଡ଼ା, ଗ୍ରାମାଞ୍ଚଳର ମହିଳାମାନଙ୍କୁ ଲାଭଜନକ କାମଧନ୍ଦା ଯୋଗାଇଦେବା ଉଦ୍ଦେଶ୍ୟରେ ସିଲେଇ, ହସ୍ତଶିଳ୍ପ ଆଦି ଧନ୍ଦାରେ ତାଲିମ ଦେବାର ବ୍ୟବସ୍ଥା କରି ଆସୁଛନ୍ତି । ଶିଶୁମାନଙ୍କ କଲ୍ୟାଣ ନିମନ୍ତେ ବନ୍ଧୁ ବାଲବାଡ଼ି କେନ୍ଦ୍ରର ପରିଚାଳନା ଭାର ମଧ୍ୟ ନିଜ ହାତକୁ ନେଇଛନ୍ତି ।

**ଉନ୍ନୟନ କାର୍ଯ୍ୟକ୍ରମରେ ସକ୍ରିୟ ସହଯୋଗ**—କଳାହାଣ୍ଡି ଜିଲ୍ଲାର ବିକାଶ ନିମନ୍ତେ ଗଠିତ ବିଭିନ୍ନ ସଂସ୍ଥା ଓ ସମିତି ସହିତ କୁମାରୀ ନାୟକ ଓତଃପ୍ରୋତ ଭାବେ ଜଡ଼ିତ । ସେ କଳାହାଣ୍ଡି ଜିଲ୍ଲା ରେଡ଼କ୍ରସ୍ ସମିତିର ଉପସଭାପତି, ଜିଲ୍ଲା ଆଇନ ପରାମର୍ଶଦାତା କମିଟି ମହିଳା ଶାଖାର ଆବାହିକା, ଜିଲ୍ଲା ମଙ୍ଗଳ କେନ୍ଦ୍ରର ଉପସଭାପତି ଏବଂ ଜିଲ୍ଲା ପ୍ରୌଢ଼ ଶିକ୍ଷା ପରାମର୍ଶଦାତା କମିଟି, ନେହେରୁ ଯୁବ କେନ୍ଦ୍ର ପରାମର୍ଶଦାତା କମିଟି ଓ ରେଡ଼କ୍ରସ୍ ଆଦି ବିଦ୍ୟାଳୟ ପରିଚାଳନା କମିଟିର ସଦସ୍ୟା ଅଟନ୍ତି । ଏହାଛଡ଼ା, କୁମାରୀ ନାୟକ ଜୟପୁର ଆକାଶବାଣୀ କେନ୍ଦ୍ର ପରାମର୍ଶଦାତା କମିଟିର ମଧ୍ୟ ଅନ୍ୟତମ ସଦସ୍ୟା ଅଟନ୍ତି । କଳାହାଣ୍ଡି ଜିଲ୍ଲା ଖାଉଟି ସୁରକ୍ଷା କମିଟିର ମଧ୍ୟ ସେ ସଦସ୍ୟା ଅଛନ୍ତି । ୧୯୮୦ରେ ସେ ମାଣିକେଶ୍ୱରୀ ମହିଳା ହସ୍ତଶିଳ୍ପ ସମବାୟ ସମିତି ଗଠନ କରି ଏହାର ଅଧ୍ୟକ୍ଷା ରୂପେ ଦାୟିତ୍ୱ ବହନ କରି ଆସୁଛନ୍ତି । କୁମାରୀ ନାୟକ ରାଜ୍ୟ ସମାଜ ମଙ୍ଗଳ ବୋର୍ଡ଼ର ସଦସ୍ୟା ରହି କଳାହାଣ୍ଡି ଜିଲ୍ଲାର ବିଭିନ୍ନ ସମାଜ ମଙ୍ଗଳ କାର୍ଯ୍ୟକ୍ରମ ସହିତ ଜଡ଼ିତ ଅଛନ୍ତି । ସମ୍ପ୍ରତି କୁମାରୀ ନାୟକ କଳାହାଣ୍ଡି ଜିଲ୍ଲା ନେହେରୁ ଯୁବ କେନ୍ଦ୍ରର ସଂଯୋଜିକା ଅଛନ୍ତି ।

କୁମାରୀ ଶୁଭଲକ୍ଷ୍ମୀ ନାୟକ ନିଜର ନିଷ୍ଠାପର ସମାଜ ସେବା କାର୍ଯ୍ୟ ନିମନ୍ତେ ଉଚ୍ଚ ପ୍ରଶଂସିତ ହେବା ସଙ୍ଗେ ସଙ୍ଗେ ଜାତୀୟ ଯୁବ ପୁରସ୍କାର ଲାଭ କରିଛନ୍ତି । ୧୯୮୯ ମସିହା ଜାନୁଆରୀ ୧୦ ତାରିଖରେ ଦିଲ୍ଲୀଠାରେ ଅନୁଷ୍ଠିତ ଏକ ସ୍ୱତନ୍ତ୍ର ଉତ୍ସବରେ ଏକ ସ୍ୱର୍ଣ୍ଣ ପଦକ ଏକ ମାନପତ୍ର ଏବଂ ନଗଦ ୫,୦୦୦ ଟଙ୍କା ତାଙ୍କୁ ପ୍ରଦାନ କରାଯାଇଥିଲା । ଏହି ଜାତୀୟ ଯୁବ ପୁରସ୍କାର ଲାଭ କରିବାରେ କୁମାରୀ ନାୟକ ହେଉଛନ୍ତି ପ୍ରଥମ ଓଡ଼ିଆ ମହିଳା ।

ଅନଗ୍ରସର କଳାହାଣ୍ଡି ଜିଲ୍ଲାର ବିଶେଷ କରି ଗ୍ରାମାଞ୍ଚଳରେ ବାସ କରୁଥିବା ଗରିବ, ଦୁଃସ୍ଥ ମହିଳା ଓ ଶିଶୁମାନଙ୍କ କଲ୍ୟାଣ ସାଧନ ହିଁ କୁମାରୀ ନାୟକଙ୍କ ଲକ୍ଷ୍ୟ ।

—ଶାନ୍ତି ପତି

# ସମ୍ବାଦ ପରିକ୍ରମା

## ଜନଗଣନା ପାଇଁ ଜନସହଯୋଗ ଆବଶ୍ୟକ

—ବିଜୁ ପଟ୍ଟନାୟକ

ଆଗାମୀ ଜନଗଣନା ଉପଲକ୍ଷେ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକ ନିମ୍ନୋକ୍ତ ବାର୍ତ୍ତା ଦେଇ ଏହି ଜାତୀୟ କାର୍ଯ୍ୟକ୍ରମରେ ସାମିଲ୍ ହେବା ପାଇଁ ରାଜ୍ୟବାସୀଙ୍କୁ ନିବେଦନ କରିଛନ୍ତି ।

"ଆମ ଦେଶରେ ଆଗାମୀ ଜନଗଣନା ୧୯୯୧ ମସିହା ଫେବୃଆରୀ ଓ ମାର୍ଚ୍ଚ ମାସରେ ଅନୁଷ୍ଠିତ ହେବ । ୧୮୭୧ ମସିହାଠାରୁ ନିରବଚ୍ଛିନ୍ନ ଭାବରେ ପ୍ରତି ଦଶ ବର୍ଷରେ ଥରେ ଏହି ବିରାଟ ଜାତୀୟ କାର୍ଯ୍ୟ ସମାହିତ ହୋଇ ଆସୁଛି । ଦେଶରେ ସରକାରୀ ନୀତି ନିର୍ଦ୍ଧାରଣ ଏବଂ ଜାତୀୟ ତଥା ଆଞ୍ଚଳିକ ଯୋଜନା ପ୍ରଣୟନ କ୍ଷେତ୍ରରେ ଜନଗଣନାର ପ୍ରାଧାନ୍ୟ ଏବଂ ଭୂମିକା ସମଗ୍ର ବିଶ୍ୱରେ ସ୍ୱୀକୃତି ଲାଭ କରିଛି । ଲୋକସଂଖ୍ୟା, ପରିବାର ଓ ଗୃହ ସମ୍ବନ୍ଧୀୟ ସମସ୍ତ ଉପାଦେୟ ତଥ୍ୟ ଏବଂ ସାମାଜିକ ତଥା ଅର୍ଥନୈତିକ କ୍ଷେତ୍ରରେ ବହୁ ମୌଳିକ ତଥ୍ୟ ଜନଗଣନା ଦ୍ୱାରା ମିଳିଥାଏ ।

"ଜନଗଣନା କାର୍ଯ୍ୟରେ ପ୍ରଥମ ପର୍ଯ୍ୟାୟରେ ସମଗ୍ର ରାଜ୍ୟରେ ଗୃହଗୁଡ଼ିକୁ ନମ୍ବର କରିବା ଏବଂ ଗଣତି କରିବା ପାଇଁ ପ୍ରସ୍ତୁତି କାର୍ଯ୍ୟ ଏହି ମଧ୍ୟରେ ଆରମ୍ଭ ହୋଇଛି । ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ସମଗ୍ର ରାଜ୍ୟରେ ଆସନ୍ତା ଅପ୍ରେଲ ମାସ ୬ ତାରିଖରୁ ଆରମ୍ଭ ହୋଇ ଅପ୍ରେଲ ମାସ ଶେଷ ପର୍ଯ୍ୟନ୍ତ ଚାଲିବ । ଗୃହ ତାଲିକା ପ୍ରସ୍ତୁତି ଭାରତର ଜନଗଣନା କାର୍ଯ୍ୟରେ ଏକ ପ୍ରାରମ୍ଭିକ ଭିତ୍ତି ଭାବରେ ସହାୟକ ହେବ । ଏହି କାର୍ଯ୍ୟକ୍ରମ ଦ୍ୱାରା ଗୃହଗୁଡ଼ିକର ସଂଖ୍ୟା, ଗୃହ ସମ୍ବନ୍ଧୀୟ ତଥ୍ୟ, ପରିବାରଗୁଡ଼ିକର ସଂଖ୍ୟା ଏବଂ ସେମାନଙ୍କୁ ମିଳୁଥିବା ବିଦ୍ୟୁତ୍ ଶକ୍ତି, ପାନୀୟ ଜଳ ପ୍ରଭୃତି ସୁବିଧା ସୁଯୋଗ ସମ୍ପର୍କରେ ତଥ୍ୟମାନ ସଂଗ୍ରହ କରାଯିବ । ଗୃହତାଲିକା କାର୍ଯ୍ୟକ୍ରମ ସମୟରେ ରାଜ୍ୟରେ ସମସ୍ତ ଉଦ୍ୟୋଗଗୁଡ଼ିକର ମଧ୍ୟ ତାଲିକା ପ୍ରସ୍ତୁତି କରାଯିବ ।

"ଚଳିତ ଅପ୍ରେଲ ମାସରେ ଆରମ୍ଭ ହେବାକୁ ଯାଉଥିବା ଗୃହତାଲିକା ପ୍ରସ୍ତୁତି କାର୍ଯ୍ୟକ୍ରମଟିକୁ ସମ୍ପାଦନ କରିବା ପାଇଁ ସ୍ଥାନୀୟ ସ୍କୁଲ୍ ଶିକ୍ଷକ ଏବଂ ଅନ୍ୟାନ୍ୟ କର୍ମଚାରୀମାନଙ୍କ ମଧ୍ୟରୁ ପ୍ରାୟ ୪୧,୦୦୦ ଗଣନାକାରୀ ଓ ୯,୦୦୦ ସୁପରଭାଇଜର୍ ନିଯୁକ୍ତ ପାଇଛନ୍ତି ଏବଂ ସେମାନଙ୍କୁ ବିଶଦ ଭାବରେ ତାଲିମ ଦିଆଯାଉଛି । ଏଭଳି ଏକ ବ୍ୟାପକ କାର୍ଯ୍ୟକ୍ରମର ସଫଳତା ସମ୍ପୃକ୍ତ ଗଣନାକାରୀ, ସୁପରଭାଇଜର୍ ତଥା ଅନ୍ୟାନ୍ୟ ଜନଗଣନା କର୍ମଚାରୀମାନଙ୍କର କର୍ତ୍ତବ୍ୟପରାୟଣତା ଓ ନିଷ୍ଠା ଏବଂ ଜନସାଧାରଣଙ୍କର ଆନ୍ତରିକ ସହଯୋଗ ଉପରେ ନିର୍ଭର କରେ । ଭାରତୀୟ ଜନଗଣନା ଆଇନରେ ପ୍ରଶ୍ନ ମାଧ୍ୟମରେ ବ୍ୟକ୍ତିବିଶେଷଙ୍କଠାରୁ ସଂଗୃହୀତ ତଥ୍ୟାବଳୀକୁ ସମ୍ପୂର୍ଣ୍ଣ ଗୋପନୀୟ ରଖାଯିବା ପାଇଁ ନିର୍ଭର ପ୍ରତିଶ୍ରୁତି ଦିଆଯାଇଛି ।

"ଓଡ଼ିଶାର ସମଗ୍ର ରାଜ୍ୟବାସୀ ଏହି ମହାନ କାର୍ଯ୍ୟକ୍ରମରେ ଅଂଶ ଗ୍ରହଣ କରିବା ସଙ୍ଗେସଙ୍ଗେ ଗଣନାକାରୀଙ୍କ ସହିତ ସମ୍ପୂର୍ଣ୍ଣ ସହଯୋଗ କରିବା ପାଇଁ ମୁଁ ନିବେଦନ କରୁଛି ।

"ମୁଁ ଏହି ଜାତୀୟ କାର୍ଯ୍ୟକ୍ରମର ସମ୍ପୂର୍ଣ୍ଣ ସଫଳତା କାମନା କରୁଅଛି ।"

## ବିଦ୍ୟୁତ୍ ଉତ୍ପାଦନ ବୃଦ୍ଧି

ତାଳଚେର ତାପଜ ବିଦ୍ୟୁତ୍ କେନ୍ଦ୍ରର ଲୋଡ୍‌ଫ୍ୟାକ୍ଟର ଗତ ମାର୍ଚ୍ଚ ମାସରେ ଶତକଡା ୫୦ ଭାଗକୁ ବୃଦ୍ଧି ପାଇବା ଫଳରେ ମାର୍ଚ୍ଚ ୩୦ ତାରିଖ ସୁଦ୍ଧା ୧,୪୫୦ ନିୟୁତ ୟୁନିଟ୍ ବିଦ୍ୟୁତ୍‌ଶକ୍ତି ଉତ୍ପାଦନ ହୋଇଛି । ଫଳରେ ଗତ ଅର୍ଥିକ ବର୍ଷ ପାଇଁ ଧାର୍ଯ୍ୟ

କରାଯାଇଥିବା ଲକ୍ଷ୍ୟ ପୂରଣ ହୋଇପାରିଛି । ବର୍ତ୍ତମାନ ସୁଦ୍ଧା ଏହି କେନ୍ଦ୍ରରୁ ଉତ୍ପାଦିତ ହୋଇଥିବା ବିଦ୍ୟୁତ୍ ୟୁନିଟ୍ ମଧ୍ୟରେ ଏହା ସର୍ବାଧିକ ବୋଲି ଓଡିଶା ବିଦ୍ୟୁତ୍ ବୋର୍ଡ ସୂତ୍ରରୁ ପ୍ରକାଶ ।

# ଯୋଜନା ରାଷ୍ଟ୍ରମନ୍ତ୍ରୀଙ୍କ ଗଞ୍ଜାମ ଜିଲ୍ଲା ଗସ୍ତ

ଯୋଜନା ଓ ସମନ୍ୱୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଯାଦବ ମାଝୀ ଗତ ମାର୍ଚ୍ଚ ୨୫ ତାରିଖ ଦିନ ହିଞ୍ଜିଳିକାଟୁ ବିଧାୟକ ଶ୍ରୀ ହରିହର ସାହୁଙ୍କ ସହିତ ତାରାତାରିଣୀ ଦେବୀପୀଠ ଦର୍ଶନ କରିଥିଲେ । ଉକ୍ତ ପୀଠକୁ ଏକ ଏକ ପର୍ଯ୍ୟଟନ କେନ୍ଦ୍ର ରୂପେ ପରିଣତ କରିବା ନିମନ୍ତେ ସେ ମତ ପ୍ରକାଶ କରିଥିଲେ । ଏହି ପରିପ୍ରେକ୍ଷୀରେ ଉକ୍ତ ପୀଠରେ ଜଳ ଯୋଗାଣ ବ୍ୟବସ୍ଥାକୁ ତ୍ୱରାନ୍ୱିତ କରିବା ନିମନ୍ତେ ମଧ୍ୟ ସେ ମତ ପ୍ରକାଶ କରିଥିଲେ । ମନ୍ଦିର ସେବାୟତମାନଙ୍କର କେତେକ ଦାବୀର ଆଶୁ ପ୍ରତିକାର ସମ୍ବନ୍ଧରେ ସେ ସ୍ଥାନୀୟ ତହସିଲଦାରଙ୍କୁ ପରାମର୍ଶ ଦେଇଥିଲେ । ପାଣ୍ଡିଆ ନିକଟସ୍ଥ ମହାନ୍ ଐତିହାସିକ ପୀଠ ଜଉଗଡଠାରେ ସମ୍ରାଟ୍ ଅଶୋକଙ୍କର ଶିଳାଲିପି ପରିଦର୍ଶନ କରିବା ସଙ୍ଗେସଙ୍ଗେ ଜଉଗଡ ହାଇସ୍କୁଲ୍ ପ୍ରାଙ୍ଗଣରେ ଅନୁଷ୍ଠିତ ଏକ ସାଧାରଣ ସଭାରେ ଶ୍ରୀ ମାଝୀ ମୁଖ୍ୟ ଅତିଥି ଓ ଉମରକୋଟ ବିଧାୟକ ଶ୍ରୀ ଗୁରୁବାରୀ ମାଝୀ ମୁଖ୍ୟବକ୍ତା ଭାବେ ଯୋଗ ଦେଇଥିଲେ । ଭାଷଣ ପ୍ରସଙ୍ଗରେ ଯୋଜନା ରାଷ୍ଟ୍ରମନ୍ତ୍ରୀ କହିଲେ ଯେ ଉତ୍କଳର ଯୋଗ୍ୟ ସନ୍ତାନ ଶ୍ରୀ ବିଜୁ ପଟ୍ଟନାୟକ ତାଙ୍କର ଶେଷ ନିଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଓଡିଶାବାସୀଙ୍କ ସେବା କରିବା ପାଇଁ ବଦ୍ଧପରିକର ଓ ନିର୍ବାଚନ ଇସ୍ତାହାରକୁ ସେ ଅକ୍ଷରେ ଅକ୍ଷରେ ପାଳନ କରିବା ପାଇଁ ଦଶ ହଜାର ଟଙ୍କାର କୃଷିଋଣ ଛାଡ କରିବା ସଙ୍ଗେସଙ୍ଗେ ଦୈନିକ ମଜୁରୀ ୨୫ ଟଙ୍କାକୁ ବୃଦ୍ଧି କରିଛନ୍ତି । ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମାଝୀ ଭାଷଣ ପ୍ରସଙ୍ଗରେ କହିଲେ ଯେ ବର୍ତ୍ତମାନର ସରକାର ଏକ ପ୍ରଗତିଶୀଳ ତଥା ମଜୁରିଆ ଓ ଖଟିଖିଆର ସରକାର । ଏହି ସରକାର ଏକ ଶୋଷଣମୁକ୍ତ ସମାଜ ସୃଷ୍ଟି କରିବା ପାଇଁ ଦକ୍ଷତାର ସହିତ କାର୍ଯ୍ୟ ଆରମ୍ଭ କରିଛି ଏବଂ ଏଥିନିମନ୍ତେ ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟକ୍ରମରେ ଜନସାଧାରଣଙ୍କ ସକ୍ରିୟ ସହଯୋଗ ସେ କାମନା କରି ରାଜ୍ୟରେ ପଞ୍ଚାୟତରାଜ ତଥା ପୌରାଞ୍ଚଳ ଶାସନରେ ଜନସାଧାରଣ ସିଧାସଳଖ ଭୋଟ ଦେଇ ନିଜର ପ୍ରତିନିଧି ନିର୍ବାଚିତ କରିବା ପାଇଁ କହିଥିଲେ ।

# ଇନ୍ଷ୍ଟିଚ୍ୟୁଟ୍ ଅଫ୍ ହୋଟେଲ୍ ମ୍ୟାନେଜ୍ମେଣ୍ଟର ଖାଦ୍ୟୋତ୍ସବ ସମାରୋହ

ବୀର ସୁରେନ୍ଦ୍ର ସାଏ ନଗରସ୍ଥିତ ଇନ୍ଷ୍ଟିଚ୍ୟୁଟ୍ ଅଫ୍ ହୋଟେଲ୍ ମ୍ୟାନେଜ୍ମେଣ୍ଟ ପ୍ରାଙ୍ଗଣରେ ମାର୍ଚ୍ଚ ୧୭ ଓ ୧୮ ତାରିଖରେ ଖାଦ୍ୟୋତ୍ସବର ଆୟୋଜନ କରାଯାଇଥିଲା । ରାଜ୍ୟ ଶିଳ୍ପ ମନ୍ତ୍ରୀ ଶ୍ରୀ ଦିଲ୍ଲୀପ ରାୟ ଏହି ଉତ୍ସବ ଉଦ୍ଘାଟନ କରି କହିଥିଲେ ଯେ ଆସନ୍ତା ୨,୦୦୦ ମସିହା ସୁଦ୍ଧା ପର୍ଯ୍ୟଟନ ଶିଳ୍ପ ବିଶ୍ୱର ସର୍ବବୃହତ୍ ଶିଳ୍ପ ଭାବରେ ପରିଗଣିତ ହେବାର ସମ୍ଭାବନା ଥିବା ହେତୁ ହୋଟେଲ ଶିଳ୍ପର ମଧ୍ୟ ଆଶାନୁରୂପ ବିକାଶ ଘଟିବ । ରାଜ୍ୟର କେତେକ ପର୍ଯ୍ୟଟନସ୍ଥଳୀ ଏବଂ ହୋଟେଲ୍ ପ୍ରତିଷ୍ଠା ପ୍ରତି ରାଜ୍ୟ ସରକାର ସର୍ବଦା ଚେଷ୍ଟିତ ବୋଲି ଶ୍ରୀ ରାୟ ପ୍ରକାଶ କରିଥିଲେ ଏବଂ ଥାଇଲ୍ୟାଣ୍ଡ ଓ ଫିଲିପାଇନ୍ସ୍‌ର ପର୍ଯ୍ୟଟନ ଓ ହୋଟେଲ୍ ଶିଳ୍ପ ସାରା ବିଶ୍ୱରେ ଖ୍ୟାତି ଅର୍ଜନ କରିଥିବା ହେତୁ ସେ ଦେଶମାନଙ୍କର ଜ୍ଞାନ କୌଶଳକୁ ଆମ ଦେଶରେ ଉପଯୋଗ କରିବା ଆବଶ୍ୟକ ବୋଲି ମତ ଦେଇଥିଲେ ।

ଏହି ଉଦ୍ଘାଟନ ସମାରୋହଟି ପର୍ଯ୍ୟଟନ, ସୂଚନା ଓ ଲୋକସମ୍ପର୍କ ବିଭାଗର ଶାସନ ସଚିବ ତଥା କମିଶନର୍ ଶ୍ରୀ ପି. କେ. ମହାନ୍ତିଙ୍କ ସଭାପତିତ୍ୱରେ ପରିଚାଳିତ ହୋଇଥିଲା । ପର୍ଯ୍ୟଟନର ବିକାଶ ନିମିତ୍ତ ଓଡିଶା ସରକାରଙ୍କର ନୂତନ ପଦକ୍ଷେପ ପ୍ରତି ଶ୍ରୀ ମହାନ୍ତି ବିଶେଷ ଭାବରେ ଦୃଷ୍ଟି ଆକର୍ଷଣ କରାଇଥିଲେ ଏବଂ ଏଥି ସଙ୍ଗେସଙ୍ଗେ ହୋଟେଲ୍ ସମୂହରେ ପର୍ଯ୍ୟଟକମାନଙ୍କର ଉପଯୁକ୍ତ ଅଭ୍ୟର୍ଥନା ପ୍ରତି ବିଶେଷ ଧ୍ୟାନ ଦେବା ପାଇଁ ପରାମର୍ଶ ଦେଇଥିଲେ ।

ଅନୁଷ୍ଠାନର ଅଧ୍ୟକ୍ଷ ଶ୍ରୀ ବିଷ୍ଣୁ ପ୍ରସାଦ ତ୍ରିପାଠୀ ତାଙ୍କର ସ୍ୱାଗତ ଭାଷଣରେ ଏହି ଖାଦ୍ୟୋତ୍ସବର ବିଶେଷତ୍ୱ ବିଷୟରେ ଅବଗତ କରାଇଥିଲେ । ଶ୍ରୀ ତ୍ରିପାଠୀ ସ୍ଥାନୀୟ ଖାଦ୍ୟ ପେୟ ପ୍ରଣାଳୀ ଉପରେ ବିଶେଷ ଧ୍ୟାନ ଆକର୍ଷଣ କରିବା ସଙ୍ଗେସଙ୍ଗେ ଏହି ଉତ୍ସବଟି ପ୍ରତିଯୋଗୀମାନଙ୍କୁ ଆନ୍ତର୍ଜାତିକ ଖାଦ୍ୟ ପ୍ରଣାଳୀରେ ସେ ସ୍ଥାନ ପାଇବା ନିମିତ୍ତ ଯଥେଷ୍ଟ ଉତ୍ସାହ ଓ ପ୍ରେରଣା ଦେଇପାରିବ, ତାହା ଦର୍ଶାଇଥିଲେ ।

ବିଭିନ୍ନ ଖାଦ୍ୟ ଷ୍ଟଲ୍‌ମାନଙ୍କ ବ୍ୟତୀତ ବିଭିନ୍ନ ହୋଟେଲର ପେଶାଦାର କୁକ୍ ଏବଂ ମହିଳାମାନଙ୍କ ମଧ୍ୟରେ ଓଡିଶାର ରନ୍ଧନ ପ୍ରଣାଳୀ ଉପରେ ଦୁଇଗୋଟି ଭିନ୍ନଭିନ୍ନ ପ୍ରତିଯୋଗିତାର ବ୍ୟବସ୍ଥା କରାଯାଇଥିଲା । ଏହି ପ୍ରତିଯୋଗିତାରେ ଭାଗ ନେଇଥିବା ଆଠଗୋଟି ବିଶିଷ୍ଟ ହୋଟେଲମାନଙ୍କ ମଧ୍ୟରେ ହୋଟେଲ୍ ସ୍ୱସ୍ତି ଭୁବନେଶ୍ୱର ପ୍ରଥମ ପୁରସ୍କାର, ହୋଟେଲ୍ ନୀଳାଚଳ ଅଶୋକ, ପୁରୀ ଦ୍ୱିତୀୟ ପୁରସ୍କାର ଏବଂ ହୋଟେଲ କଳିଙ୍ଗ ଅଶୋକ, ଭୁବନେସ୍ୱର ସ୍ୱତନ୍ତ୍ର ପୁରସ୍କାର ପାଇବାକୁ ଯୋଗ୍ୟ ବିବେଚିତ ହୋଇଥିଲେ ।

ଶ୍ରୀ ଶରତ କୁମାର ସାହୁ, ପ୍ରୋପାଇଟର୍ 'ରୁଚି ମସଲା', କଟକଙ୍କର ଅନୁଦାନରେ ଅନ୍ୟୁନ ୭୦ ଜଣ ଗୃହିଣୀଙ୍କ ମଧ୍ୟରେ ଅନ୍ୟ ଏକ ପ୍ରତିଯୋଗିତାରେ ଶ୍ରୀମତୀ ମନୋଲିନା ଦେବୀ ସର୍ବଶ୍ରେଷ୍ଠା ବୋଲି ବିବେଚିତା ହୋଇଥିଲେ । ଏଥିରେ ଭାଗ ନେଇଥିବା ସମସ୍ତ ପ୍ରତିଯୋଗିନୀଙ୍କୁ ରୁଚି ମସଲା ତରଫରୁ ଆକର୍ଷଣୀୟ ପୁରସ୍କାରମାନ ପ୍ରଦାନ କରାଯାଇଥିଲା ।

# ବାୟୋ ଗ୍ୟାସ ସାଫଲ୍ୟ

ଚଳିତ ଆର୍ଥିକ ବର୍ଷ ଫେବ୍ରୁୟାରୀ ଶେଷ ସୁଦ୍ଧା ବିଂଶସୂତ୍ରୀ କାର୍ଯ୍ୟକ୍ରମର କେତେକ ନିର୍ଦ୍ଦିଷ୍ଟ କ୍ଷେତ୍ରରେ ଚଳିତ ବର୍ଷ ପାଇଁ ଥିବା ଧାର୍ଯ୍ୟ ଲକ୍ଷ୍ୟଠାରୁ ଅଧିକ ସଫଳତା ହାସଲ ହୋଇଛି ।

ଯେଉଁ ସବୁ ଗୋଟି କାର୍ଯ୍ୟକ୍ରମରେ ଏହି ସଫଳତା ହାସଲ କରାଯାଇପାରିଛି, ସେଗୁଡିକ ମଧ୍ୟରେ ବାୟୋଗ୍ୟାସ ପ୍ଲାଣ୍ଟ ସ୍ଥାପନ, କୃଷିପାଇଁ ବ୍ୟବହୃତ ପମ୍ପସେଟ୍ ଗୁଡିକରେ ବିଦ୍ୟୁତ୍ ସଂଯୋଗ ବାସହୀନଙ୍କୁ ଘରଡିହ ଯୋଗାଣ, ତଫସିଲଭୁକ୍ତ ଜାତିର ଲୋକଙ୍କ ଆର୍ଥିକାବସ୍ଥାର ଉନ୍ନତି ପାଇଁ ଉଦ୍ଦିଷ୍ଟ ଆଇ.ଆର.ଡି.ପି. କାର୍ଯ୍ୟକ୍ରମ, ସ୍ୱଳ୍ପ ଆୟକାରୀଙ୍କ ପାଇଁ ଗୃହ ଯୋଗାଣ, ବୃକ୍ଷ ରୋପଣ ଏବଂ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ର ସ୍ଥାପନ ଅନ୍ତର୍ଭୁକ୍ତ ।

ଚଳିତ ଆର୍ଥିକ ବର୍ଷ ୬ ହଜାର ବାୟୋଗ୍ୟାସ୍ ପ୍ଲାଣ୍ଟ ସ୍ଥାପନ ପାଇଁ ଲକ୍ଷ୍ୟ ଧାର୍ଯ୍ୟ ହୋଇଥିବାସ୍ଥଳେ ଗତ ଫେବ୍ରୁୟାରୀ ସୁଧା ମୋଟ ୮ ହଜାର ୧୯୭ଟି ବାୟୋଗ୍ୟାସ ପ୍ଲାଣ୍ଟ ସ୍ଥାପନ କରାଯାଇ ଏ କ୍ଷେତ୍ରରେ ଶତକଡା ୧୩୬.୬୧ ଭାଗ ସାଫଲ୍ୟ ଅର୍ଜନ କରାଯାଇଛି । କୃଷି ପାଇଁ ବ୍ୟବହୃତ ୪ ହଜାର ୩୦୦ଟି ପମ୍ପସେଟ୍‌କୁ ବିଦ୍ୟୁତ୍ ସଂଯୋଗ କରାଯିବା ପାଇଁ ଚଳିତ ବର୍ଷ ଲକ୍ଷ୍ୟ ରଖାଯାଇଥିଲା । ମାତ୍ର ଉକ୍ତ ସମୟ ମଧ୍ୟରେ ୪ ହଜାର ୯୬୨ଟି ପମ୍ପସେଟ୍‌କୁ ବିଦ୍ୟୁତ୍ ସଂଯୋଗ କରାଯାଇ ଶତକଡା ୧୧୫.୪୦ ଭାଗ ସଫଳତା ହାସଲ ହୋଇଛି । ସେହିପରି ବାସହୀନଙ୍କୁ ଘରଡିହ ଯୋଗାଣ ପାଇଁ ଚଳିତ ଆର୍ଥିକ ବର୍ଷରେ ୧୫ ହଜାର ଘରଡିହ ଯୋଗାଇ ଦେବା ପାଇଁ ଲକ୍ଷ୍ୟ ରଖାଯାଇଥିଲା ବେଳେ ଉକ୍ତ ସମୟ ମଧ୍ୟରେ ମୋଟ ୧୯ ହଜାର ୯୧୯ଟି ବାସଗୃହ ଯୋଗାଇ ଦିଆଯାଇ ଏ କ୍ଷେତ୍ରରେ ଶତକଡା ୧୩୩.୨୬ ଭାଗ ସଫଳତା ହାସଲ ହୋଇଛି ।

ତଫସିଲଭୁକ୍ତ ଜାତିର ଲୋକଙ୍କୁ ଆଇ.ଆର୍.ଡି.ପି. କାର୍ଯ୍ୟକ୍ରମରେ ଚଳିତ ବର୍ଷ ୨୧ ହଜାର ୭୪୬ ଜଣଙ୍କୁ ସହାୟତା ପ୍ରଦାନ କରାଯିବା ପାଇଁ ଲକ୍ଷ୍ୟ ରଖାଯାଇଥିଲା ବେଳେ ଗତ ଫେବ୍ରୁୟାରୀ ସୁଦ୍ଧା ଏଥିରେ ମୋଟ୍ ୨୭ ହଜାର ୪୩ ଜଣ ଉପକୃତ ହୋଇଛନ୍ତି । ଏ କ୍ଷେତ୍ରରେ ଶତକଡା ୧୨୪.୪୦ ଭାଗ ସଫଳତା ହାସଲ କରାଯାଇ ପାରିଛି ।

ସେହିପରି ସ୍ୱଳ୍ପ ଆୟକାରୀଙ୍କୁ ଗୃହ ଯୋଗାଣ କାର୍ଯ୍ୟକ୍ରମରେ ଶତକଡା ୧୦୬.୫୦ ଭାଗ ସଫଳତା ହାସଲ ହୋଇଥିବା ସ୍ଥଳେ ବୃକ୍ଷରୋପଣ କ୍ଷେତ୍ରରେ ଉକ୍ତ ସମୟ ମଧ୍ୟରେ ଶତକଡା ୧୦୫.୩୬ ଭାଗ ସାଫଲ୍ୟ ଅର୍ଜନ କରାଯାଇ ପାରିଛି ବୋଲି ଗତ ଫେବ୍ରୁୟାରୀ ମାସ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ବିବରଣୀରୁ ପ୍ରକାଶ ।

# ଆଦିବାସୀ ସ୍ୱାର୍ଥ ରକ୍ଷା ଉପରେ ଗୁରୁତ୍ୱ

ଗରିବ ଆଦିବାସୀଙ୍କ ଜମି ହସ୍ତାନ୍ତର, ଆଦିବାସୀ ଅଞ୍ଚଳରେ ଅବୈଧ ନିଶା କାରବାର ଏବଂ ମହାଜନୀ କାରବାରକୁ କଠୋର ହସ୍ତରେ ଦମନ କରିବା ଉପରେ ରାଜ୍ୟ ହରିଜନ ଓ ଆଦିବାସୀ କଲ୍ୟାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଛୋଟରାୟ ମାଝୀ ଦୃଢ ଦାବୀ ଉପସ୍ଥାପନ କରିଛନ୍ତି ।

ଗତ ମାର୍ଚ୍ଚ ୩୧ ତାରିଖରେ ନୂଆଦିଲ୍ଲୀଠାରେ କେନ୍ଦ୍ର ସରକାରଙ୍କ କଲ୍ୟାଣ ମନ୍ତ୍ରଣାଳୟ ଦ୍ୱାରା ଆୟୋଜିତ ଜାତୀୟ ଆଦିବାସୀ ଉନ୍ନୟନ ସମ୍ମିଳନୀରେ ଅଂଶ ଗ୍ରହଣ କରି ଶ୍ରୀ ମାଝୀ କହିଲେ ଯେ ଯେଉଁ ଆଦିବାସୀମାନଙ୍କର ଅଢେଇ ଏକରରୁ ପାଞ୍ଚ ଏକର ମଧ୍ୟରେ ଜମି ଥିବ, ସେମାନେ କୌଣସି ପରିସ୍ଥିତିରେ ଜମି ହସ୍ତାନ୍ତର କରିପାରିବେ ନାହିଁ । ଆଦିବାସୀ ଅଞ୍ଚଳରେ ବ୍ୟବସାୟିକ ଭିତ୍ତିରେ ମଦ୍ୟ ଉତ୍ପାଦନ ସମ୍ପୂର୍ଣ୍ଣ ନିଷେଧ କରାଯିବା ସଙ୍ଗେ ସଙ୍ଗେ କୌଣସି ପ୍ରକାର ଅବୈଧ କାରବାରକୁ କଠୋର ହସ୍ତରେ ଦମନ କରାଯିବାକୁ ସେ ପରାମର୍ଶ ଦେଇଥିଲେ । ଆଦିବାସୀ ଅଞ୍ଚଳରେ ମହାଜନୀ କାରବାର ସମ୍ପୂର୍ଣ୍ଣ ନିଷେଧ କରାଯାଇ ଅର୍ଥ ଆବଶ୍ୟକ କରୁଥିବା ଆଦିବାସୀମାନଙ୍କୁ ବ୍ୟାଙ୍କ୍ ଜରିଆରେ ସରଳ ସୁଧ ହାରରେ ଏବଂ ସହଜ କିସ୍ତିରେ ଶୀଘ୍ର ଋଣ ଦେବା ପାଇଁ ବ୍ୟବସ୍ଥା କରିବାକୁ ମଧ୍ୟ ସେ ପ୍ରସ୍ତାବ ଦେଇଥିଲେ ।

ଜଙ୍ଗଲ ସୁରକ୍ଷା ସମ୍ପର୍କରେ ଆଲୋଚନା କରି ଶ୍ରୀ ମାଝୀ କହିଲେ ଯେ ଜଙ୍ଗଲ ସୁରକ୍ଷା ପାଇଁ ସକଳ ପ୍ରକାର ଦୃଢ ତଥା ପ୍ରଗତିଶୀଳ ପଦକ୍ଷେପ ଗ୍ରହଣ କରାଯିବା ଆବଶ୍ୟକ । ଆଦିବାସୀମାନଙ୍କୁ ଜଙ୍ଗଲଜାତ ଦ୍ରବ୍ୟ ସଂଗ୍ରହ କରିବାର ପୂର୍ଣ୍ଣ ଅଧିକାର ଦିଆଯିବା ସଙ୍ଗେସଙ୍ଗେ ଜଙ୍ଗଲଜାତ ଦ୍ରବ୍ୟ ବିକ୍ରୟ କରିବା ପାଇଁ ସେମାନଙ୍କୁ ସମସ୍ତ ପ୍ରକାର ସୁବିଧା ସୁଯୋଗ ଯୋଗାଇ ଦିଆଯିବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ଜଙ୍ଗଲ ସୁରକ୍ଷାକୁ ଦୃଷ୍ଟିରେ ରଖି ଜଙ୍ଗଲ ଠିକା ଦେବା ପ୍ରଥା ବନ୍ଦ କରାଯିବା ସଙ୍ଗେସଙ୍ଗେ ଅବାଧ ଜଙ୍ଗଲ ନଷ୍ଟ ତଥା ବେଆଇନ ଭାବେ ଜଙ୍ଗଲ ନଷ୍ଟକାରୀ ଏବଂ କାଠ ଚୋରା ବେପାରୀମାନଙ୍କ ବିରୁଦ୍ଧରେ କଠୋର ଦଣ୍ଡ ବିଧାନ କରିବାକୁ ସେ ପ୍ରସ୍ତାବ ଦେଇଥିଲେ ।

ଆଦିବାସୀମାନଙ୍କ ଉନ୍ନତି କଳ୍ପେ ଗ୍ରହଣ କରାଯାଉଥିବା ବିଭିନ୍ନ ଯୋଜନାରେ ଆଦିବାସୀମାନଙ୍କୁ ପ୍ରତ୍ୟକ୍ଷ ଭାବେ ସଂଶ୍ଳିଷ୍ଟ କରିବା, ଯୋଜନାର ଲକ୍ଷ୍ୟ ଓ ଅଭିମୁଖ୍ୟ ହେବା ଉଚିତ ବୋଲି ମତବ୍ୟକ୍ତ କରି ଶ୍ରୀ ମାଝୀ କହିଲେ ଯେ ସେମାନଙ୍କର ଚାହିଦା ମୁତାବକ ଯୋଜନା ପ୍ରଣୟନ କରିବା ଯୋଜନା ପ୍ରଣୟନକାରୀ ମାନଙ୍କ ଧ୍ୟେୟ ହେବା ଆବଶ୍ୟକ ।

ଟି.ଡି.ସି.ସି. ଭଳି ଏକ ଆଦିବାସୀ କଲ୍ୟାଣକାରୀ ସଂସ୍ଥା ବିପୁଳ କ୍ଷତି ସମ୍ବନ୍ଧରେ ମନ୍ତ୍ରୀ ଶ୍ରୀ ମାଝୀ ଗଭୀର କ୍ଷୋଭ ପ୍ରକାଶ କରିଥିଲେ । ଉକ୍ତ ସଂସ୍ଥାକୁ କାର୍ଯ୍ୟକ୍ଷମ କରି ଲାଭଦାୟକ ଏବଂ ଆଦିବାସୀ ଉନ୍ନୟନକାରୀ କରିବା ଉପରେ ସେ ଗୁରୁତ୍ୱ ଆରୋପ କରିଥିଲେ । ଅର୍ଥ ଆତ୍ମସାତ କରିଥିବା କର୍ମଚାରୀମାନଙ୍କ ବିରୁଦ୍ଧରେ ଦୃଢ ଶୃଙ୍ଖଳାଗତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରି ଆତ୍ମସାତ କରାଯାଇଥିବା ଅର୍ଥକୁ ସୁଧ ସହିତ ଆଦାୟ କରି ସରକାରୀ ତହବିଲରେ ପୈଠ କରାଯିବା ପାଇଁ ମଧ୍ୟ ସେ ପରାମର୍ଶ ଦେଇଥିଲେ ।

ଶ୍ରୀ ମାଝୀ ଜାତୀୟ ସମ୍ମିଳନୀରେ ଯୋଗ ଦେବାକୁ ଯାଇଥିବା ରାଜ୍ୟ ଆଦିବାସୀ ବିଧାନସଭା ସଦସ୍ୟଙ୍କ ପ୍ରତିନିଧି ଦଳର ନେତୃତ୍ୱ ନେଇଥିଲେ । ଏହି ସମ୍ମିଳନୀକୁ ପ୍ରଧାନମନ୍ତ୍ରୀ ଉଦ୍‌ଘାଟନ କରିଥିଲେ ।

# ଲୁଣାନଦୀ କୂଳକ୍ଷୟର ତୁରନ୍ତ ପ୍ରତିକାର ଆବଶ୍ୟକ

—ବିଜୟ ମହାପାତ୍ର

ରାଜ୍ୟ ଜଳସେଚନ ଏବଂ ସଂସଦୀୟ ବ୍ୟାପାର ମନ୍ତ୍ରୀ ଶ୍ରୀ ବିଜୟ ମହାପାତ୍ର ଲୁଣା ନଦୀ ଦ୍ୱାରା କୂଳକ୍ଷୟର ପ୍ରତିକାର ପାଇଁ ତୁରନ୍ତ ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ପାଇଁ ବିଭାଗୀୟ ଇଞ୍ଜିନିୟରମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

ଏପ୍ରିଲ୍ ୩ ତାରିଖରେ ସେଚମନ୍ତ୍ରୀ ବିଭାଗୀୟ ଇଞ୍ଜିନିୟରମାନଙ୍କ ସହ ଲୁଣାନଦୀ ଦ୍ୱାରା କୂଳଖାଇ କ୍ଷତିଗ୍ରସ୍ତ ହେଉଥିବା ଗ୍ରାମଗୁଡ଼ିକ ମୋଟର୍ ଲଞ୍ଚ୍ ଯୋଗେ ପରିଦର୍ଶନ କରି ପରିସ୍ଥିତି ଅନୁଧ୍ୟାନ କରିଥିଲେ ।

ଉକ୍ତ ଗସ୍ତ କାଳରେ ସେଚ ମନ୍ତ୍ରୀ ମହାକାଳପଡ଼ା ବ୍ଲକର ଘନଶ୍ୟାମପୁର ଓ କଉଞ୍ଚ ଗ୍ରାମଗୁଡ଼ିକ ପରିଦର୍ଶନ କରି ସ୍ଥାନୀୟ ଅଭାବ ଅସୁବିଧା ବୁଝିଥିଲେ । ଜନସାଧାରଣଙ୍କ ପକ୍ଷରୁ ମନ୍ତ୍ରୀ ମହୋଦୟଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ବର୍ତ୍ତମାନର ସରକାର ଜନସାଧାରଣଙ୍କ ବିଭିନ୍ନ ସମସ୍ୟା ପ୍ରତି ପୂର୍ଣ୍ଣ ସଚେତନ ଥିବା ଦର୍ଶାଇ ଏହାର ସମାଧାନ ପାଇଁ ସରକାର ବଦ୍ଧ ପରିକର ବୋଲି ଶ୍ରୀ ମହାପାତ୍ର ସାଧାରଣ ସଭାରେ ଘୋଷଣା କର ଥିଲେ । ଏଥିପାଇଁ ସେ ଜନସାଧାରଣଙ୍କ ସହଯୋଗ ଓ ସଦିଚ୍ଛା କାମନା କରିଥିଲେ ।

ସାନଗାଁଠାରେ ଶ୍ରୀରାମ ଜନ୍ମୋତ୍ସବ ପୂଜା କମିଟି ଅନୁକୂଲ୍ୟରେ ଅନୁଷ୍ଠିତ ଶ୍ରୀରାମ ନବମୀ ଉତ୍ସବରେ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇ ସେଚ ମନ୍ତ୍ରୀ ଉଦ୍‌ବୋଧନ ଦେଇଥିଲେ । ଏହି ଅବସରରେ ଆଧ୍ୟାତ୍ମିକ ଚିନ୍ତାଧାରା ଓ ଚେତନାର ଉପଯୁକ୍ତ ଦାୟାଦ ଭାବେ ଭବିଷ୍ୟତ ବଂଶଧରମାନେ ନିଜକୁ ଗଢ଼ି ତୋଳିବା ପାଇଁ ସେ ଆହ୍ୱାନ ଦେଇଥିଲେ । ପାଟକୁରା ନିର୍ବାଚନ ମଣ୍ଡଳୀର ବିଭିନ୍ନ ସମସ୍ୟା ପ୍ରତି ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା । ଉତ୍ତରରେ ସରକାର ସେ ଦିଗରେ ସମ୍ପୂର୍ଣ୍ଣ ସଚେତନ ଥିବା ଉଲ୍ଲେଖ କରି ସମୟ କ୍ରମେ ନିଶ୍ଚିତ ଭାବେ ସମସ୍ୟାବଳୀର ସମାଧାନ ତ୍ୱରାନ୍ୱିତ କରାଯିବ ବୋଲି ସେଚମନ୍ତ୍ରୀ ପ୍ରତିଶ୍ରୁତି ଦେଇଥିଲେ ।

# ବସ୍ତି ଉନ୍ନୟନ

ରାଜ୍ୟରେ କାର୍ଯ୍ୟକାରୀ ହୋଇଥିବା ବିଂଶସୂତ୍ରୀ କାର୍ଯ୍ୟକ୍ରମରେ 'ବସ୍ତି ଅଞ୍ଚଳ ଉନ୍ନୟନ' କାର୍ଯ୍ୟକ୍ରମ ଅନ୍ତର୍ଭୁକ୍ତ । ଏହି କାର୍ଯ୍ୟକ୍ରମ ଅନୁଯାୟୀ ଚଳିତ ଆର୍ଥିକ ବର୍ଷର ଗତ ଫେବୃଆରୀ ମାସ ଶେଷ ସୁଦ୍ଧା ରାଜ୍ୟର ମୋଟ ୯,୧୦୭ ଜଣ ବସ୍ତିବାସୀଙ୍କ ପରିବେଶ ଉନ୍ନୟନ କାର୍ଯ୍ୟକ୍ରମ ଦ୍ୱାରା ଉପକୃତ ହୋଇଛନ୍ତି । କେବଳ ଫେବୃଆରୀ ମାସରେ ଏଥିରେ ସୁଫଳ ଲାଭ କରିଥିବା ୮୯ ଜଣ ବ୍ୟକ୍ତି ଅନ୍ତର୍ଭୁକ୍ତ । ଚଳିତ ଆର୍ଥିକ ବର୍ଷରେ ୧୦ ହଜାର ବସ୍ତି ବାସିନ୍ଦାଙ୍କୁ ଏହି କାର୍ଯ୍ୟକ୍ରମ ପରିସରଭୁକ୍ତ କରିବା ପାଇଁ ଲକ୍ଷ୍ୟଧାର୍ଯ୍ୟ କରାଯାଇଥିବା ସ୍ଥଳେ ଏଥିରେ ୯,୧୦୭ ଜଣ ବ୍ୟକ୍ତି ଉପକୃତ ହୋଇ ଏ କ୍ଷେତ୍ରରେ ଶତକଡ଼ା ୯୧.୦୭ ଭାଗ ସଫଳତା ହାସଲ କରାଯାଇଛି ବୋଲି ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅଗ୍ରଗତି ସମ୍ପର୍କୀୟ ଫେବୃଆରୀ ମାସ ବିବରଣୀରୁ ପ୍ରକାଶ ।

ଏହି ବିବରଣୀ ଅନୁଯାୟୀ ଖାଉଟିମାନଙ୍କ ସ୍ୱାର୍ଥରକ୍ଷା ଏବଂ ସେମାନଙ୍କୁ ଅତ୍ୟାବଶ୍ୟକୀୟ ପଦାର୍ଥ ଯୋଗାଇ ଦେବା ପାଇଁ ଗ୍ରାମାଞ୍ଚଳରେ ଉକ୍ତ ସମୟ ମଧ୍ୟରେ ୨୦ଟି ସୁଲଭ ମୂଲ୍ୟ ଦୋକାନ ଖୋଲାଯାଇଛି । ଚଳିତ ଆର୍ଥିକ ବର୍ଷରେ ମୋଟ୍ ୫୦ଟି ସୁଲଭ ମୂଲ୍ୟ ଦୋକାନ ଖୋଲାଯିବା ପାଇଁ ଲକ୍ଷ୍ୟ ଧାର୍ଯ୍ୟ କରାଯାଇଛି ।

# ସାଧାରଣ ବଣ୍ଟନ ବ୍ୟବସ୍ଥାର ସୁସଙ୍ଗଠନ

ଖାଦ୍ୟ ଓ ଯୋଗାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟ ମାର୍ଚ୍ଚ ୧୬ ତାରିଖ ଦିନ ସଚିବାଳୟଠାରେ ଅନୁଷ୍ଠିତ ରାଜ୍ୟର ସମସ୍ତ ଜିଲ୍ଲା ଯୋଗାଣ ଅଧିକାରୀ ଓ ଯୋଗାଣ ନିଗମ କର୍ମକର୍ତ୍ତାମାନଙ୍କ ବୈଠକରେ ଅଧ୍ୟକ୍ଷତା କରିଥିଲେ । ରାଜ୍ୟରେ ଅତ୍ୟାବଶ୍ୟକୀୟ ନିତ୍ୟ ବ୍ୟବହାର୍ଯ୍ୟ ଜିନିଷପତ୍ରଗୁଡ଼ିକର ଦରଦାମ ଯେପରି ସ୍ଥିର ରହେ ଏବଂ କୃତ୍ରିମ ଅଭାବ ସୃଷ୍ଟି ନ ହୁଏ, ସେଥିପ୍ରତି ତୀକ୍ଷ୍ଣ ଦୃଷ୍ଟି ରଖି ବିହିତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ସକାଶେ ସେ ନିର୍ଦ୍ଦେଶ ଦେଇଥିଲେ । ରାଷ୍ଟ୍ରମନ୍ତ୍ରୀ ଏ ସଂକ୍ରାନ୍ତରେ ଜିଲ୍ଲା ଓ ସବ୍‌ଡିଭିଜନ୍ ସ୍ତରୀୟ ନାଗରିକ କମିଟିମାନ ତୁରନ୍ତ ଡାକି ସେମାନଙ୍କର ମତାମତ ନେବା ସଙ୍ଗେସଙ୍ଗେ ସାଧାରଣ ବଣ୍ଟନ ବ୍ୟବସ୍ଥାକୁ ଅଧିକ ଶୃଙ୍ଖଳିତ ଏବଂ ସୁସଙ୍ଗଠିତ କରିବା ପାଇଁ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦେଇଛନ୍ତି ।

# କୁଚିଣ୍ଡାଠାରେ ସଫଳ ସମନ୍ୱିତ ପ୍ରଦର୍ଶନୀ

ଦେବଗଡ଼ ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ ସଂସ୍ଥା ଅନୁକୂଲ୍ୟରେ କୁଚିଣ୍ଡାଠାରେ ନିକଟରେ ଏକ ସମନ୍ୱିତ ପ୍ରଦର୍ଶନୀ ସଫଳତାର ସହିତ ଅନୁଷ୍ଠିତ ହୋଇଯାଇଛି । ତିନିଦିନ ଧରି ଅନୁଷ୍ଠିତ ଏହି ପ୍ରଦର୍ଶନୀରେ ସମ୍ବଲପୁର ଜିଲ୍ଲାର ୨୨ଟି ବିଭିନ୍ନ ବିଭାଗ ଅଂଶ ଗ୍ରହଣ କରିଥିଲେ । ଜନସାଧାରଣଙ୍କ ପାଇଁ କାର୍ଯ୍ୟକାରୀ ହେଉଥିବା ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ଲୋକମାନଙ୍କୁ ସଚେତନ କରିବା ଦିଗରେ ଏହି ପ୍ରଦର୍ଶନୀ ବିଶେଷ ସହାୟକ ହୋଇଥିଲା । ଏହା ମଧ୍ୟରେ ମହାରାଷ୍ଟ୍ର ପ୍ରଦେଶର କଳାକାରମାନଙ୍କ ପ୍ରଦର୍ଶିତ 'ଯାଦୁ' କାର୍ଯ୍ୟକ୍ରମ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ଦୀର୍ଘ ୧୦ ବର୍ଷ ପରେ କୁଚିଣ୍ଡାଠାରେ ଏ ପ୍ରକାର ପ୍ରଦର୍ଶନୀର ଆୟୋଜନ କରାଯାଇଥିବାରୁ ସ୍ଥାନୀୟ ଜନସାଧାରଣ, ବିଶେଷ କରି ଗ୍ରାମାଞ୍ଚଳର ଲୋକମାନଙ୍କ ମଧ୍ୟରେ ବିଶେଷ ଉତ୍ସାହ ଓ ଉଦ୍ଦୀପନା ପ୍ରକାଶ ପାଇଥିଲା ।

## ସାଇତା ଶସ୍ୟର ସଂରକ୍ଷଣ ପାଇଁ ତାଲିମ୍

କେନ୍ଦ୍ର ସରକାରଙ୍କ ଖାଦ୍ୟ ଓ ଯୋଗାଣ ମନ୍ତ୍ରଣାଳୟ ଅଧୀନସ୍ଥ ଭୁବନେଶ୍ୱରରେ ଥିବା ଶସ୍ୟ ସଂରକ୍ଷଣ ଅଭିଯାନ, ଖାଦ୍ୟଶସ୍ୟକୁ ସାଇତିବା ପାଇଁ ଉନ୍ନତ ବୈଜ୍ଞାନିକ ପଦ୍ଧତିରେ ଓଡ଼ିଶାର ଗ୍ରାମାଞ୍ଚଳର ଚାଷୀମାନଙ୍କ ମଧ୍ୟରେ ଲୋକପ୍ରିୟ କରିବା ପାଇଁ ୧୯୭୬ ମସିହାରୁ ରାଜ୍ୟବ୍ୟାପୀ ଅଭିଯାନ ଚଳାଇ ଆସୁଛି । ପ୍ରଶିକ୍ଷଣ ଶିବିରର ଆୟୋଜନ, ଉନ୍ନତ ଶସ୍ୟାଧାରର ପ୍ରଚଳନ, କ୍ଷେତ୍ର ପ୍ରଦର୍ଶନ ତଥା ପ୍ରଚାର ମାଧ୍ୟମ ଦ୍ୱାରା ଉକ୍ତ ସଂସ୍ଥା ରାଜ୍ୟରେ ଖାଦ୍ୟଶସ୍ୟ ସଂରକ୍ଷଣ ଦିଗରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଛି । ଗତ ମାର୍ଚ୍ଚମାସ ଶେଷ ସୁଦ୍ଧା କାର୍ଯ୍ୟକ୍ରମ ଆରମ୍ଭରୁ ରାଜ୍ୟର ମୋଟ ୫,୬୪୮ ଜଣ କୃଷକଙ୍କୁ ୧୧୩ଟି ଉପାଦେୟ ତାଲିମ ଶିବିର ମାଧ୍ୟମରେ ସାଇତା ଶସ୍ୟ ସଂରକ୍ଷଣର ଉନ୍ନତ ପଦ୍ଧତି ସମ୍ପର୍କରେ ତାଲିମ ଦିଆଯାଇଛି । ଏତଦ୍‌ବ୍ୟତୀତ ବିଭାଗରେ ୧୬,୫୬୭ ଜଣ କୃଷକ ଏବଂ ୩,୨୧୭ ଜଣ ଗ୍ରାମ୍ୟ କୃଷି କର୍ମଚାରୀ ତାଲିମ ପାଇଛନ୍ତି । ଚାଷୀମାନଙ୍କ ଘରେ ସାଇତା ଶସ୍ୟର ସଂରକ୍ଷଣ ପାଇଁ ୯୧୧ଟି ପକ୍କା କୋଠି ନିର୍ମାଣ କରାଯିବା ସଙ୍ଗେସଙ୍ଗେ ୨,୭୧୫ଟି ପ୍ରଚଳିତ ଶସ୍ୟାଧାରର ଉନ୍ନତି ସାଧନ କରାଯାଇଛି । ଓଡ଼ିଶା ଆଗ୍ରୋ ଇଣ୍ଡଷ୍ଟ୍ରିଜ୍ କର୍ପୋରେସନ୍ ସହାୟତାରେ ୧୩,୮୬୭ଟି ଧାତବ ଡୋଲି ରାଜ୍ୟ ସରକାରଙ୍କ ଦ୍ୱାରା ରିହାତି ବ୍ୟବସ୍ଥା ଯୋଗେ ଚାଷୀମାନଙ୍କୁ ଯୋଗାଇ ଦିଆଯାଇଛି । ଏହି କାର୍ଯ୍ୟକ୍ରମ ରାଜ୍ୟର ବିଭିନ୍ନ ଜିଲ୍ଲାର ୭୪ଟି ବ୍ଲକ୍‌ର ୧,୦୭୦ଟି ଗ୍ରାମରେ କାର୍ଯ୍ୟକାରୀ କରାଯାଇଥିଲା ।

ବର୍ତ୍ତମାନ ଉକ୍ତ କାର୍ଯ୍ୟକ୍ରମ ଗଞ୍ଜାମ, କୋରାପୁଟ, କଳାହାଣ୍ଡି, ଫୁଲବାଣୀ, କଟକ, ଢେଙ୍କାନାଳ ଓ ପୁରୀ ଜିଲ୍ଲାରେ ସଘନ ଭାବରେ କାର୍ଯ୍ୟକାରୀ କରାଯାଉଛି । ୧୯୯୦–୯୧ ଆର୍ଥିକ ବର୍ଷରେ ଶସ୍ୟ ସଂରକ୍ଷଣ ଅଭିଯାନ ତରଫରୁ ଚାଷୀମାନଙ୍କୁ ଖାଦ୍ୟଶସ୍ୟ ସାଇତିବାର ଉନ୍ନତ କୌଶଳ ବିଷୟରେ ଅବଗତ କରାଇବା ପାଇଁ ଅଧିକ ସଂଖ୍ୟାରେ ୧୫ ଦିନିଆ ଓ ୫ ଦିନିଆ ଉପାଦେୟ ତାଲିମ ଦେବାର ବ୍ୟବସ୍ଥା କରାଯାଉଛି ।

## ଉନ୍ନୟନ କାର୍ଯ୍ୟକ୍ରମରେ ନିଷ୍ଠା ପ୍ରଦର୍ଶନ ପାଇଁ ପରାମର୍ଶ

ରାଜ୍ୟ ଆଇନ ମନ୍ତ୍ରୀ ଶ୍ରୀ ନରସିଂହ ମିଶ୍ର ମାର୍ଚ୍ଚ ୧୭ ତାରିଖ ଦିନ ବଲାଙ୍ଗୀରଠାରେ ଜିଲ୍ଲାସ୍ତରୀୟ ଅଫିସରମାନଙ୍କ ବୈଠକରେ ଯୋଗ ଦେଇ ଉନ୍ନୟନ ଯୋଜନାଗୁଡ଼ିକୁ ସଫଳତାର ସହିତ ସମ୍ପାଦନ କରିବାରେ କର୍ତ୍ତବ୍ୟ ନିଷ୍ଠା ପ୍ରଦର୍ଶନ କରିବାକୁ ଅଫିସରମାନଙ୍କୁ ପରାମର୍ଶ ଦେଇଥିଲେ । କୃଷି ଉନ୍ନତି ଏବଂ ଦୁର୍ବଳ ଶ୍ରେଣୀ ପରିବାରଙ୍କ ଆର୍ଥିକ ଉନ୍ନତି କାର୍ଯ୍ୟକ୍ରମ ପ୍ରତି ଗୁରୁତ୍ୱ ଦେବାକୁ ମନ୍ତ୍ରୀ ଶ୍ରୀ ମିଶ୍ର ବୈଠକରେ ପ୍ରକାଶ କରିଥିଲେ ।

ପ୍ରଥମେ ଜିଲ୍ଲାପାଳ ଶ୍ରୀ ଏନ୍. କେ. ବଳିୟାରସିଂ ଆଇନ ମନ୍ତ୍ରୀଙ୍କୁ ସ୍ୱାଗତ ଜଣାଇଥିଲେ ଓ ଜିଲ୍ଲାର ଉନ୍ନୟନ କାର୍ଯ୍ୟକ୍ରମ ସମ୍ପର୍କରେ ମନ୍ତ୍ରୀ ମହୋଦୟଙ୍କୁ ଅବଗତ କରାଇଥିଲେ ।

ଅପରାହ୍ନରେ ସ୍ଥାନୀୟ ଓକିଲ ସଂଘ ପକ୍ଷରୁ ଆଇନ ମନ୍ତ୍ରୀଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ସଂଘର ସଭାପତି ଶ୍ରୀ ସୁଧାଂଶୁ ଶେଖର ମିଶ୍ର ଆଇନ ମନ୍ତ୍ରୀଙ୍କୁ ସ୍ୱାଗତ ଜଣାଇ ବିଭିନ୍ନ ଅସୁବିଧା ବିଷୟରେ ଆଲୋଚନା କରିଥିଲେ ।

ସେ ଦିନ ସନ୍ଧ୍ୟାରେ ମନ୍ତ୍ରୀ ଶ୍ରୀ ମିଶ୍ର ପଥରମୁଣ୍ଡା, ଭରସୁଜା ଓ ସାଲେଭଟା ଗ୍ରାମ ପରିଦର୍ଶନ କରିଥିଲେ । ଗ୍ରାମବାସୀମାନଙ୍କ ପକ୍ଷରୁ ଆଇନ ମନ୍ତ୍ରୀଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଗ୍ରାମମାନଙ୍କରେ ଆୟୋଜିତ ସାଧାରଣ ସଭାମାନଙ୍କରେ ଉଦ୍‌ବୋଧନ ଦେଇ ମନ୍ତ୍ରୀ ଶ୍ରୀ ମିଶ୍ର ନୂତନ ସରକାରଙ୍କ ଲକ୍ଷ୍ୟ ଓ ପ୍ରତିଶ୍ରୁତି ପୂରଣ ଦିଗରେ ଜନସାଧାରଣଙ୍କ ସାହାଯ୍ୟ ଓ ସହଯୋଗ ଏକାନ୍ତ ଆବଶ୍ୟକ ବୋଲି କହିଥିଲେ ।

ଗ୍ରାମବାସୀଙ୍କ ପକ୍ଷରୁ ବିଭିନ୍ନ ସୁବିଧା ଓ ଅସୁବିଧା ଓ ସମସ୍ୟା ବିଷୟରେ ଆଇନ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରାଯାଇଥିଲା ।

■ ସାଧାରଣ ସମୟରେ ଆମେ ପ୍ରତ୍ୟେକ ବ୍ୟକ୍ତିଗତ ଭାବରେ ବିଭିନ୍ନ କାର୍ଯ୍ୟକ୍ରମ ଓ ନୀତି ପ୍ରତି ଅନୁରକ୍ତ ହୋଇ ରହିଥାଉ ଏବଂ ତଦ୍ଦ୍ୱାରା ଆମ ଭିତରେ ମତ ପାର୍ଥକ୍ୟ ଦେଖା ଦେଇଥାଏ । ଗଣତାନ୍ତ୍ରିକ ଭାବର ବିକାଶ ଓ ଗଣତନ୍ତ୍ରର ପ୍ରତିଷ୍ଠା ଲାଗି ଏହାର ଆବଶ୍ୟକତା ଯଥେଷ୍ଟ ରହିଛି କିନ୍ତୁ ଯେତେବେଳେ ଆମର ସ୍ୱାଧୀନତା ଓ ଦେଶର ସାର୍ବଭୌମତ୍ୱ ବିପଦଗ୍ରସ୍ତ ହୋଇ ପଡ଼ିବ ସେତେବେଳେ ସମସ୍ତ ପ୍ରକାର ଅନୁରକ୍ତିକୁ ଭୁଲିଯାଇ ଆମକୁ କେବଳ ଆମ ଦେଶର ଅନୁରକ୍ତ ହୋଇ ପଡ଼ିବାକୁ ହେବ ।

—ଶାସ୍ତ୍ରୀଜୀ

● ବର୍ତ୍ତମାନ

# କାଳସ୍ୟ ସୁଶୀଳା ଗତିଃ

# ପୋଲିସ୍ ସେବା ଓ କଂପ୍ୟୁଟର୍

ଶ୍ରୀ ଏଲ୍ଃ ସିଃ ଅମରନାଥନ୍,

ବିବର୍ତ୍ତନଶୀଳ ଶବ୍ଦ ଧାରାର ରୂପାନ୍ତରିତ ଙ୍ଗରେ 'ପୋଲିସ୍' ଶବ୍ଦଟି ଗ୍ରୀକ୍ ଶବ୍ଦ 'Politeia' କିମ୍ବା ଏହାର ଲାଟିନ୍ ପ୍ରତିଶବ୍ଦ 'Politia'ରୁ ଉଦ୍ଭୂତ ହୋଇଥିବାର ଜଣାଯାଏ । ଏହି ଗ୍ରୀକ୍ କିମ୍ବା ଲାଟିନ୍ ଶବ୍ଦର ଅନ୍ୟ ବ୍ୟୁତ୍ପନ୍ନ ଶବ୍ଦ ହେଉଛି 'Polity' ଓ 'Policy' । 'Politeia'ର ଏକ ବ୍ୟୁତ୍ପନ୍ନ ଶବ୍ଦ ହେଉଛି 'Police' । ଏହାର ଅର୍ଥ ହେଉଛି ଶାନ୍ତି ରକ୍ଷା ଓ ଆଇନ ପ୍ରୟୋଗ ।

ସଭ୍ୟତାର ବିକାଶ ନିମିତ୍ତ ପୋଲିସ୍‌ର ଭୂମିକା ହେଉଛି ମହତ୍ତ୍ୱପୂର୍ଣ୍ଣ । ସଭ୍ୟତାର ବିକାଶ ସଙ୍ଗେ ସଙ୍ଗେ ଯୋଗାଯୋଗ ଓ ପରିବହନ ବ୍ୟବସ୍ଥାର ଅଭିବୃଦ୍ଧି ଓ ଉଦ୍ୟୋଗ ଶିଳ୍ପର ପ୍ରସାର ଘଟିଛି । ତାହା ସାଙ୍ଗକୁ ସବୁ ଅପରାଧ ଓ ତାର ପଦ୍ଧତିରେ ମଧ୍ୟ ନୂତନତ୍ୱ ଆସିଛି । ଜନତାକୁ ରକ୍ଷା କରିବା ହେଉଛି ପୋଲିସ୍ ବାହିନୀର ନୀତି କାର୍ଯ୍ୟ ।

ପୋଲିସ୍ ହେଉଛି ଜନତାର ସେବକ । ଜନତାର ସ୍ୱୀକୃତି ଉପରେ ପୋଲିସ୍‌ର କର୍ମକୁଶଳତା ନିର୍ଭର କରେ ଓ ଅପର ପକ୍ଷରେ ତାହାର କର୍ମକୁଶଳତା ଜନତା ଉପରେ ପ୍ରଭାବ ପକାଇଥାଏ । ପୋଲିସ୍‌ର ମୂଳ ଉଦ୍ଦେଶ୍ୟ ହେଉଛି ଜନ ସମାଜର ସେବା, ଜୀବନ ରକ୍ଷା, ସମ୍ପତ୍ତି ରକ୍ଷା, ଅପରାଧ ନିରାକରଣ, ଅନୁସନ୍ଧାନ ଓ ଅପରାଧୀକୁ ନ୍ୟାୟାଳୟରେ ପହଞ୍ଚାଇବା । ଅପରାଧ ଓ ବିଶୃଙ୍ଖଳା ଘଟିବାକୁ ନଦେବା ହିଁ ପୋଲିସ୍ ଦକ୍ଷତାର ମାପକାଠି ।

କୋଟିଏ ପ୍ରାଚୀନ ପ୍ରବଚନ ହେଉଛି "ଆରୋଗ୍ୟ ଅପେକ୍ଷା ନିରୋଧ ଶ୍ରେୟସ୍କର" । ପୂର୍ବରୁ ସାବଧାନ ହୋଇ କ୍ଷତି ନିରୋଧ କରିବା ହେଉଛି, କ୍ଷତି ହେବା ପରେ ତାହା ପୂରଣ କରିବା ଅପେକ୍ଷା ଉତ୍ତମ ପଦ୍ଧତି । ଠିକ୍ ସେହିପରି ଅପରାଧ ଘଟିବା ପରେ ଅପରାଧୀକୁ ଧରି ତାକୁ ନ୍ୟାୟାଳୟରେ ପେଶ୍ କରିବା ଓ ଦଣ୍ଡ ଦିଆଇବା ଅପେକ୍ଷା ଅପରାଧ ନିରୋଧ ହିଁ ଉତ୍କୃଷ୍ଟ ବ୍ୟବସ୍ଥା । ଏ ପରିପ୍ରେକ୍ଷୀରେ ଅପରାଧ ନିବାରଣ ହେଉଛି ପୋଲିସ୍‌ର ପ୍ରାଥମିକ ଦାୟିତ୍ୱ ଓ କର୍ତ୍ତବ୍ୟ ।

ପୂର୍ବ ଉକ୍ତିଗୁଡିକ ହେଉଛି ପୁରାତନ ପୋଲିସ୍‌ର କାର୍ଯ୍ୟ ପରିସରକୁ, ମାତ୍ର ଅଧୁନା ପୋଲିସ୍‌ର କାର୍ଯ୍ୟ ପରିସର ବିଶାଳ ଓ ଅସୀମ । ଯେ କୌଣସି ଦିଗରେ ମନୁଷ୍ୟର ଚରିତ୍ର ନିୟନ୍ତ୍ରିତ ହେଲେ ସୁଦ୍ଧା, ଏହା ପୋଲିସ୍ କାର୍ଯ୍ୟର ପରିସର ମଧ୍ୟକୁ ଆପେ ଆପେ ଆସିଯାଏ । ଅପରାଧ ନିବାରଣ ଓ ଅପରାଧୀ ନିର୍ଦ୍ଧାରଣ କରିବା ବ୍ୟତିରେକେ, ପୋଲିସ୍ ଶାନ୍ତି ରକ୍ଷା, ଯାନବାହାନ, ସଭା ଏବଂ ଶୋଭାଯାତ୍ରା ନିୟନ୍ତ୍ରଣ କରୁଛି । ଖେଳ କାରବାର ବେଆଇନ୍ କାରବାର, କୁକର୍ମ ଘଟିଥିବା ସ୍ଥାନ, ମଉଜ ମଜଲିସ୍ ସ୍ଥାନ ଇତ୍ୟାଦି ଉପରେ ଦୃଷ୍ଟି ରଖିବା ଦରକାର ହେଉଛି । ଦେଶର ନିରାପତ୍ତା ତଥା ଜନ କଲ୍ୟାଣ ଉଦ୍ଦେଶ୍ୟରେ ସରକାରଙ୍କ ଦ୍ୱାରା ପ୍ରଣୀତ ଆବଶ୍ୟକୀୟ ଆଇନଗୁଡ଼ିକୁ ପ୍ରୟୋଗ କରିବା ପୋଲିସ୍‌ର ମଧ୍ୟ କାର୍ଯ୍ୟ । ଏହି ସବୁ ଭାବରେ ପୋଲିସ୍‌ର କାର୍ଯ୍ୟକୁ ଅନୁଶୀଳନ କରିବା ସମସ୍ତ ସାପେକ୍ଷ ଓ କଷ୍ଟକର ।

ପୋଲିସ୍‌କୁ ବିବିଧ କାର୍ଯ୍ୟରେ ସମ୍ପୃକ୍ତ କରିବାରେ ସେ ତାର ପ୍ରାଥମିକ କର୍ତ୍ତବ୍ୟକୁ ସମ୍ପାଦନ କରିବାରେ ବିଫଳ ହେଉଛି ।

ପୋଲିସ୍ ବାହିନୀର ପ୍ରାଥମିକ ସଂସ୍ଥା ହେଉଛି ଥାନା । ଥାନାରେ ଅର୍ଜି କରାଯାଇଥିବା ମାମଲା ଓ ତତ୍‌ସଂଶ୍ଳିଷ୍ଟ ତଥ୍ୟ ସବୁ ଅପରାଧ ସମ୍ପର୍କୀୟ ନଥିପତ୍ରରେ ଉଲ୍ଲେଖ କରାଯାଇଥାଏ । ପରବର୍ତ୍ତୀ ସମୟରେ କୌଣସି ଅପରାଧ ଘଟିଲେ ଏହି ନଥିପତ୍ର ପୂର୍ବ ଅପରାଧ ସମ୍ପର୍କରେ ଅବଗତି କରାଇଥାଏ । ଏ ହେତୁରୁ ନଥିପତ୍ରରେ ଅପରାଧ ସମ୍ପର୍କୀୟ ଅଭିଯୋଗ ବା ବୃତ୍ତାନ୍ତ ନିର୍ଭୁଲ ଭାବରେ ଦସ୍ତାବିଜ ହେବା ବାଞ୍ଛନୀୟ । ଯେତେବେଳେ ପର୍ଯ୍ୟନ୍ତ ଅପରାଧ ସବୁ ଏକ ନିର୍ଦ୍ଦିଷ୍ଟ ଅଞ୍ଚଳରେ ସୀମାବଦ୍ଧ ରହିଥିଲା, ସେତେବେଳେ ପର୍ଯ୍ୟନ୍ତ ନଥିପତ୍ରର ମାନ ଉଚ୍ଚରେ ଥିଲା । ଲୋକସଂଖ୍ୟାର ବିସ୍ଫୋରଣ, ସହରାଞ୍ଚଳ ବୃଦ୍ଧି, ଦେଶରେ ବହୁତ ଶିଳ୍ପାନୁଷ୍ଠାନ ପ୍ରତିଷ୍ଠା, ବେକାରୀ ସମସ୍ୟାର ଅଭିବୃଦ୍ଧି, ବହୁବିଧ ସାମାଜିକ, ଅର୍ଥନୀତି ଜନିତ ନିୟମାବଳୀ ପ୍ରଚଳନ ଫଳରେ ଅପରାଧ ଓ ଅପରାଧୀମାନଙ୍କର ସଂଖ୍ୟାରେ ବୃଦ୍ଧି ଘଟିଲା । ଯାତାୟତ, ଯୋଗାଯୋଗ ଓ ଗମନାଗମନ ଅବସ୍ଥାର ଅଭିବୃଦ୍ଧି ଅପରାଧୀମାନଙ୍କୁ ଅପରାଧ ବୃଦ୍ଧି ପାଇଁ ସାହାଯ୍ୟ କଲା । ଏହା ଫଳରେ ଅପରାଧୀମାନଙ୍କର ସଂପାଦିତ କର୍ମରାଜୀ ସ୍ଥାନୀୟରେ ସୀମିତ ନହୋଇ ପାର୍ଶ୍ୱବର୍ତ୍ତୀ ଅଞ୍ଚଳ, ଥାନା, ଜିଲ୍ଲା ଓ ରାଜ୍ୟ ବାହାରକୁ ବ୍ୟାପିଗଲା । ଥାନାମାନଙ୍କରେ ଅପରାଧ ସମ୍ବନ୍ଧୀୟ ନଥିପତ୍ର ପୁରୋପଯୋଗୀ ପୂର୍ଣ୍ଣ

ଯୋଗାଇବାରେ ବିଫଳ ହେଲା । ପରିବର୍ତ୍ତନ ସହିତ ତାଳ ଦେଇ ଠିକ୍ କରିବା ଏକ ଦୁରୁହ ବ୍ୟାପାର ହୋଇ ପଡ଼ିଲା । ଏ ହେତୁ ସମୟରୁ ଗ୍ଭଲି ଆସୁଥିବା ହସ୍ତାଙ୍କିତ ନଥିପତ୍ର ବର୍ତ୍ତମାନ ଅପରାଧ ସମ୍ବନ୍ଧରେ ତଥ୍ୟ ଯୋଗାଇବାରେ ସମ୍ପୂର୍ଣ୍ଣ ରୂପେ ହେଲା, ଅନ୍ୟ ପକ୍ଷରେ ପରିସ୍ଥିତି ଅନୁସାରେ ତଥ୍ୟ ଅର୍ଜି କରିବା ପରିସର ମଧ୍ୟ ଉକ୍ତ ନଥିପତ୍ରରେ ନାହିଁ ।

ପରୋକ୍ତ ପରିସ୍ଥିତିରେ ମୁକାବିଲା ପାଇଁ, ବିବିଧ ପ୍ରକାରର ଆଲୋଚନା ଫଳରେ ଏକ ଯନ୍ତ୍ରର ଅଭ୍ୟୁଦୟ ଘଟିଲା । ଏହି ଅଣୁଗ୍ଭଳିତ ନାମ 'କମ୍ପ୍ୟୁଟର୍' ବା 'ସଂଗଣକ' । ବିବିଧ କିସମର ତଥ୍ୟ ମଧ୍ୟରୁ ଆବଶ୍ୟକୀୟ କାର୍ଯ୍ୟ ସମ୍ପାଦନ କରି ଗ୍ରହିବା ଫଳ ନିର୍ଭୁଲ ଭାବରେ ଏହି ଯନ୍ତ୍ର ଯୋଗାଇ ଦେଇଥାଏ । ଏହି ପ୍ରଚଳନ ଫଳରେ ଅପରାଧ ଅପରାଧୀ ସମ୍ବନ୍ଧୀୟ ତଥ୍ୟ ସଂଗ୍ରହ, ବିନ୍ୟାସ କରି ପୋଲିସ୍‌ର ପ୍ରୟୋଜନ କାର୍ଯ୍ୟାବଳୀ ସମ୍ପାଦନ ଅତୀବ ବିଶ୍ୱାସଯୋଗ୍ୟ ହୋଇପଡ଼ିଲା ।

ମେରିକା ଭଳି ଉନ୍ନତ ରାଷ୍ଟ୍ର ୧୯୬୫ ମସିହାରୁ ଅପରାଧ କ୍ଷେତ୍ରରେ ଟରର ପ୍ରଚଳନ କରାଇ ଏକ ନୂତନ ଦିଗନ୍ତ ସୃଷ୍ଟି କଲା । ରେ ୧୯୭୦ଠାରୁ ଏ କ୍ଷେତ୍ରରେ ଅଭିଯାନ ଗ୍ଭଲିଲା । ଅପରାଧ ରେ କମ୍ପ୍ୟୁଟର୍ ପ୍ରଚଳନ ଏକ ବ୍ୟୟବହୁଳ ପଦ୍ଧତି । ପୋଲିସ୍ ପ୍ରାଦେଶିକ ସଂସ୍ଥା ହୋଇଥିଲେ ମଧ୍ୟ ତାହାର ଆଧୁନିକୀକରଣ, ମର୍ଯ୍ୟାଦା ହେତୁ, ଭାରତ ସରକାର ପ୍ରତ୍ୟେକ ରାଜ୍ୟକୁ କମ୍ପ୍ୟୁଟର୍ ଇ ଦେବାର ଦାୟିତ୍ୱ ନେଲେ ।

୮୦ ମସିହା ମାର୍ଚ୍ଚ ମାସରେ ଓଡ଼ିଶାରେ ପୋଲିସ୍ ବିଭାଗର ଟର୍ ସଂସ୍ଥାର ଅଭ୍ୟୁଦୟ ଘଟିଲା । ଯଦିଓ, କମ୍ପ୍ୟୁଟର୍, ଅପରାଧ ଣ, ତଦନ୍ତରେ ସାହାଯ୍ୟ ବେତନ ପଦ୍ଧତି, ଯାନବାହାନ ନିୟନ୍ତ୍ରଣ, ତଥ୍ୟ ପଦ୍ଧତି ଇତ୍ୟାଦି, କାର୍ଯ୍ୟ ସୁଗ୍ଭରୁ ରୂପେ ସମ୍ପାଦନ ରେ, ପ୍ରାଥମିକ ସ୍ତରରେ ଅପରାଧ, ଅପରାଧୀ ଓ ସମ୍ପତ୍ତି ବିଷୟକ 'କମ୍ପ୍ୟୁଟର୍'ରେ ସଙ୍କଳନ କରିବା ପାଇଁ ନିର୍ଦ୍ଦିଷ୍ଟ କରାଗଲା । ଟରରୁ ସର୍ବାଧିକ ସୁବିଧା ହାସଲ ପାଇଁ, ପୂର୍ବରୁ ଘଟିଥିବା ଧ ଓ ତତ୍‌ସମ୍ପୃକ୍ତ ଅପରାଧୀମାନଙ୍କର ସମ୍ପୂର୍ଣ୍ଣ ନିର୍ଭୁଲ ତଥ୍ୟ ସଂଗ୍ରହ ନୀୟ । ରାଜ୍ୟ ରାଜ୍ୟ ମଧ୍ୟରେ ଅପରାଧ ସମ୍ପର୍କୀୟ ତଥ୍ୟର ପ୍ରଦାନ ନିମିତ୍ତ କେନ୍ଦ୍ରୀୟ ସ୍ତରରେ ଏକ କିସମର ତଥ୍ୟ ସଂଗ୍ରହ ଯୋଜନା କରାଗଲା । ଏଥିପାଇଁ ଏକ ନିର୍ଦ୍ଦିଷ୍ଟ ପ୍ରକାରର ଫର୍ମ ଓ ବା ସଙ୍କେତ ସଙ୍କଳନ କରାଗଲା । ଏହି ଫର୍ମ ସାହାଯ୍ୟରେ ଥାନାରୁ ତଥ୍ୟ ସଂଗ୍ରହ କରାଯାଇ କମ୍ପ୍ୟୁଟର୍ ମଧ୍ୟରେ ଗଛିତ ା । ବ୍ୟାଙ୍କ୍‌ମାନଙ୍କରେ ଧନ ଗଚ୍ଛିତ କରି ତାହାର ପଯୋଗୀ ବ୍ୟବହାର କରିବା ଭଳି, କମ୍ପ୍ୟୁଟରରେ ତଥ୍ୟ ରହିବା ମୁତାବକ ସାହାଯ୍ୟ ଯଥା ସମୟରେ ସ୍ୱଚ୍ଛ ସମୟ ନିର୍ଭୁଲ ତଥ୍ୟ ପାଇପାରିବା । ୧୯୮୦ ମସିହାରୁ ପୁରାତନ ସଂଗ୍ରହ କାର୍ଯ୍ୟ ଆରମ୍ଭ ହେଲା ଓ ୧୯୮୬ ମସିହା ଜାନୁୟାରୀ ଏକ ଅତ୍ୟାଧୁନିକ, ଉଚ୍ଚ ଶକ୍ତିସମ୍ପନ୍ନ ସୁପର-୧୬ କମ୍ପ୍ୟୁଟର୍ ସ୍ଥାନରେ ଗୋଟିଏ ଶୀତତାପ ନିୟନ୍ତ୍ରିତ ଅଟ୍ଟାଳିକାରେ ତ ହୋଇ କାର୍ଯ୍ୟ କରୁଅଛି । ଏହି ପ୍ରକାରର ଅତ୍ୟାଧୁନିକ ଯନ୍ତ୍ର ସଂଗ୍ରହ କରି ଅପରାଧ ସମୀକ୍ଷା ପାଇଁ ବ୍ୟବହାର ଓଡ଼ିଶା ଅନ୍ୟ ପୋଲିସ୍ ମଧ୍ୟରେ ପ୍ରଥମ ସ୍ଥାନ ଅଧିକାର ଏହି କମ୍ପ୍ୟୁଟରରେ ୧୯୭୪ ମସିହାରୁ ସଙ୍ଗଠିତ ଅପରାଧ ତଥ୍ୟ ଗଛିତ କରାଯାଇ ବ୍ୟବହାର କରାଯାଉଛି ।

ତ ନଥିପତ୍ର ସାଧାରଣତଃ ଅପରାଧ ଭିତ୍ତିକ । ଯେତେବେଳେ ୀ ତାର କାର୍ଯ୍ୟ ସାଧନ ପ୍ରଣାଳୀ ପରିବର୍ତ୍ତନ କଲା ସେତେବେଳେ ଏ ପ୍ରକାର ନଥିପତ୍ରର ଆବଶ୍ୟକତା ସ୍ୱଚ୍ଛ ପ୍ରୟୋଜନ ହେଲା । ସମସ୍ତ ପ୍ରତିବନ୍ଧକ କମ୍ପ୍ୟୁଟର୍ ଦ୍ୱାରା ସରଳୀକୃତ ହୋଇପାରିଲା । ଗଛିତ ତଥ୍ୟ ସବୁକୁ ବିନ୍ୟାସ କରି ଅପରାଧ ସହିତ ଅପରାଧୀଙ୍କୁ ଓ ଅପରାଧୀ ସହିତ ଅପରାଧକୁ ସଂଯୋଗ ସ୍ଥାପନ କରି ଉତ୍ତର ଆଣି ପାରିଲା, ଯାହାକି ପୁରାତନ ନଥିପତ୍ର ସାହାଯ୍ୟରେ ସମ୍ଭବ ହୋଇପାରୁ ନଥିଲା ।

ପ୍ରଥମ ସ୍ତରରେ ଅପରାଧ ନିରାକରଣ ଓ ଅନୁସନ୍ଧାନ ନିମିତ୍ତ କେବଳ ପେଶାଦାର ଅପରାଧୀଙ୍କ ଦ୍ୱାରା ସମାହିତ ହେଉଥିବା ୧,୫୯,୮୭୯ ଅପରାଧ ତଥ୍ୟ, ୧,୭୪,୬୯୦ ଅପରାଧୀ ତଥ୍ୟ, ୮୨,୦୩୦ ସମ୍ପତ୍ତି ତଥ୍ୟ ଇତ୍ୟାଦି ବର୍ତ୍ତମାନ ସୁଦ୍ଧା ଗଛିତ କରାଯାଇଛି ।

ଅପରାଧୀ ବିଗ୍ଭରାଳୟରେ ଦୋଷୀ ସାବ୍ୟସ୍ତ ହେଲେ ନିୟମାନୁସାରେ ତାର ଟିପଚିହ୍ନ ନିଆଯାଇ ପରବର୍ତ୍ତୀ କାଳରେ ଅବଗତି ନିମିତ୍ତ ଗଛିତ କରାଯାଇଥାଏ । ଅପରାଧ ଓ ଅପରାଧୀଗୁଡ଼ିକ ଗଛିତ ଟିପଚିହ୍ନକୁ ମଧ୍ୟ ସଙ୍କେତ ଦ୍ୱାରା ବିଶ୍ଳେଷଣ କରି କମ୍ପ୍ୟୁଟର୍ ମଧ୍ୟରେ ସଞ୍ଚୟ କରାଯାଇ ପାରୁଛି । ଟିପଚିହ୍ନ ଏକ ଅଦ୍ୱିତୀୟ ଛାପ । ଅପରାଧୀ, ଘଟଣା ସ୍ଥଳରେ ଦୈବାତ୍ ଛାଡ଼ି ଆସିଥିବା ଟିପଚିହ୍ନକୁ ବିନ୍ୟାସ କରି ଅପରାଧୀ ଠାବ କରିବାରେ କମ୍ପ୍ୟୁଟର୍ ଏକ ମହତ୍ତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଏ ପର୍ଯ୍ୟନ୍ତ ୮୬,୦୦୦ ଗୋଟି ଟିପଚିହ୍ନକୁ କମ୍ପ୍ୟୁଟର୍ ବ୍ୟାଙ୍କ୍ ମାଧ୍ୟମରେ ରଖାଯାଇଛି ।

ସମସ୍ତ ତଥ୍ୟକୁ କେବଳ କମ୍ପ୍ୟୁଟର୍ ମଧ୍ୟରେ ଗଛିତ କରି ରଖିଦେଲେ ଯେ ଅପରାଧ କମ୍ ହୋଇଯିବ, ତାହା ନୁହେଁ । ଏ ସବୁର ଔପଗ୍ଭରିକ ଓ ପ୍ରଜ୍ଞାଶାଳୀ ବ୍ୟବହାର ଉପରେ ଅପରାଧ ଦମନ ଓ ଅନୁସନ୍ଧାନ ନିର୍ଭର କରେ । ବର୍ତ୍ତମାନ ସମୟ ନଷ୍ଟ କରି ପୁରାତନ ନଥିପତ୍ରକୁ ଆଡ଼େଇ ଅନୁସନ୍ଧାନ ପାଇଁ ଆଗଭର ହେବା ଅପେକ୍ଷା ସେ ସମ୍ବନ୍ଧୀୟ ପ୍ରଶ୍ନ କମ୍ପ୍ୟୁଟରକୁ ପଗ୍ଭରି ଉତ୍ତର ଅଳ୍ପ ସମୟ ମଧ୍ୟରେ ମିଳି ପାରୁଛି । କମ୍ପ୍ୟୁଟର୍ ବିଜ୍ଞାନାନୁଯାୟୀ ଏକ ଅପରାଧ ଅନୁସନ୍ଧାନପ୍ରାପ୍ତ ହୋଇଥିବାରୁ ପ୍ରାରମ୍ଭରେ ବିମୁଖତା ପ୍ରକାଶ ପାଇ ଏବେ ସମସ୍ତଙ୍କର ଆଦରଣୀୟ ହୋଇପାରିଛି । ୧୯୮୯ ମସିହା ସୁଦ୍ଧା କମ୍ପ୍ୟୁଟର୍ ୩,୨୬୪ଟି ଉତ୍ତର ଦେଇ ତଦନ୍ତ କାର୍ଯ୍ୟରେ ସାହାଯ୍ୟ କରି । ପାରିଛି ।

ଗଛିତ ତଥ୍ୟ ଉପରେ ଯେ କୌଣସି ପ୍ରଶ୍ନର ଉତ୍ତର କ୍ଷଣିକ ମଧ୍ୟରେ ଦୂର ଦୁରାନ୍ତକୁ ପଠାଇ ବ୍ୟବହାର ନ କଲେ ଏହାର ଉଦ୍ଦେଶ୍ୟ ସାଧିତ ହୋଇପାରିବ ନାହିଁ । କମ୍ପ୍ୟୁଟର୍ ଭୁବନେଶ୍ୱରରେ ଅବସ୍ଥାପିତ ହୋଇଥିଲେ ହେଁ କ୍ରାଇମବ୍ରାଞ୍ଚ, କଟକ ଜିଲ୍ଲା, ଭୁବନେଶ୍ୱର, ପୁରୀ ସଦର ମହକୁମା ସହିତ ସିଧାସଳଖ ଯୋଗାଯୋଗ ସମ୍ପର୍କ ସ୍ଥାପନ କରାଯାଇ ପାରିଛି । ଏ ସବୁ ସ୍ଥାନରୁ ସିଧାସଳଖ ଭାବରେ କମ୍ପ୍ୟୁଟରକୁ ପ୍ରଶ୍ନ ପଚରାଯାଇ ତା'ଠାରୁ ଉତ୍ତର ସଂଗ୍ରହ ହୋଇପାରୁଛି । ଅନ୍ୟ ସ୍ଥାନମାନଙ୍କରୁ ପୋଲିସ୍ ବେତାର ବିଭାଗ ଜରିଆରେ ପ୍ରଶ୍ନ ଓ ଉତ୍ତର ପଠାଯାଉଛି । ୧୯୯୦-୯୧ ଆର୍ଥିକ ବର୍ଷରେ ଏହାର ଶକ୍ତି ବୃଦ୍ଧି ଘଟାଇ ସମସ୍ତ ରେଞ୍ଜ୍ ମହକୁମାରେ ଅବସ୍ଥିତ ଜିଲ୍ଲାମାନଙ୍କୁ ସିଧାସଳଖ ଯୋଗାଯୋଗ କରାଯିବାର ଯୋଜନା ଅଛି । ତତ୍‌ପରବର୍ତ୍ତୀ ବର୍ଷରେ ପ୍ରତ୍ୟେକ ଜିଲ୍ଲାକୁ ଓ ପରେ ଅନ୍ୟ ପ୍ରାଦେଶିକ କମ୍ପ୍ୟୁଟର୍ ଏବଂ ଦିଲ୍ଲୀଠାରେ ଥିବା ଜାତୀୟ କମ୍ପ୍ୟୁଟରକୁ ସିଧାସଳଖ ଯୋଗାଯୋଗ କରାଯିବାର ଏକ ସୁଚିନ୍ତିତ ଯୋଜନା ଅଛି । ଏହା ଫଳରେ ଦେଶ ମଧ୍ୟରେ ଏକ ଯୋଗାଯୋଗ ଓ କମ୍ପ୍ୟୁଟର୍ ବହୁମୁଖୀ କର୍ମଧାରା (ନେଟ୍‌ୱାର୍କ) ପ୍ରତିଷ୍ଠା କରାଯାଇ ଅପରାଧ ସମୀକ୍ଷା ସହଜରେ କରାଯାଇ ପାରିବ ।

ଅପରାଧ ଓ ଅପରାଧୀ ସମ୍ବନ୍ଧୀୟ ତଥ୍ୟ କମ୍ପ୍ୟୁଟର୍‌ରେ ରଖାଯାଇ ପାରିବା ପରେ ଏବେ କମ୍ପ୍ୟୁଟରକୁ ଅନ୍ୟାନ୍ୟ କାର୍ଯ୍ୟରେ ମଧ୍ୟ ଲଗାଯିବା ପାଇଁ ସ୍ଥିର କରାଗଲାଣି । ସମସ୍ତ ପୋଲିସ୍ ବାହିନୀର ବେତନ ବିଲ୍,

ବ୍ୟକ୍ତିଗତ ତଥ୍ୟ ପଦ୍ଧତି, ପୋଲିସ୍ ବିଭାଗର ପୋଷାକ, ଯାନବାହାନ ଓ ଅନ୍ୟାନ୍ୟ ଜିନିଷପତ୍ରର ସମୀକ୍ଷା ନିମିତ୍ତ ପଦ୍ଧତି ଇତ୍ୟାଦି ଦ୍ବିତୀୟ ସ୍ତରରେ ହେବାକୁ ଯାଉଛି । ଏଥି ନିମିତ୍ତ ପ୍ରାଥମିକ କାର୍ଯ୍ୟ, ତଥ୍ୟ ସଂଗ୍ରହ କାର୍ଯ୍ୟ ସମାପ୍ତ ପ୍ରାୟ ।

ଯେ କୌଣସି ନୂତନ କାର୍ଯ୍ୟ ସମ୍ପାଦନ କରିବା ପାଇଁ ଏଥି ନିମିତ୍ତ ପ୍ରଶିକ୍ଷଣର ଆବଶ୍ୟକତା ରହିଛି । କମ୍ପ୍ୟୁଟର ପାଇଁ ତଥ୍ୟ ସଂଗ୍ରହ, କମ୍ପ୍ୟୁଟର୍ ଚଳାଇବା ଓ ତତ୍‌ସଂଲଗ୍ନ କାର୍ଯ୍ୟ ପାଇଁ ୧୯୮୦ ମସିହାରୁ ନିୟମିତ ପ୍ରଶିକ୍ଷଣ କାର୍ଯ୍ୟ ଚାଲି ଆସୁଛି । କମ୍ପ୍ୟୁଟର୍ କାର୍ଯ୍ୟାଳୟରୁ ଅଫିସରମାନେ ବୁଲିବୁଲି ଜିଲ୍ଲା ସଦର ମହକୁମା, ଉପଖଣ୍ଡ ମହକୁମାରେ ଥିବା ପୋଲିସ୍ କର୍ମଚାରୀମାନଙ୍କୁ ଶିକ୍ଷା ପ୍ରଦାନ କରୁଛନ୍ତି । ଏଥି ସଙ୍ଗେ ସଙ୍ଗେ କମ୍ପ୍ୟୁଟର୍ ସମ୍ପର୍କରେ ସିଧାସଳଖ ଜ୍ଞାନ ପାଇବା ପାଇଁ କମ୍ପ୍ୟୁଟର୍ କେନ୍ଦ୍ରରେ ମଧ୍ୟ ଶିକ୍ଷା ଦିଆଯାଉଛି । ଏ ପର୍ଯ୍ୟନ୍ତ ୧୩,୦୦୦ରୁ ଅଧିକଙ୍କୁ ଶିକ୍ଷା ଦିଆ ସରିଲାଣି । ଅଧିକ ଜ୍ଞାନ ଆହରଣ ନିମିତ୍ତ ଏଠାରେ ଅଫିସରମାନେ କେନ୍ଦ୍ରୀୟ ସ୍ତରରେ ଥିବା ବିଭିନ୍ନ କମ୍ପ୍ୟୁଟର୍ ପ୍ରଶିକ୍ଷଣ ସଂସ୍ଥାରେ ମଧ୍ୟ ଶିକ୍ଷା ପାଉଛନ୍ତି ।

ବ୍ୟୟବହୁଳ କମ୍ପ୍ୟୁଟର୍ ଯନ୍ତ୍ର କିଣି, ଶୀତତାପ ନିୟନ୍ତ୍ରିତ କୋଠରୀ ମଧ୍ୟରେ ଆବଦ୍ଧ ରଖି ଉପଯୁକ୍ତ ଭାବରେ ବ୍ୟବହାର ନ କରିଲେ, ଏହା କେବଳ ଗୋଟିଏ ଧଳା ହାତୀ ପୋଷିବା ଭଳି ହେବ, ଏଥିରେ ସନ୍ଦେହ ନାହିଁ । ଏଥିପାଇଁ ତଥ୍ୟ ସଂଗ୍ରହକାରୀଙ୍କଠାରୁ ଆରମ୍ଭ କରି ଶୀତତାପ ନିୟନ୍ତ୍ରିତ କୋଠରୀରେ ବସି କାର୍ଯ୍ୟ କରୁଥିବା କର୍ମୀଙ୍କର (ଏହାର) ସାଫଲ୍ୟ ପାଇଁ ଏକାନ୍ତ କର୍ତ୍ତବ୍ୟ ।

କମ୍ପ୍ୟୁଟର୍ ବ୍ୟବହାର ଅପରାଧ ଅନୁସନ୍ଧାନ କ୍ଷେତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ଆଣି ଦେଇଛି । ଯେଉଁ ଅନୁପାତରେ ଏହି ଯୁଗୋପଯୋଗୀ ବୈଜ୍ଞାନିକ ପଦ୍ଧତି, ଅପରାଧ ଅନୁସନ୍ଧାନ, ନିରାକରଣ ଓ ଅନ୍ୟାନ୍ୟ କାର୍ଯ୍ୟରେ ବ୍ୟବହୃତ ହେଉଛି ଓ ଏହାର ସୁଗୁଣକୁ ଉପଲବ୍ଧି କରାଯାଇ ପାରୁଛି, ସେଥିରୁ ସହଜରେ ଅନୁମେୟ ଆସନ୍ତା ଦିବସଗୁଡ଼ିକରେ ଏହା ନିଶ୍ଚିତ ଭାବରେ ସାଫଲ୍ୟ ଆଣି ଦେବ, ଏଥିରେ ଲେଶ ମାତ୍ର ସନ୍ଦେହ ନାହିଁ । ଏହାଦ୍ୱାରା ଭାରତରେ ଓଡ଼ିଶା ପୋଲିସ୍‌ର ଖ୍ୟାତି ବୃଦ୍ଧି ପାଇବ, ଏଥିରେ ଲେଶ ମାତ୍ର ସନ୍ଦେହ ନାହିଁ ।

ପରିବର୍ତ୍ତନଶୀଳ ମାନବ ପ୍ରଗତିବାଦୀ ଜୀବନଧାରା ସହିତ ତାଳ ଦେଇ ଯଦି ଆମର ପ୍ରଗତି ପନ୍ଥା ନିର୍ଦ୍ଧାରିତ ନହୁଏ, ତେବେ ଏହା ନିଶ୍ଚିତ କଥା ଯେ ଆମ୍ଭେମାନେ ସେହି ଗତାନୁଗତିକ ଯୁଗରେ ରୁଦ୍ଧଗତି ହୋଇ ଛାଣୁ ପରି ବସି ରହିବା । ଏଣୁ ଯଥାର୍ଥରେ କବିମାନେ କହନ୍ତି "ସମୟମେବ କରୋତି ବଳାବଳମ୍" ଅର୍ଥାତ୍ ଗତିଶୀଳ ସମୟ ହିଁ ମାନବ ଜାତିକୁ ବଳଶାଳୀ ବା ବଳହୀନ କରିଥାଏ । ଏହି ଦୃଷ୍ଟିକୋଣରୁ ବିଜ୍ଞ ମନୁଷ୍ୟ ସମୟର ଆହ୍ୱାନକୁ ଏଡ଼ିଦେଇ ପାରେ ନାହିଁ । ଅବଶେଷରେ ସେ ବିଜୟଶ୍ରୀରେ ମଣ୍ଡିତ ହୁଏ ।

ଡି: ଆଇ: ଜି:,
ପୋଲିସ୍ କମ୍ପ୍ୟୁଟର୍,
ଭୁବନେଶ୍ୱର ।





ପାରଳାଖେମୁଣ୍ଡିରେ
ଉତ୍କଳ ଦିବସ ଅବସରରେ......

● ବଣ୍ୟ ସମ୍ପଦ

# ଓଡ଼ିଶାର ଜଙ୍ଗଲ ସମ୍ପଦର ଭବିଷ୍ୟତ

ଡକ୍ଟର ନାରାୟଣ ହଜାରୀ
ଡକ୍ଟର ସୁବାସ ଚନ୍ଦ୍ର ହଜାରୀ

ଦିନ ଥିଲା ଓଡ଼ିଶା ଜଙ୍ଗଲ ସମ୍ପଦରେ ପୂର୍ଣ୍ଣ ଥିଲା । ଯେଉଁଆଡେ ଗଲେ ନୀଳ ଅରଣ୍ୟ ଅପରୂପ ଶୋଭା ମନପ୍ରାଣ ହରି ନେଉଥିଲା । ସବୁଜ ବନରାଜି ମଧ୍ୟରେ ଝରଣାର କୁଳୁକୁଳୁ ନାଦ, ପଶୁମାନଙ୍କର କ୍ରୀଡ଼ା ଓ ପକ୍ଷୀମାନଙ୍କର କାକଳି ପ୍ରାଣରେ ଅପାର ଆନନ୍ଦ ଭରି ଦେଉଥିଲା । ଆଜି କିନ୍ତୁ ସେ ଅବସ୍ଥା ନାହିଁ । ଶୋଭାର ଭଣ୍ଡାର ଉତ୍କଳ ଆଜି ଶ୍ରୀହୀନ ହୋଇ ପଡ଼ିଛି । ଜଙ୍ଗଲର ଦ୍ରୁତ ଅବକ୍ଷୟ ଚାଲିଛି । ସ୍ଥଳଭାଗର ଏକ ତୃତୀୟାଂଶ ଜଙ୍ଗଲ ରହିବା ଆବଶ୍ୟକ । କିନ୍ତୁ ଓଡ଼ିଶାର ଆଉ ମାତ୍ର ଶତକଡ଼ା ୧୦ ଭାଗ ଜଙ୍ଗଲ ରହିଛି । ବଣପାହାଡ଼ର ସନ୍ତାନ, ସରଳ ନିରୀହ ଆଦିବାସୀ ଆଜି ମାତୃହରା, ଗୃହହୀନ ଓ କାଙ୍ଗାଳ ହୋଇ ଯାଇଛି । ଓଡ଼ିଶା ଜନସଂଖ୍ୟାର ଶତକଡ଼ା ୨୨ ଭାଗ ଆଦିବାସୀ ଓ ୧୬ ଭାଗ ହରିଜନ । ଏମାନେ ଖାଦ୍ୟ ଓ ଜୀବିକା ପାଇଁ ଜଙ୍ଗଲ ଉପରେ ବିଶେଷ ନିର୍ଭର କରନ୍ତି । ଗ୍ରାମବାସୀ ଓଡ଼ିଶା ଜନସଂଖ୍ୟାର ଶତକଡ଼ା ୮୭ ଭାଗ । ସେମାନଙ୍କର ପ୍ରଧାନ ଜୀବିକା କୃଷି । କୃଷିର ସମୃଦ୍ଧି ଜଙ୍ଗଲ ସମ୍ପଦ ଉପରେ ବିଶେଷ ନିର୍ଭରଶୀଳ । ଅରଣ୍ୟ ସମ୍ପଦ ମାନବ ଜାତିର ସ୍ଥିତି ଓ ସମୃଦ୍ଧିର ରକ୍ଷାକବଚ ।

ଜଙ୍ଗଲ ପରିବେଶର ଏକ ବିଶେଷ ଅଂଶ । ପରିବେଶ ସଂରକ୍ଷଣ, ପର୍ଯ୍ୟାବରଣ (ଇକୋଲୋଜି) ର ଉନ୍ନତି, ବୃକ୍ଷରୋପଣ, ପରିବାର ନିୟନ୍ତ୍ରଣ, ଗ୍ରାମ୍ୟ ଶିଳ୍ପର ବିକାଶ, କୃଷିର ବିକାଶ, ଜନଚେତନ, ଶିକ୍ଷା, ସ୍ୱାସ୍ଥ୍ୟସେବା, ନିଶା ନିବାରଣ, ଯୌତୁକ ପ୍ରଥାର ନିରାକରଣ, ମହିଳାମାନଙ୍କର ଅବସ୍ଥାର ଉନ୍ନତି, ଅସ୍ପୃଶ୍ୟତା ନିବାରଣ, ଥାନା ଓ କୋର୍ଟକୁ ନ ଯାଇ ଗ୍ରାମରେ ବିବାଦ [illegible]ଇବା, ଅବସର ଗ୍ରହଣ ପରେ ନିଜନିଜ ଗ୍ରାମକୁ ଫେରିଆସି ଗ୍ରାମର ଉନ୍ନତିରେ ଗଠନ ମୂଳକ ଭୂମିକା ଗ୍ରହଣ କରିବା, ସରକାରୀ ସାହାଯ୍ୟ ଉପରେ ବିଶେଷ ନିର୍ଭର ନକରି [illegible] ସ୍ୱକୀୟ ଉଦ୍ୟମରେ ଗ୍ରାମର ପ୍ରଗତି ପାଇଁ ପଦକ୍ଷେପ ନେବା ଆଦି ବିଶେଷ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟ ।

ଏ ସମସ୍ତ କାର୍ଯ୍ୟକ୍ରମ 'ବୃକ୍ଷ ଓ ଜୀବର ବନ୍ଧୁ' ନାମକ ସ୍ୱେଚ୍ଛାସେବୀ ଅନୁଷ୍ଠାନ ହାତକୁ ନେଇଛି । ଏହି ଅନୁଷ୍ଠାନଟି ପୁରୀ ଜିଲ୍ଲାର ନୟାଗଡ ବ୍ଲକ୍‌ର ବୁଢ଼ଗ୍ରାମ (କେଶରପୁର) ଠାରେ ଅବସ୍ଥିତ । ଏହା ଭୁବନେଶ୍ୱରରୁ ୧୦୦ କି.ମି. ଦୂରରେ ଓ ନୟାଗଡରୁ ୧୨ କି.ମି. ଦୂରରେ ଅବସ୍ଥିତ । ଭୁବନେଶ୍ୱରରୁ ପ୍ରତିଦିନ ଏଠାକୁ ବସ୍ ଯାତାୟତ କରେ । ୧୯୭୨ ମସିହାରୁ ପରିବେଶ ଆନ୍ଦୋଳନ ଆରମ୍ଭ ହୋଇ ନୟାଗଡ ସବ୍‌ଡିଭିଜନରେ ୮ଟି ମାତ୍ର ବ୍ଲକ (ନୟାଗଡ, ରଣପୁର, ଓଡ଼ଗାଁ, ଦଶପଲ୍ଲା, ଗଣିଆ, ନୂଆଗାଁ, ଭାପୁର, ଖଣ୍ଡପଡ଼ା)ର ପ୍ରାୟ ୧,୦୦୦ଟି ଗ୍ରାମରେ ପ୍ରସାର ଲାଭ କରିଛି । ଗଞ୍ଜାମ ଓ ଫୁଲବାଣୀ ଜିଲ୍ଲାରେ ମଧ୍ୟ କାର୍ଯ୍ୟକ୍ରମ ଚାଲୁ ରହିଛି । ଏହି ଆନ୍ଦୋଳନ 'ବୁଢ଼ ଗ୍ରାମ ପରିବେଶ ଆନ୍ଦୋଳନ' ନାମରେ ବିଦିତ ।

ପରିବେଶ ସମ୍ପର୍କରେ ଜନ ଚେତନା ସୃଷ୍ଟି କରିଥିବା ଯୋଗୁଁ, ଜନ ସଂଗଠନ କରିଥିବା ଯୋଗୁଁ, ପରିବେଶ ସଂରକ୍ଷଣ ଓ ବୃକ୍ଷରୋପଣ ପାଇଁ ଆନ୍ତରିକ ଓ ନିଷ୍ଠାପର ଉଦ୍ୟମ ଯୋଗୁଁ, ଓଡ଼ିଶା ସରକାର ୧୯୮୬ ମସିହାରେ ଉକ୍ତ ଅନୁଷ୍ଠାନକୁ 'ପ୍ରକୃତି ମିତ୍ର' ପୁରସ୍କାର ପ୍ରଦାନ କରିଛନ୍ତି । ସେହି ବର୍ଷ ଭାରତ ସରକାର 'ବୃକ୍ଷ ମିତ୍ର' ପୁରସ୍କାର ପ୍ରଦାନ କରିଛନ୍ତି । ୧୯୮୯ରେ ଜାତିସଂଘ 'ପୃଥିବୀ ୫୦୦ ପରିବେଶୀୟ ପୁରସ୍କାର' ପ୍ରଦାନ କରିଛନ୍ତି ।

'ବୃକ୍ଷ ଓ ଜୀବର ବନ୍ଧୁ' ଏକ ଅଣରାଜନୈତିକ ଅନୁଷ୍ଠାନ । ସମାଜ ସେବା ତଥା ଗଠନ ମୂଳକ ଦେଶ ନିର୍ମାଣ ଏହାର ଆଭିମୁଖ୍ୟ । ନିରବଚ୍ଛିନ୍ନ ବିକାଶ (ସଷ୍ଟେନେବ୍‌ଲ୍ ଡେଭେଲପମେଣ୍ଟ) ର ବାର୍ତ୍ତା ଗ୍ରାମେ ଗ୍ରାମେ ପହଞ୍ଚାଇବାରେ ଲାଗିଛି । ପ୍ରକୃତି ସହ ସମନ୍ୱୟ ରକ୍ଷାକରି ବିକାଶ କରିବା ପାଇଁ ଆହ୍ୱାନ ଦେଉଛି । ଧ୍ୱଂସ ମୂଳକ ବିକାଶ (ଡେଷ୍ଟ୍ରକ୍ଟିଭ୍ ଡେଭେଲପମେଣ୍ଟ)ର ଭୟାବହ ପରିଣତି ପ୍ରତି ଲୋକମାନଙ୍କୁ ସଚେତନ କରାଯାଉଛି । ବିଶେଷ ଭାବରେ ପଦଯାତ୍ରା ମାଧ୍ୟମରେ ଏହା କରାଯାଉଛି ।

ଖଣ୍ଡଖଣ୍ଡ ଗ୍ରାମରେ ପଦଯାତ୍ରା କରାଯାଇଛି । ୧୯୮୯ ଡିସେମ୍ବର ଓ ୧୯୯୦ ଜାନୁଆରୀ ମାସରେ ଏହି ସଂସ୍ଥା ପକ୍ଷରୁ ୭୪ଟି ଗ୍ରାମରେ ଆଠଦିନ ଧରି ପଦଯାତ୍ରା କରାଯାଇଥିଲା । ପଦଯାତ୍ରାରେ ୧୦ ଜଣ ସ୍ୱେଚ୍ଛାସେବୀ ଯୋଗ ଦେଇଥିଲେ । ୧୯୮୯ ଡିସେମ୍ବର ୩୦, ୩୧ ଓ ୧୯୯୦ ଜାନୁଆରୀ ୧ରେ ନୂଆଁଗାଁ ବ୍ଲକର ୨୧ଟି ଗ୍ରାମ – ଲୁଣିସରା, ମାନାଗଡିଆ, ବେଲଡଣି, ରଗଡିମହା, ଟୁଣିଆପଡା, ଗୁଲୁଭାବାଡି, ରଞ୍ଜପଟା, ରାଡରଙ୍ଗା, ମହିଦମା, କୋରଡା, ଅନ୍ଧୁପଡା, ଅନ୍ଧାରକଣି, ବରଡା ଝମଣ, କୃଷ୍ଣପ୍ରସାଦ, ଧିଙ୍କିଡା, ବ୍ରଲମୁହାଁ, ବଡବାରଣ, ଡୁମୁଡୁମା, ଚାଷରାପଲ୍ଲୀ, ଜଗନ୍ନାଥ ପ୍ରସାଦ ଓ ସୋରଡାରେ ପଦଯାତ୍ରା କରାଯାଇଥିଲା । ଜାନୁଆରୀ ୬, ୭, ୮ରେ ରଣପୁର ଓ ବୋଲଗଡର ୩୨ଟି ଗ୍ରାମ – ଶ୍ୟାମସୁନ୍ଦରପୁର, କାଳିଆମୁଳି, ଜାମୁସାହି, ଗୋପାଳପୁର ସାନ କାଉଡରା, ବଡ କାଉଡରା, କଳାମାଟିଆ, ଡିଙ୍ଗିରି, ଭିମପଡା, ଟାଙ୍ଗିସାହି, କୋଟପଲ୍ଲୀ, କୁଣପଲ୍ଲୀ, ଗୋଠ ଗୋପାଳିଆ, ପକାଳ ସାହି, ମର୍ଦ୍ଦାବାଡି, ଠଣାପଲ୍ଲୀ, ପାଟଣା, ଜାମୁସାହି, ବଳଭଦ୍ର ପାଟଣା, କଣ୍ଡରାଗାଡିଆ, ଗଉଡିଆ ପଡା, କାଣଦା, ସୁରୁକା ବାଡି, କୋଟଣିସିରା, ରୋଳସିଂହ, ଗୋପାଳି ପଡା, ଟାବରଧୁଆଁ, ବୁଚା, ବୋଲଗଡ, ନନ୍ଦପଲ୍ଲୀ, ବରହମପୁରା ଓ ଜାମୁସାହିରେ ପଦଯାତ୍ରା କରାଯାଇଥିଲା ।

ଜାନୁଆରୀ ୧୪ ଓ ୧୫ରେ ବୋଲଗଡ ବ୍ଲକର ୨୧ଟି ଗ୍ରାମରେ ପଦଯାତ୍ରା ହୋଇଥିଲା । ଗ୍ରାମଗୁଡିକ ହେଲା– ଖଗୁରିଆ, ଭୋଟାପଡା, ଗଡତିହ, ହରିପୁର ଶାସନ, ହରିପୁର ସଅର ସାହି, ଅରଗ ପଲ୍ଲୀ, ରାମ ସୁରୁଚି ପାଟଣା, ଅସନପଲ୍ଲୀ, କୋଟପଡା, ଖଲିକୋଟ, ଖଲିକୋଟ ସଅର ସାହି, ହରିକେଶର, ଗର୍ଣ୍ଣଣୀ ପଡା, ଧଳାପଥର, ଜରିପଡା, ପୋଡାପାଟଣା, ଗୋଡାଳି, ହାଟବସ୍ତା, ବାଙ୍କୋଇ, ବଡକୁମାରୀ ଓ ସାନକୁମାରୀ ଗ୍ରାମ ।

ପଦଯାତ୍ରୀମାନେ ଗାଁ ଗାଁରେ ଜଙ୍ଗଲ ସଂରକ୍ଷଣର ଉପକାରିତା ସମ୍ପର୍କରେ ବୁଝାଇଥିଲେ । ଗଛ ମୁଖ୍ୟତଃ ତିନୋଟି ଜିନିଷ ଦିଏ– ପବନ, ପାଣି, ମାଟି । ଗଛ ଅମ୍ଳଜାନ ଦିଏ । ଜଙ୍ଗଲ ବର୍ଷା କରାଏ । ଗଛର ପତ୍ରରୁ ମାଟିର ସୃଷ୍ଟି । ଭୂଭାଗ ଉପରେ ଥିବା ମାଟିକୁ ସରମାଟି କୁହାଯାଏ । ଏହି ମାଟିର ଉର୍ବରତା ଓ ଉତ୍ପାଦିକା ଶକ୍ତି ଅଧିକ । ଉପର ୨ ଇଞ୍ଚ ମାଟି ସୃଷ୍ଟି ହେବାକୁ ୧୨ ଶହ ବର୍ଷ ଲାଗେ । ଏଥିରେ ହିଁ ଧାନ, ଗହମ, ମୁଗ ଆଦି ଫସଲ ହୁଏ । ଗଛ ମୃତ୍ତିକା ସଂରକ୍ଷଣ କରେ । ଏହାର ଚେର ମାଟିକୁ ଭିଡି ରଖେ । ମାଟି ଉପରେ ପଡିଥିବା ପତ୍ର, ମାଟିକୁ ବର୍ଷା ବାଧାରୁ ରକ୍ଷାକରେ । ପାହାଡରେ ଗଛ ଥିଲେ ବର୍ଷାବେଳେ ପାଣି ଟୋପା ଗଛର ପତ୍ର, ଡାଳ, ଗଣ୍ଡି ଉପରେ ପଡେ । ଝଡିଲା ପତ୍ରର ଶେଯ ବିଛା ହୋଇଥିବା ହେତୁ ବର୍ଷାବିନ୍ଦୁ ଦ୍ୱାରା ମୃତ୍ତିକା କ୍ଷୟ ହୁଏ ନାହିଁ । ପାହାଡରେ ଗଛ ନଥିଲେ ବର୍ଷାବିନ୍ଦୁ ମାଟିକୁ ଅସାଡ କରି ମାଟି ଧୋଇ ନେଇ ଯାଏ । ମୃତ୍ତିକା କ୍ଷୟ ହୋଇ ଚାଷ ଜମିରେ ସରମାଟି ଉପରେ ବସିଯାଏ । ତଦ୍ୱାରା ଉତ୍ପାଦନ ବାଧାପ୍ରାପ୍ତ ହୁଏ । ମୃତ୍ତିକା କ୍ଷୟ ଯୋଗୁ ନଦୀର ଶଯ୍ୟା ଉପରକୁ ଉଠିଯାଏ । ଏହା ଫଳରେ ବଢି ହୁଏ । ନଦୀଶଯ୍ୟା ଉପରକୁ ଉଠିଗଲେ ବୃହତ ବିଦ୍ୟୁତ ପ୍ରକଳ୍ପରୁ ବିଜୁଳି ଉତ୍ପାଦନ କମିଯାଏ ।

ପାହାଡରେ ଗଛଥିଲେ, ବର୍ଷାବିନ୍ଦୁ ଛତାପତ୍ର ଉପରେ ପଡିଲା ପରେ ଜଳବିନ୍ଦୁ ମାଟି ତଳକୁ ଯାଇ ସେଠାରେ ସଞ୍ଚିତ ହୁଏ । ଗଛ ମଧ୍ୟ ନିଜ ଦେହରେ ବର୍ଷାଜଳକୁ ଧରି ରଖେ । ଏହି ଜଳ ପାହାଡର ବୃକ୍ଷଲତାମାନେ ବର୍ଷସାରା ନିୟନ୍ତ୍ରିତ ଭାବେ ଛାଡନ୍ତି । ଏଥିରୁ ଚିରସ୍ରୋତା ଝରଣାର ସୃଷ୍ଟି । ବୃକ୍ଷ ଛାୟା ପ୍ରଦାନ କରେ ଓ ଉତ୍ତାପ କମାଏ । ଏହା ଆମକୁ ଖାଦ୍ୟ, ବସ୍ତ୍ର, ବାସଗୃହ ଚାଷଯୋଗରଣ, ଗୃହୋପକରଣ, ଜାଳ, ଗୋଖାଦ୍ୟ, ଔଷଧ ଆଦି ଦିଏ । ଜଙ୍ଗଲ ପଶୁପକ୍ଷୀ ଓ ମଣିଷର ଜନନୀ, ବୃକ୍ଷ ଜୀବର ଜୀବନ । ତାର ଜୀବନର ଏକ ମାତ୍ର ବାର୍ତ୍ତା– 'ପରୋପକାରାୟ ବୃକ୍ଷାୟତଃ' ।

ପଦଯାତ୍ରୀବୃନ୍ଦ ନିମ୍ନଲିଖିତ ସଂଗୀତ ଗାନକରି ଗ୍ରାମରୁ ଗ୍ରାମ ଅତିକ୍ରାନ୍ତ କରୁଥିଲେ ।

"ବୃକ୍ଷ ବିନା ବଞ୍ଚିବା ନାହିଁ,
ବୃକ୍ଷ ଆମର ଜୀବନ ଭାଇ ।
ବୃକ୍ଷ ଆମର ଜୀବନ ଧନ
ଯୋଗାଏ ମାଟି ପାଣି ପବନ ।
ଖାଦ୍ୟ ବସ୍ତ୍ର ଓ ବାସଗୃହ,
ବୃକ୍ଷ ରାଜିଙ୍କ ଅନୁଗ୍ରହ ।
ଜାଳେଣି ଔଷଧ ଓ ଛାୟା,
ପ୍ରକାଶ କରେ ବୃକ୍ଷ ଦୟା ।
ବୃକ୍ଷକୁ ଭାଇ ଯତ୍ନ କର,
ବର୍ଷା ହୋଇବ ଝର ଝର,
ବୃକ୍ଷ ଦେବତା କଲେ ଦୟା,
ଅଭାବ ନ ରହିବ କାହା ।
ଜଙ୍ଗଲ ଆମ ଧନ ସମ୍ପଦ,
ତାକୁ ଧ୍ୱଂସ କଲେ ଆସେ ବିପଦ ।
ଜଙ୍ଗଲ ହୋଇଗଲେ ଶେଷ,
ହୋଇବ ନାହିଁ ଆଉ ଚାଷ ।
ବଣ ପଶୁପକ୍ଷୀ ଆମରି ସାଥି,
ତାଙ୍କ ସୁରକ୍ଷାରେ ଯିବାରେ ମାତି ।
ଗଛ ପତ୍ରର ସାର ସାର,
କୃତ୍ରିମ ସାର ପରିହର ।
ଗଛକୁ ଫୋପାଡିଲେ ଢେଲା,
ପାଚିଲା ଫଳ ଦିଏ ଏକା ।
ବୃକ୍ଷ ଛାୟାରେ ଆମେ ରହି,
ତାହାକୁ କାଟୁ ଅନ୍ଧ ହୋଇ ।
ତଥାପି ବୃକ୍ଷ ହୁଏ ସାହା,
କୃତଘ୍ନ ନରେ କରେ ଦୟା ।
ପରୋପକାର ତାର ଧର୍ମ,
ପରାର୍ଥେ ଧରିଛି ଜୀବନ ।"

ଲୋକମାନଙ୍କୁ ବୁଝାଯାଇଥିଲା ଯେ ପୃଥିବୀ ବକ୍ଷରେ ଦୁଇ ପ୍ରକାର ସମ୍ପଦ ରହିଛି, ଗୋଟିଏ ହେଉଛି– ଯେଉଁ ସମ୍ପଦର ବିନିଯୋଗ ପରେ ଆଉ ତାର ପୁନରୁଦ୍ଧାର କରାଯାଇ ପାରିବ ନାହିଁ–ଯଥା, ଧାତୁ ସମୂହ ଓ ଜଳେଣି (କୋଇଲା, ପେଟ୍ରୋଲ) । ଅନ୍ୟଟି ହେଉଛି– ଯେଉଁ ସମ୍ପଦର ବିନିଯୋଗ ପରେ ତାର ପୁନରୁଦ୍ଧାର କରାଯାଇପାରିବ–ଯଥା ଜଙ୍ଗଲ, ଚାରଣ ଭୂମି, ଚାଷ ଜମି ଓ ସମୁଦ୍ର, କିନ୍ତୁ ଏହି ସମ୍ପଦ ଗୁଡିକର ଅତ୍ୟଧିକ ବ୍ୟବହାର ହେଲେ ତାର ଆଉ ପୁନରୁଦ୍ଧାର ହୋଇ ପାରିବ ନାହିଁ ।

ଜଙ୍ଗଲର ଅଧିକାଂଶ ପର୍ବତ ବର୍ତ୍ତମାନ ମାଟି ଓ ପଥର ଗଦାରେ ପରିଣତ ହୋଇଛି । ସେଥିରେ ଘାସଟିଏ ମଧ୍ୟ କଅଁଳୁ ନାହିଁ । ସେଥିରେ ଗଛ ଲଗାଇ ପୁଣି ଜଙ୍ଗଲ ସୃଷ୍ଟି କରିବା ଏକ ଅତ୍ୟନ୍ତ ବ୍ୟୟ ବହୁଳ ଓ ସମୟସାପେକ୍ଷ ବ୍ୟାପାର । ପୃଥିବୀର ସବୁଠାରୁ ଉନ୍ନତ ଦେଶ ଜାପାନରେ ଲଣ୍ଡା ପାହାଡ ମାନଙ୍କରେ ଗଛ ଲଗା ଯାଉଛି । ସରମାଟି ଚାଲି ଯାଉଥିବାରୁ ତଳୁ ସରମାଟି ନେଇ ପାହାଡମାନଙ୍କ ଉପରେ ପକାଯାଉଛି । ତଳୁ ପାହାଡ ଉପରକୁ ପମ୍ପ ସାହାଯ୍ୟରେ ପାଣି ନିଆଯାଇ ଗଛ ବଞ୍ଚା ଯାଉଛି । ଏହା ଏତେ ବ୍ୟୟ ବହୁଳ ଯେ, ଭାରତପରି ଗରିବ ଦେଶରେ କରିବା ଅସମ୍ଭବ । ତେଣୁ ପଦଯାତ୍ରୀ ଦଳ ଗୋଟିଏ କଥା ଉପରେ ବାରମ୍ବାର ଗୁରୁତ୍ୱ ଦେଉଥିଲେ । ମୂଳ ଥାଉ ଥାଉ ଜଙ୍ଗଲ ସଂରକ୍ଷଣ କର । ଆଉ ଗୋଟିଏ କଥା ଉପରେ ମଧ୍ୟ ଗୁରୁତ୍ୱ ଦେଉଥିଲେ । ସ୍ୱାଧୀନତା ପୂର୍ବରୁ ଜଙ୍ଗଲରେ ଯେଉଁ ୨୨ ଗଛ (ଶାଳ, ପିଆଶାଳ, ଶିଶୁ, କେନ୍ଦୁ, ମହୁଲ, ଫାଣି, ସିମିଳି, ଆମ୍ବ, ପଣସ, ହରିଡା, ବାହାଡା, ଜାମୁକୋଳି ଆଦି) ଗଛଥିଲା, [illegible] ଜଙ୍ଗଲରୁ ଅନ୍ୟ ଗଛ କାଟି ଜାଳେଣିର ଆବଶ୍ୟକତା କମାଇବା ଉଚିତ ।

ପୂଜ୍ୟଶ୍ଳୋକା ଅମୃତ ଦେବୀଙ୍କ ଅମର କାହାଣୀ ଗ୍ରାମ ସଭାମାନଙ୍କରେ ବର୍ଣ୍ଣନା କରାଯାଇଥିଲା । ଆଜକୁ ୨୫୧ ବର୍ଷ ତଳେ ରାଜସ୍ଥାନର ଯୋଧପୁର ରାଜ୍ୟରେ ଅଭୟ ସିଂ ମହାରାଜା ଥିଲେ । ସେ ଏକ ନୂଆ ରାଜ ପ୍ରାସାଦ ତୋଳିବାକୁ ସ୍ଥିର କଲେ । ତେଣୁ ତାଙ୍କର ଜଣେ କର୍ମଚାରୀ ଗିରିଧର ଦାସ ଭଣ୍ଡାରୀଙ୍କ ନେତୃତ୍ୱରେ କେତେକ ଲୋକଙ୍କୁ ଜଙ୍ଗଲକୁ କାଠ ଆଣିବା ପାଇଁ ପଠାଇଲେ । ଗଛ କଟାଳିମାନେ ବିଶୋଇ ଗ୍ରାମରେ ପହଞ୍ଚିଲେ । ଏହି ଗ୍ରାମ ତରୁଲତାରେ ପୂର୍ଣ୍ଣ ଥିଲା । ଭଣ୍ଡାରୀ ଗଛଗୁଡିକ କାଟିବାକୁ ଆଦେଶ ଦେଲେ । ଗଛ କଟାଳୀମାନେ ଆଗେଇ ଆସୁଥିବା ଦେଖି, ଉପରୋକ୍ତ ଗ୍ରାମର ଅମୃତ ଦେବୀ ସେ ଗଛକୁ ଧରି ଯାଇଥିଲେ ଓ ଗଛଗୁଡିକ ନ କାଟିବାକୁ ଅନୁରୋଧ କରିଥିଲେ । ରାଜାଙ୍କର ଲୋକମାନେ ଏଥିପ୍ରତି କର୍ଣ୍ଣପାତ କଲେ ନାହିଁ । ଯେଉଁ ଗଛଟିକୁ ପ୍ରଥମେ କଟାଯିବ ବୋଲି ଚିହ୍ନ ଦିଆଯାଇଥିଲା, ଅମୃତଦେବୀ ସେ ଗଛଟିକୁ କୁଣ୍ଢାଇ ଧରିଥିଲେ । ସେ ମୁହୂର୍ତ୍ତରେ ସେ ଗୋଟିଏ କଥା କହିଥିଲେ ଯାହା ଆଜିପର୍ଯ୍ୟନ୍ତ ସେ ଅଞ୍ଚଳରେ ସର୍ବଜନବିଦିତ । ତାହା ହେଉଛି–

"କଟାଗଛ ଠାରୁ କଟାମୁଣ୍ଡ,
ସୁଲଭ ଅଟଇରେ ମାନବ" ।

ଗଛ କଟାଳିମାନେ ତାଙ୍କୁ କୁରାଢିରେ ହାଣି ପକାଇଥିଲେ । ସେ ନିଜ ଜୀବନକୁ ଉତ୍ସର୍ଗ କଲାପରେ ତାଙ୍କର ତିନି ଝିଅ ଆସି ଗଛକୁ ଜାବୁଡି ଧରିଥିଲେ । ସେମାନଙ୍କୁ ମଧ୍ୟ ନିର୍ଦ୍ଦୟ ଭାବେ ହତ୍ୟା କରାଯାଇଥିଲା । ଭଣ୍ଡାରୀ ଘଟଣା ସ୍ଥଳରୁ ଫେରିଯାଇ ଅଧିକ ଲୋକଙ୍କୁ ଧରି ପହଞ୍ଚିଲେ । ଏ କଥା ପାଖ ପଡିଶା ୮୪ଟି ଗ୍ରାମରେ ପ୍ରଚାରିତ ହୋଇଯାଇଥିଲା । କେବଳ ଗୋଟିଏ ଗ୍ରାମକୁ ଛାଡି ସମସ୍ତେ ଜଙ୍ଗଲ ରକ୍ଷା କରିବାକୁ ଆଗେଇ ଆସିଥିଲେ । ଲୋକମାନେ ଭଣ୍ଡାରୀଙ୍କ ଲୋକମାନଙ୍କୁ ପ୍ରତିରୋଧ କରିଥିଲେ । ଫଳରେ ଅନେକ ଲୋକ ନିଶ୍ଚିହ୍ନ ହୋଇ ଯାଇଥିଲେ । ମହାରାଜା ଏ ମର୍ମନ୍ତୁଦ ଘଟଣା ଶୁଣିବା ପରେ ରାଜ ପ୍ରାସାଦ ନିର୍ମାଣ ବନ୍ଦ କରିଥିଲେ । ସେ ଗ୍ରାମବାସୀମାନଙ୍କୁ ପ୍ରତିଶ୍ରୁତି ଦେଇଥିଲେ ଯେ ସେମାନଙ୍କ ଗ୍ରାମମାନଙ୍କର ଜଙ୍ଗଲରୁ କଦାପି ଗଛ କଟା ଯିବ ନାହିଁ । ଯେଉଁଠାରେ ଅମୃତ ଦେବୀ ଶହୀଦ ହୋଇଥିଲେ ସେ ସ୍ଥାନରେ ଏ ପର୍ଯ୍ୟନ୍ତ ଏକ ମେଳା ଅନୁଷ୍ଠିତ ହେଉଛି । ଏକ କିମ୍ବଦନ୍ତୀ ଅଛି ଯେ, ଯେଉଁଠାରେ ଅମୃତ ଦେବୀଙ୍କର ରକ୍ତ ପଡିଥିଲା ସେଠାରେ ଘାସଟିଏ ମଧ୍ୟ କଅଁଳେ ନାହିଁ ।

ଜଙ୍ଗଲରୁ ଗଛ କାଟି, କାଠ ବିକ୍ରିକରି କେତେକ ଲୋକ ଓ ସରକାର ଅର୍ଥର ପନ୍ଥା ସୁଗମ କରିଛନ୍ତି । ଏହାକୁ ଅର୍ଥର ଏକ ପନ୍ଥା ରୂପେ ନ ଧରିବାକୁ ପଦଯାତ୍ରୀଦଳ ଲୋକମାନଙ୍କୁ ବୁଝାଉଥିଲେ । ଗଛର ପରିବେଶୀୟ ମୂଲ୍ୟ ଯେ ଆର୍ଥିକ ମୂଲ୍ୟଠାରୁ ଯଥେଷ୍ଟ ଅଧିକ ତାହା ଲୋକେ ଓ ସରକାର ବୁଝିବା ଉଚିତ ।

ଭାରତର ୭୬ ଭାଗ ଲୋକ ଗ୍ରାମରେ ବାସ କରନ୍ତି । କୃଷି ସେମାନଙ୍କର ପ୍ରଧାନ ଜୀବିକା । ଜଙ୍ଗଲ ନୀତି କୃଷିର ସହାୟକ ଓ ପରିପୂରକ ହେବା ବାଞ୍ଛନୀୟ । କିନ୍ତୁ ଏହାର ଓଲଟା ନୀତି ଅନୁସୃତ ହେଉଛି । ଫଳରେ ୧୯୦୦ରୁ ୧୯୫୦ ମସିହା ମଧ୍ୟରେ ଓଡିଶାର ବାର୍ଷିକ ବୃଷ୍ଟିର ହାର ୬୦ ଇଞ୍ଚ ଥିଲାବେଳେ ୧୯୫୧ରୁ ୧୯୮୮ ମଧ୍ୟରେ ବାର୍ଷିକ ବୃଷ୍ଟିର ହାର ୫୨ ଇଞ୍ଚକୁ ଖସି ଆସିଛି । ଜଙ୍ଗଲ ଯେଉଁ ଗତିରେ ଧ୍ୱଂସ ହେଉଚି, ଆଉ ୪୦ ବର୍ଷ ପରେ ବାର୍ଷିକ ବୃଷ୍ଟିର ହାର ୪୦ ଇଞ୍ଚକୁ ଖସି ଆସିବାର ଆଶଙ୍କା ରହିଛି । ଏ ପରିସ୍ଥିତି ଆସିଲେ, ଓଡିଶାରେ ଆଉ ଧାନଚାଷ ହୋଇ ପାରିବ ନାହିଁ ।

ସାରାଦେଶରେ ପ୍ରକୃତିପ୍ରେମୀ ଓ ପରିବେଶ ବିଜ୍ଞାନୀମାନେ ନିରବଚ୍ଛିନ୍ନ ବିକାଶର ସୂତ୍ର ଉପରେ ଏକ ବିଚାରଶୀଳ ଜାତୀୟ ଜଙ୍ଗଲ ନୀତି ଅନୁସୃତ ହେବା ପାଇଁ ସ୍ୱର ଉତ୍ତୋଳନ କରିଛନ୍ତି । ଜଙ୍ଗଲ ଉପରେ ଜନ ସାଧାରଣଙ୍କର କର୍ତ୍ତୃତ୍ୱ ରହିବା ଉଚିତ ଏବଂ ସେମାନଙ୍କ ଦ୍ୱାରା ଜଙ୍ଗଲ ପରିଚାଳିତ ହେବା ଉଚିତ । ପ୍ରାଚୀନ କାଳରୁ ଭାରତରେ ଜଙ୍ଗଲ ଲୋକମାନଙ୍କର କର୍ତ୍ତୃତ୍ୱ ଓ ନିୟନ୍ତ୍ରଣରେ ରହିଥିଲା । ୧୮୬୭ ମସିହାରୁ ବ୍ରିଟିଶ ସରକାର ଜଙ୍ଗଲ ଉପରେ ସରକାରଙ୍କର କର୍ତ୍ତୃତ୍ୱ ଘୋଷଣା କଲେ । ତାପରେ ଲୋକମାନେ ଭାବିଲେ ଯେ ଜଙ୍ଗଲ ସେମାନଙ୍କର ନୁହେଁ । ଜଙ୍ଗଲ ଓ ଲୋକମାନଙ୍କ ମଧ୍ୟରେ ବିରୁଦ୍ଧଭାବ (ଏଲିଏନେସନ୍) ଆସିଗଲା । ଜଙ୍ଗଲ ଉପରେ ଲୋକମାନଙ୍କର କର୍ତ୍ତୃତ୍ୱ ପୁନ ପ୍ରତିଷ୍ଠିତ ହେଲେ ସେମାନେ ଜଙ୍ଗଲର ସୁରକ୍ଷା ପାଇଁ ମନ ବଳାଇବାର ସମ୍ଭାବନା ରହିଛି ।

ଉପରୋକ୍ତ ଗ୍ରାମମାନଙ୍କରେ ପଦଯାତ୍ରାବେଳେ ଦେଖା ଯାଇଥିଲା ଯେ, ଜାଳେଣି ସମସ୍ୟା ଉତ୍କଟ ଆକାର ଧାରଣ କରିଛି । ଲୋକମାନେ ନଡା, ଅଖୁଛେଦା, ଓ ଶୁଖିଲା ପତ୍ର ଜାଳେଣି ରୂପେ ବହୁବର୍ଷ ହେଲା ବ୍ୟବହାର କରୁଛନ୍ତି । ଅନେକ ଛୋଟ ଛୋଟ ପିଲା ସ୍କୁଲକୁ ନ ଯାଇ ଶୁଖିଲା ପତ୍ର, କାଠି, କୁଟା ଗୋଟାଇବାରେ ଦିନର ଅନେକ ସମୟ ବ୍ୟୟ କରୁଛନ୍ତି । ଗ୍ରାମ ସୀମା ଭିତରେ ଗଛ ଲଗାଇବା ଓ ଜଙ୍ଗଲ ସୁରକ୍ଷା କରିବା ପାଇଁ ସାମୂହିକ ଉଦ୍ୟମ ଅତ୍ୟନ୍ତ କ୍ଷୀଣ । ଜଙ୍ଗଲ ସୁରକ୍ଷା ପାଇଁ କାଁ ଭାଁ ଉଦ୍ୟମ ହେଉଛି । ଗ୍ରାମଗୁଡିକରେ ଏକତା ନ ଥିବାରୁ ଓ ପାର୍ଶ୍ୱବର୍ତ୍ତୀ ଗ୍ରାମମାନଙ୍କ ମଧ୍ୟରେ ଯୋଗସୂତ୍ର ଓ ସହଯୋଗର ଅଭାବରୁ ତାହା ସଫଳ ହୋଇ ପାରୁନାହିଁ ।

ଗ୍ରାମମାନଙ୍କରେ ଗୋଷ୍ଠୀ ଜୀବନ ଓ ଗୋଷ୍ଠୀ କାର୍ଯ୍ୟକଳାପ (ସୋସାଲ ଆକ୍ସନ୍) ଦୁର୍ବଳ ହୋଇ ଯାଇଛି । ଗ୍ରାମମାନଙ୍କରେ ସାମାଜିକ ସଂହତି ନାହିଁ । ସାମାଜିକ ସଂହତି ସାମାଜିକ ସଂଗଠନରୁ ଉଦ୍ଭୁତ । ସାମାଜିକ ସଂଗଠନ ସାମାଜିକ ଚେତନାରୁ ସମ୍ଭୂତ । ସାମାଜିକ ସଂହତିରୁ ରାଜନୀତିକ ସଂଗଠନ ଓ ରାଜନୀତିକ ଅନୁଷ୍ଠାନର ଜନ୍ମ । ରାଜନୀତିକ ପ୍ରକ୍ରିୟାରେ ଲୋକମାନଙ୍କ ଅଂଶ ଗ୍ରହଣ ଦ୍ୱାରା ରାଜନୀତିକ ସଂଗଠନ ଗଢି ଉଠେ । ଏହା ଫଳରେ ରାଜନୀତିକ ସଂକଳ୍ପ (ପୋଲିଟିକାଲ୍ ଉଇଲ୍) ଦୃଢୀଭୂତ ହୁଏ । ରାଜନୀତିକ ସଂକଳ୍ପରୁ ଅର୍ଥନୀତିକ ବିକାଶ ହୁଏ ।

ଗ୍ରାମମାନଙ୍କରେ ଜଙ୍ଗଲ ସୁରକ୍ଷା ପାଇଁ ଜନଚେତନା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଜନ ସଂଗଠନର ଆବଶ୍ୟକତା ରହିଛି । ସରକାର ରାଜନୀତିକ ଦଳ ବା ଗ୍ରାମବାସୀ ଏହି କାର୍ଯ୍ୟ କରିପାରି ନାହାନ୍ତି । ସରକାରୀ କର୍ମଚାରୀମାନଙ୍କର ଜଙ୍ଗଲ ସୁରକ୍ଷା ଓ ବୃକ୍ଷ ରୋପଣ ଉଦ୍ୟମ କାଁ ଭାଁ ସଫଳ ହୋଇଛି । ରାଜନୀତିକ ଦଳମାନେ ନିଜର ସଂକୀର୍ଣ୍ଣ ସ୍ୱାର୍ଥସିଦ୍ଧି ପାଇଁ ଗ୍ରାମମାନଙ୍କୁ ଭାଗ ଭାଗ କରିବାରେ ଲାଗିଛନ୍ତି । ଗ୍ରାମର ବିବଦମାନ ଗୋଷ୍ଠୀ ସେମାନଙ୍କର ଭୋଟବ୍ୟାଙ୍କ୍ ହୋଇଛନ୍ତି । ଗ୍ରାମବାସୀମାନେ ଥରେ ରାଜନୀତିକ ଯନ୍ତା ଭିତରେ ପଶିଗଲାପରେ ବାହାରକୁ ଆସିବାର ବାଟ ପାଉ ନାହାନ୍ତି ।

ଅଧିକାଂଶ ଗ୍ରାମରେ ଗ୍ରାମ ବିବାଦ ଗ୍ରାମରେ ନ ତୁଟି ହାଟରେ ପଡି ଦାଣ୍ଡରେ ଗଡୁଛି । ଥାନା ଓ କୋର୍ଟକୁ କେସ୍ ନେଇ ଗ୍ରାମବାସୀ ନିଜର କଷ୍ଟୋପାର୍ଜିତ ଧନକୁ ପରକୁ ଦେଇ ସର୍ବସ୍ୱାନ୍ତ ହେଉଛନ୍ତି । ଗ୍ରାମର ପୋଖରୀ, ଗଡିଆ ଖୋଳି ଜଳସେଚନ ବ୍ୟବସ୍ଥାର ଦୃଢୀକରଣ ପାଇଁ ଉଦ୍ୟମ ନାହିଁ । ଯେଉଁଠାରେ ମାଛ ଚାଷ ହେଉଛି, ଗ୍ରାମବାସୀମାନେ ଭାଗ ବାଣ୍ଟି ମାଛ ଖାଉଛନ୍ତି । ମାଛ ଚାଷରୁ ଲବ୍ଧ ଧନ ଗ୍ରାମ ପୁଷ୍କରିଣୀର ପୁନରୁଦ୍ଧାର ଓ ଅନ୍ୟାନ୍ୟ ଉନ୍ନତିମୂଳକ କାର୍ଯ୍ୟରେ ନିୟୋଗ କରିବାର ପ୍ରୟାସ ନାହିଁ । ଓଡିଶାର ପ୍ରାୟ ୧୨ଟି ଲେଖାଏଁ ଗ୍ରାମ ପାଇଁ ଗୋଟିଏ ପଞ୍ଚାୟତ ରହିଛି । ପ୍ରତି ଗ୍ରାମରେ ପଞ୍ଚାୟତ ଗଠନ କରିବା ଅତ୍ୟନ୍ତ ଜରୁରୀ ହୋଇ ପଡିଛି । ଗ୍ରାମମାନଙ୍କରେ ସାମାଜିକ ସଂହତି ରାଜନୀତିକ ସଂଗଠନର ଭିତ୍ତି ଦୃଢ ହେଲେ ଅର୍ଥନୀତିକ ବିକାଶର ପଥ ଉନ୍ମୁକ୍ତ ଓ ସୁଗମ ହେବ ।

ଗ୍ରାମମାନଙ୍କରେ ସାମାଜିକ ସଂହତି ପାଇଁ ମାନବିକ, ନୈତିକ ଓ ଆଧ୍ୟାତ୍ମିକ ମୂଲ୍ୟ ବୋଧର ଦୃଢୀକରଣ ଆବଶ୍ୟକ । ନୈତିକ ମୂଲ୍ୟବୋଧର ଦ୍ରୁତ ଅବକ୍ଷୟ ଓ ଅଧୋପତନ ହେଉଥିବାବେଳେ, ଗ୍ରାମର ସାମାଜିକ ସଂହତି ରାଜନୀତିକ ସଂଗଠନ ଓ ଅର୍ଥନୀତିକ ବିକାଶ ଆଶା କରିବା ବିଡମ୍ବନା ମାତ୍ର ।

ଏହି ପରିପ୍ରେକ୍ଷୀରେ ସେଚ୍ଛାସେବୀ ଅନୁଷ୍ଠାନମାନଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । କିନ୍ତୁ ଆଧୁନିକ ସମାଜ ଯେତେବେଳେ ବସ୍ତୁବାଦିତା ଓ ସ୍ୱାର୍ଥପରତା ଉପରେ ପର୍ଯ୍ୟବେସିତ, ସେତେବେଳେ ନିସ୍ୱାର୍ଥପର ଜନସେବା ପାଇଁ କିଏ ଅଗ୍ରହୀ ? ତେଣୁ ସ୍ୱେଚ୍ଛାସେବୀ ଅନୁଷ୍ଠାନମାନଙ୍କର ସଂଖ୍ୟା ଅତି ସୀମିତ । ଯାହାବି ସ୍ୱେଚ୍ଛାସେବୀ ଅନୁଷ୍ଠାନ ରହିଛି, ସେମାନଙ୍କ ମଧ୍ୟରେ ଦିଗ୍‌ଦର୍ଶନ, ନିଷ୍ଠା ଓ ଆନ୍ତରିକତା ଅଭାବ ରହିଛି ।

ତେଣୁ ସାମୂହିକ ଓ ଗୋଷ୍ଠୀ ପ୍ରଚେଷ୍ଟା ଦ୍ୱାରା ଦେଶର ପରିବେଶ ଓ ବନ ସମ୍ପଦର ସୁରକ୍ଷା ସମ୍ପର୍କରେ ଘୋର ସନ୍ଦେହ ଜାତ ହେଉଛି । ଯାହା ଜଳଜଳ ଦିଶୁଛି, ଜାଳେଣି, ଗୋଖାଦ୍ୟ, ଚାଷୋପକରଣ, ଗହୋପକରଣ ଆଦି ପାଇଁ ଆହୁରି ହନ୍ତସନ୍ତ ଓ ଡନିଡଲାନ୍ତି ହେଲାପରେ ଗ୍ରାମବାସୀମାନେ ନିଜ ନିଜର ଜମି ଓ ପଦାରେ ଗଛ ଲଗାଇ ଜୀବିକା ନିର୍ବାହ କରିବେ । ଏ ଭୟାବହ ପରିସ୍ଥିତି ଦେଶର ବୁଦ୍ଧିଜୀବୀ, ଚିନ୍ତାଶୀଳ ଓ ପରିବେଶପ୍ରେମୀ ନାଗରୀକମାନଙ୍କ ପାଇଁ ଗଟ ଚିନ୍ତାର ବିଷୟ ହୋଇ ପଡିଛି ।

ଶିକ୍ଷିତ ବ୍ୟକ୍ତିମାନେ ହୃଦୟର କଠିନତାକୁ ଲକ୍ଷ୍ୟକଲେ ହୃଦୟରେ ଉଦ୍‌ବେଗ [illegible] ହୁଏ । ସମୂହ ସ୍ୱାର୍ଥ, ସମାଜ ସେବା ଓ ଦେଶ ଗଠନ ପ୍ରତି ଶିକ୍ଷିତ ଲୋକମାନଙ୍କର ଉଦାସୀନତା ଦେଖିଲେ ଯେ କୌଣସି ବିବେକୀ ବ୍ୟକ୍ତିର ଘୋର ନୈରାଶ୍ୟ ଜାତ ହୁଏ । ଏହି ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହୋଇ ଲକ୍ଷ୍ୟ ହାସଲ କରିବା ପାଇଁ ଅସାଧାରଣ ନୈତିକ ମନୋବଳ ସମ୍ପନ୍ନ ଜନସେବୀଙ୍କର ଆବଶ୍ୟକତା ରହିଛି ।

ରାଜନୀତି ବିଜ୍ଞାନ ବିଭାଗ,
ଉତ୍କଳ ବିଶ୍ୱବି ାଳୟ,
ଭୁବନେଶ୍ୱର ।

"ଗରିବ ଲୋକମାନଙ୍କ ନିକଟରେ ଉଚ୍ଚଶିକ୍ଷା ପହଞ୍ଚାଇବା ବିଶ୍ୱବିଦ୍ୟାଳୟର ଏକ ମୌଳିକ କର୍ତ୍ତବ୍ୟ । ଆମେମାନେ ବର୍ବର ସଭ୍ୟତାର ଧର୍ମୀୟ ଉପାଦାନକୁ ତ୍ୟାଗ କରି ପାରିବା, କିନ୍ତୁ ଉଚ୍ଚଶିକ୍ଷା ନୁହେଁ ।"

—ଡକ୍ଟର୍ ଆମ୍ବେଦ୍‌କର୍

• ମେଳା ମଉଛବ



# ବଡ଼ଗାଁର ଚଇତ ଯାତ୍ରା

ଅଧ୍ୟାପକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତା

ସମସ୍ତଙ୍କ ମୁହଁରୁ ଶୁଣିବାକୁ ମିଳିଲା, "ଚଇତ ଯାତ୍ରା ଅସିଗଲା"। ଚଇତ ପର୍ବ ହୁଏତ ହୋଇଥିବ। ସୁନ୍ଦରଗଡ଼ ଜିଲ୍ଲାର ଏ ବଡ଼ଗାଁ ପଞ୍ଚାୟତ ସମିତି ଅଞ୍ଚଳର ଅଧିବାସୀଙ୍କ ମଧ୍ୟରୁ ପ୍ରାୟ ୭୦ ଶତାଂଶ ଆଦିବାସୀ। ବସନ୍ତ ଋତୁରେ ହୁଏତ ଆଦିବାସୀ 'ଚଇତ ପର୍ବ' କରୁଥିବେ; ସବୁଆଡ଼େ ଯେପରି ହୁଏ। ଏଠି ସମସ୍ତେ ହୁଏତ କହୁଥିବେ 'ଯାତ୍ରା'। କିନ୍ତୁ ବଡ଼ଗାଁର ମୁଖ୍ୟଭାଗ ଅଧିବାସୀ ଅଣଆଦିବାସୀ — ଅନେକ ବ୍ରାହ୍ମଣ, ତା ହେଲେ? ପଚାରି ବୁଝିବାରେ ଭୁଲ ଭାଙ୍ଗିଗଲା। ଜଣେ ବନ୍ଧୁ ବତାଇ ଦେଲେ – ରାମ ନବମୀ ଯାତ୍ରାର ଏହା ସ୍ଥାନୀୟ ନାମ। ହଁ, ଓଡ଼ିଶାର ସର୍ବତ୍ର ରାମଲୀଳା ହୁଏ, ସେହିଭଳି କିଛି ହେଉଥିବ, ଭାବି ଥିଲି।

କିନ୍ତୁ ଏ ବର୍ଷ ପାଇଁ ଯାତ୍ରା ପରିଚାଳନା କମିଟିର ସଭାପତି ଶ୍ରୀ ସେବାନନ୍ଦ ପଣ୍ଡାଙ୍କୁ ପଚାରିବାରେ ଯାତ୍ରାର ବାସ୍ତବ ରୂପ ବିଷୟରେ ସାମାନ୍ୟ ପୂର୍ବ ଧାରଣା ନେଇ ଅପେକ୍ଷା କଲି ରାମନବମୀର ଶୁଭ ଦିନକୁ। ପଣ୍ଡାବାବୁଙ୍କ ସହିତ ଦିନେ ଗାଁକୁ ଯାଇ ଦେଖିଲୁ ସେ ଯାତ୍ରା ମଣ୍ଡପ। ଗାଁର ପ୍ରାୟ ମଝିରେ ଜଗନ୍ନାଥଙ୍କ ମନ୍ଦିର ସମକ୍ଷରେ ଗୋଟିଏ ଛୋଟିଆ ମଣ୍ଡପ। ଏହା ଯାତ୍ରା ମଣ୍ଡପ। ମଣ୍ଡପକୁ ଘେରି ମନ୍ଦିରର ଚାରିପାଖ ପରି ରହିଛି କେତେଗୁଡ଼ିଏ ପକ୍କା କୋଠରୀ। ହନୁମାନ୍‌ଜୀଙ୍କ ମୂର୍ତ୍ତି ପୂଜିତ ହେଉଛନ୍ତି ଗୋଟିକରେ। ପାଖ କୋଠରୀରେ ରାମ [illegible]। ଆଉ ଗୋଟିଏ କୋଠରୀରେ ରହିଛି ରାମଲୀଳା ପାଇଁ ବେଶ, ପୋଷାକ, ମୁଖା, ଧନୁଶର, ଗଦା, ଖଣ୍ଡା ସହିତ ବାଦ୍ୟଯନ୍ତ୍ର। ଆରପଟ [illegible] ରହିଛି ଯାତ୍ରା କମିଟିର ଅଫିସ। ସେ ଘରେ ମଧ୍ୟ ଲୁହା ଆଲମାରୀମାନଙ୍କରେ ଭରି ରହିଛି ଯାତ୍ରାର ବିବିଧ ଉପକରଣ। ପାଖ କୋଠରୀରେ ବଡ଼ ନିଶାଣ, ଢୋଲ ପ୍ରଭୃତି ବାଜା। ଆହୁରି ଦେଖିଲୁ [illegible] ମେଢ଼। ଏଗୁଡ଼ିକୁ ଏଠି ପ୍ରଭା କହନ୍ତି। ପ୍ରାୟ ଦେଢ଼ଫୁଟ [illegible] ଦୁଇଟି ମୋଟା ମଜବୁତ କାଠ ରହିଛି ପରସ୍ପରଠାରୁ ଅନ୍ଦାଜ [illegible] ଅନ୍ତରରେ। ମଝିରେ ମଝିରେ କାଠରେ ଯୋଡ଼ା ହୋଇ [illegible] ଭଳି ହୋଇଛି — ଖୁଣ୍ଟା ହୋଇଛି ଚିକ୍କଣ ବାଉଁଶ ବତା। [illegible] ଉପରକୁ ଉଠିଛି ମେଢ଼ ବା ପ୍ରଭା ରଥ ଭଳି। ଏହ[illegible]ମାନଙ୍କରେ ନାନା ସାଜସଜ୍ଜା କରି ବିଭିନ୍ନ ଦିନ ରାମ, ଲକ୍ଷ୍ମଣ, [illegible] ସୁଗ୍ରୀବ, ରାବଣ, କୁମ୍ଭକର୍ଣ୍ଣ ପ୍ରଭୃତିଙ୍କୁ ଆଠ ଦଶ ଜଣ ଲୋକ କାନ୍ଧେଇ ଗାଁର ଏ ମୁଣ୍ଡରୁ ସେ ମୁଣ୍ଡକୁ ଯାତ୍ରା କରନ୍ତି ପ୍ରାୟ ଦେଢ଼ କିଲୋମିଟର ବାଟ। ତା'ପରେ ମଣ୍ଡପକୁ ଆସନ୍ତି। ରାମାୟଣ ବୋଲା ଚାଲିଥାଏ। ଲୀଳାଭିନୟ ହୁଏ। ମଣ୍ଡପକୁ ଏବଂ - ତାର ଚାରିପାଖେ ଏ ଆୟୋଜନକୁ ଦେଖିଲେ ସହଜ ଅନୁମାନ କରିହୁଏ ଏଇ ଲୋକଙ୍କ ମଧ୍ୟରେ ରାମନବମୀ ଯାତ୍ରାର ଗୁରୁତ୍ୱ। ଆମେ ଯାଇଥିବା ବେଳେ ଯାତ୍ରା ପାଖେଇ ଆସୁଥାଏ। ଚାଲିଥାଏ ଗୀତ ବାଦ୍ୟର କିଛି ରିଆଜ୍, ରିହାର୍ସେଲ୍। ଏ ବର୍ଷ କେତେଗୁଡ଼ିଏ ନୂଆ ଜରି ପୋଷାକ, ଚକଚକିଆ ମୁକୁଟ କିଣା ହୋଇ ଆସିଥାଏ କଲିକତାରୁ। କଟକରୁ କାରିଗର ଆସି ମେଢ଼ ସଜାନ୍ତି। ପେଣ୍ଟିଂ, ଡ୍ରେସିଂ କରନ୍ତି ବୋଲି ପଣ୍ଡାବାବୁ କହିଲେ।

ଯାତ୍ରାର ଶୁଭାରମ୍ଭ ହୁଏ ରାମନବମୀ ଦିନ। ରାମ ଜନ୍ମଠାରୁ ରାମାଭିଷେକ ପର୍ଯ୍ୟନ୍ତ ରାମାୟଣ ବୃତ୍ତାନ୍ତର ବିଭିନ୍ନ ଅଂଶ ଅଭିନୀତ ହୁଏ ସାତଦିନ ଧରି। କ୍ରମେ ଏ ଯାତ୍ରାର ସମୟ ୯ ଦିନ ଅଥବା ୧୧ ଦିନକୁ ସମ୍ପ୍ରସାରିତ ହୋଇଛି। ଓଡ଼ିଶାର ଏହି ଜନପ୍ରିୟ ଲୋକନାଟ୍ୟ ରାମଲୀଳା ବହୁ ସ୍ଥାନରେ ଏହିଭଳି ୭।୯।୧୧ ଦିନ ଧରି ଚାଲେ। କିନ୍ତୁ ବଡ଼ଗାଁ ଯାତ୍ରାର ବହୁ ବର୍ଷ ବ୍ୟାପୀ ବିବିଧ ବୈଶିଷ୍ଟ୍ୟ ଏହାକୁ ଏକ ମୁଖ୍ୟ ଯାତ୍ରାର ଗୌରବ ଆଣି ଦେଇଛି। କେତେ ଦିନ ଧରି ଏ ଯାତ୍ରା ଚାଲିଛି ତାର ସଠିକ୍ ବିବରଣୀ ନାହିଁ। ବଡ଼ଗାଁର ପ୍ରାୟ ନବେ ବର୍ଷର ଲୋକେ ଅନୁମାନ କରନ୍ତି, ଅନ୍ତତଃ ଚାରି ଶହ ବର୍ଷ ପୂର୍ବରୁ ଏହାର ଅନୁଷ୍ଠାନ ଚାଲିଛି। ଯେଉଁ ରାମାୟଣ ପୋଥି ଏଥିରେ ବୋଲା ହୁଏ ତାହାର ଲିପିରେ ମୂଳ ସମୟର କରଣୀ ଭଙ୍ଗୀ ରହିଛି। କିନ୍ତୁ ପରବର୍ତ୍ତୀ କାଳରେ ବହୁ ଲୋକଙ୍କ ଦ୍ୱାରା ରଚିତ ସଙ୍ଗୀତ ପ୍ରଦୀପ୍ତ ହୋଇ ସମୁଦାୟ ଗ୍ରନ୍ଥକୁ ଏକ ଗୀତିନାଟ୍ୟରେ ପରିଣତ କରିଛି। ଗାୟକ ଲଳିତ କଣ୍ଠରେ ବାଦ୍ୟଯନ୍ତ୍ର ସମାହାରରେ ଗୀତ ବୋଲନ୍ତି ଓ ଅନେକ ପାଳିଆ ଧରନ୍ତି। ଶ୍ରୀ ଗାୟକ ସାଧାରଣତଃ ଜଣେ ନିଷ୍ଠାପର ବ୍ରାହ୍ମଣ। ସେହିପରି ଚରିତ୍ରମାନଙ୍କ ମଧ୍ୟରେ ରାମ ଅବଶ୍ୟ ବ୍ରାହ୍ମଣ ହୁଅନ୍ତି ଏବଂ ସେ ଯାତ୍ରା ସମୟରେ ଆବଶ୍ୟକ ନିୟମ ନିଷ୍ଠା ପାଳନ କରନ୍ତି। ନାରୀ ଚରିତ୍ରରେ ଅଭିନୟ କରନ୍ତି ପୁରୁଷ ପିଲା।

ନିକଟବର୍ତ୍ତୀ ଆଠ ଦଶ କିଲୋମିଟର ବ୍ୟାସାର୍ଦ୍ଧ ପରିମିତ ଅଞ୍ଚଳରେ ଅଧିବାସୀଙ୍କ ପାଇଁ ଏ ବସନ୍ତ ଉତ୍ସବ ହୁଏ ଏକ ମେଳା। ସନ୍ଧ୍ୟା ପରେ

ପରେ ବଡ଼ଗାଁରେ ସବୁ ଦିଗରୁ ଲୋକ ଛୁଟନ୍ତି ଏହି ଚଇତ ଯାତ୍ରା ପଡ଼ିଆକୁ । ଗାଡ଼ି, ମଟର, ଟ୍ରକ୍ ସବୁରେ ଭିଡ଼ । କିନ୍ତୁ ବେଶୀ ଭାଗ ଲୋକ ପଦଯାତ୍ରୀ । ଆବାଳ ବୃଦ୍ଧ ବନିତା ସବୁ ବୟସର ହଜାର ହଜାର ଲୋକ । ଯାତ୍ରା ଦିନ ଯେତେବେଳେ ସରି ସରି ଆସେ ଜନସମାଗମ ଅଧିକରୁ ଅଧିକ ହୁଏ । ଗ୍ରାମବାସୀଙ୍କ ଘରେ ଘରେ ବିଦେଶାଗତ ବନ୍ଧୁ ଅତିଥି, ଝିଅଝିଆଣିଆ । ମହା ମିଳନ ପୀଠ ହୁଏ ଗାଁ ଦାଣ୍ଡ । ବୋହୂ ଭୁଆସୁଣୀ, ଝିଅଝିଆଣୀ, ଭାଇଭଉଣୀ, କେତେ ପିଲା ଦିନର ସାଥୀ । କେତେ ବିସ୍ମୃତ ଅତୀତ । ସେ ଦିନର ଗାଁ ଝିଅ ଆଜି ପର ଗାଁର ବୋହୂ; ଆସିଛି ଗୋଟିଏ ଯୋଡ଼ିଏ ସାଙ୍ଗରେ ଲପାର । ଗାଁ ଦାଣ୍ଡ ପୂରି ଉଠେ ଚକ୍‌ଚକିଆ ଶାଢ଼ୀ ଅଳଙ୍କାର, ସିନ୍ଦୁର ଅଳତା ରଙ୍ଗରେ । ପାନଖିଆ ପାଟିର ହସରେ ସତେ ଯେପରି ଫୁଟି ଉଠେ ସହସ୍ର ପଦ୍ମ ଫୁଲର ଆଧାରରେ ସଜ ବଧୂଳୀ ମାଳମାଳ । ସେଇ ଗାଁ ଦାଣ୍ଡରେ ଜୁହାର, ଓଳିକି, ପଦ ବନ୍ଦନା; ଶେଷ ଶେଷ ବେଳକୁ ଷାଠିଏ ସତୁରି ହଜାର ପର୍ଯ୍ୟନ୍ତ ହେବେ । ରାତିଯାକ ଗ୍ରୁଲିଥାନ୍ତି ଅବାରିତ । ରାତି ପ୍ରାୟ ଏଗାରଟା ବେଳେ ସେମାନେ ଯାତ୍ରାର ଆସରକୁ ଲକ୍ଷ୍ୟ କରି ଆସନ୍ତି । ସୂର୍ଯ୍ୟୋଦୟ ବେଳେ ଗାଁରେ ପହଞ୍ଚିବା ଉଦ୍ଦେଶ୍ୟରେ ସେମାନେ ଫେରନ୍ତି । ଆସିବା ବେଳର ତେଲ ଚିକ୍କଣ ନଥାଏ ବାଳରେ, ଶାଢ଼ୀଯାକ କି ଧୂଳି । ଆଖି ପତାରେ ନିଦର ବୋଝ । କାଖରେ ଦୁଧଖିଆ ଛୁଆ ଶୋଇଛି ଅବା ଗାଉଛି । ଥକିଲା, ଥକିଲା ପାଦ ଯୋଡ଼ାକ ତଥାପି ଗ୍ରଲିଛି ଆଗକୁ, ଆଗକୁ । ଆଉ ଟିକିଏ ଗଲେ ହୁଏତ ଗାଁ ଆସିଯିବ ।

ଏ ଜନସମାଗମର ସମ୍ବର୍ଦ୍ଧନା ଲାଗି କିଣା ବିକାର ବଜାର, ଅପେରା, କଣ୍ଢେଇ ନାଚ, ଜଳଖିଆ, ସରବତ ଦୋକାନରେ ଭିଡ଼ । ବଡ଼ଗାଁର ଗୋଟାଏ ପଟେ ଚନ୍ଦନ ପୋଖରୀ ସାମନାରେ ପ୍ରାୟ ୧୦୦-୨୦୦ ଏକର ପରିମିତ ଶୁଷ୍କ ଜମି ଏ ବେଳକୁ ପଡ଼ିଆଏ ଶୃଙ୍ଖଳା । ଏହି ପଡ଼ିଆରେ ଗ୍ରରିଆଡ଼େ ବସିଯାଏ ଷ୍ଟଲମାନଙ୍କର ବଜାର । ଏ ବଜାରରେ ବେଶୀ ଭାଗ ଚୁଡ଼ି, ସିନ୍ଦୁର, ପିଲାଙ୍କ ଖେଳଣା, ଶଙ୍ଖା ମୁଦି ଗହଣା ସହିତ ଗ୍ରାମ୍ୟ ଲୋକଙ୍କ ଆବଶ୍ୟକତାକୁ ଗ୍ରହିଁ ଲୁହା, ଆଲୁମିନିୟମ୍, କଂସା ପିତଳର ବହୁ ଜାତିର ଦ୍ରବ୍ୟ, ବାସନ କୁସନ । ଆଜିକାଲି ସମସ୍ତଙ୍କ ପାଦରେ ହଳେ ଲେଖାଏଁ ପ୍ଲାଷ୍ଟିକ୍ ଚଟି । ସେଇଥିରୁ ୮୦୦ଟା ବଡ଼ ବଡ଼ ଦୋକାନ ଥିଲା । ବରା ଗୁଲୁଗୁଲା, ଜିଲାପି ରସଗୋଲା, ସ୍ବ ସରବତ ଦୋକାନରେ ଘୋର ଭିଡ଼ । ଏ ବର୍ଷ ବର୍ଷା ହେଲା ନାହିଁ; ବେଶ୍ ଶୀତ ବି ଥାଏ । ତେଣୁ ଦୋକାନୀଙ୍କ ବ୍ୟବସାୟ ବେଶ୍ ହେଲା । ଏମାନଙ୍କ ମଧ୍ୟରୁ ଅନେକ ଆସିଥାନ୍ତି ବହୁ ଦୂରରୁ । ଟାଟା, ରାଞ୍ଚି, ରାୟପୁର ପାଖରୁ ସାଜ ସରଞ୍ଜାମ ବୋହି ଆସିଥାନ୍ତି ତାର ଫେସନର ଚୁଡ଼ି ମୁଦି ଗହଣାବାଲା । କଲିକତାରୁ ବି ପାଞ୍ଚଟି ଦୋକାନୀ ଥିଲେ । ଏଇଥିରୁ ବୁଝିବାକୁ ହୁଏ ଏ ଚଇତ ଯାତ୍ରାର ପ୍ରସିଦ୍ଧି । ଏଡ଼େ ବଡ଼ ପଡ଼ିଆ ଓ ସମଗ୍ର ଗ୍ରାମ ଦାଣ୍ଡର ପ୍ରାୟ ଏକ କିଲୋମିଟର ରାସ୍ତାର ଉଭୟ ପାଖେ ଦୋକାନ । ମଝିରେ ଖାଲି ଲୋକ ଆଉ ଲୋକ ।

ଏ ଯାତ୍ରା ଶୁଦାରୀ ଲୋକଙ୍କୁ ସାରା ରାତି ଆମୋଦ ପ୍ରମୋଦ ଯୋଗାଇବା ଲାଗି ରାମଲୀଳା ସହିତ ଆହୁରି ଅନେକ ଆୟୋଜନ ବି ହୁଏ । ଲୀଳା ମଣ୍ଡପ ଗ୍ରରିପାଖେ ଦେଖଣାହାରୀଙ୍କ ସ୍ଥାନ ଅତି ସୀମିତ । ତେଣୁ ଏତେ ଲୋକଙ୍କୁ ଆମୋଦରତ କରିବା ଉଦ୍ଦେଶ୍ୟରେ ଯାତ୍ରା କମିଟିଙ୍କ ଉଦ୍ୟମରେ କେତେ ପ୍ରକାର ଭ୍ରାମ୍ୟମାଣ ରଙ୍ଗ ଉପକାରୀଙ୍କ ବ୍ୟବସ୍ଥା ବେଶ୍ ଖୁସି ଲାଗେ । ବିକୃତ ବେଶ, ବିକୃତ ବ୍ୟବହାର ଦେଖାଇ ଏ ଦଳଗୁଡ଼ିକ ଦାଣ୍ଡରେ ଏ ମୁଣ୍ଡ, ସେ ମୁଣ୍ଡ ବୁଲି ଯାଉଥାନ୍ତି । ହସ, ଖାଲି ହସ ବୃଷ୍ଟି ମଧ୍ୟରେ ତାଙ୍କ ସମ୍ବର୍ଦ୍ଧନା ହୁଏ । ବାଘନାଚ ହୁଏ, ଆହୁରି ବି ହୁଏ ଘୋଡ଼ା ନାଚ । କେତେ ଦ୍ରୁବାଣ୍ଡ, ବିଚିତ୍ର ବାଜାରେ । ଗୋଟାଏ ଗର୍ଭ ଦଣ୍ଡା ଭଳି ଭିତ୍ତି ଉପରେ ପ୍ଲାଇଉଡ୍ ତିଆରି ପ୍ରଜା ପଲ୍ଲବ ପ୍ରେମ ଭାବେ ରଙ୍ଗା ହୁଏ । ତାମଡ଼ା, ସୁନା ପିତଳ, ଜରି ପ୍ରଭୃତି ଦ୍ୱାରା ନାନା ପତ୍ର ଫୁଲ ଡିଜାଇନ୍‌ରେ ଚକ୍‌ଚକିଆ ପ୍ରଭାକୁ ପିଠି କରି ରାମାୟଣର ଚରିତ୍ର ରାମ, ଲକ୍ଷ୍ମଣ, ହନୁମାନ, ତାଡ଼କା, ସୁବାହୁ, ବାଲି, ସୁଗ୍ରୀ ବାହାରନ୍ତି । ତାଙ୍କୁ କାନ୍ଧେଇ ନିଅନ୍ତି ୮୧୦ ଜଣ ବଳୁଆ ଲୋକ । ଏ ପ୍ରଭା ଉପରେ ଆରୋହୀ ଥାଇ ଯୁଦ୍ଧ ବି ହୁଏ । ଚାପରେ ଥାଏ ଅପେରା । ରାତିଯାକ ବାଜେ କର୍ଣ୍ଣେଟ୍, କ୍ଲାରିଓନେଟ୍, ଢୋଲକ, ଦୁଦିଡବଲା । ଲାଉଡ୍‌ସ୍ପିକରର ଘୋ ଘୋରେ କାନ ଅତଡ଼ା ପଡ଼ିଯାଏ । ମାଳ ମାଳ ଆଲୁଅର ଫୁଆରା ସଜା ହୋଇଥାଏ ଫଟୋ ଷ୍ଟୁଡିଓରେ । ସେଠି ଦଶ ମିନିଟ୍‌ରେ ଫଟୋ କପି ମିଳେ । ସେମାନଙ୍କୁ ଲୋକ ଭିଡ଼ରେ ନିଶ୍ୱାସ ମାରିବାକୁ ଚର ନଥାଏ । ମୀନା ବଜାର ବସିଛି । ଭଳି ଭଲିକା ମେଜିକ୍ । ଆସିଥିଲା ବେବି ଟ୍ରେନ୍ । ଚଢ଼େ ଛୁଆ ଧାରଣାରେ ବଙ୍କ ପରି ଘୁରି ଯାଉଥାଏ । ଦଶ ପନ୍ଦର ଥର ବୁଲିଗଲେ ଟିକଟ୍ ପଇସା ସରିଗଲା । ଓହ୍ଲେଇ ପଡ଼; ଅନ୍ୟ ଲୋକେ ଯିବେ । ସେହିଭଳି ଆକାଶଚୁମ୍ବୀ ଢେଙ୍ଗୀ ଚକ — ରେଡେଣ୍ଡ ବୋଲି । କମ୍ପାର୍ଟମେଣ୍ଟରେ ବସିଯାଅ । ଉପର ତଳ ସାଇଁ ସାଇଁ ଗ୍ରଲିଲା । ଏ ବର୍ଷ ଆସିଥିଲା ଆହୁରି ଏକ ନୂଆ କଥା, ଏରୋପ୍ଲେନ୍ । ପାଞ୍ଚ ବର୍ଷରରେ ଏଡେନ୍, ଆଲେକ୍‌ଜାଣ୍ଡ୍ରିଆ, ପ୍ୟାରିସ୍, ଲଣ୍ଡନ୍, ନ୍ୟୁୟର୍କ । ପିଲାଛୁଆ ପରି ଗାଁ ଲୋକେ ଅତି ଆନନ୍ଦରେ ରାତିସାରା ଯାଉଥାନ୍ତି ଦେଶ ବିଦେଶ । ପ୍ରଭାରେ ବାହାରନ୍ତି ରାମାୟଣର ଚରିତ୍ର ବ୍ୟତୀତ ଦୁର୍ଗା, କାଳୀ, ମଙ୍ଗଳା । ଖଣ୍ଡାଖଣ୍ଡି ଓ ଆଲୋକ ଉତ୍ସବରେ ଲୋକେ ଦେଖନ୍ତି ଦଶଭୁଜା ଦୁର୍ଗା, ଚତୁର୍ଭୁଜା ସରସ୍ୱତୀ । ବିସ୍ମୟର ସୀମା ରହେ ନାହିଁ ।

ଏକ ବାର୍ଷିକ ଉତ୍ସବ; ଭକ୍ତି ପ୍ରଣୋଦିତ ଲୋକ ନାଟ୍ୟ ସହିତ ସମ୍ପ୍ରସାରିତ କଳା ସଙ୍ଗୀତ କାର୍ଯ୍ୟକ୍ରମ ମଧ୍ୟରେ ଆନନ୍ଦମୟ ଭକ୍ତି ବିଳାସ ।

ରାମଲୀଳା ଯାତ୍ରାର କେତୋଟି ଦିନର ଆୟୋଜନ ବିଶେଷ ପ୍ରଣିଧାନ୍ୟଯୋଗ୍ୟ । ତାଡ଼କା ବଧ ଦିନ କୃତ୍ରିମ ଜଙ୍ଗଲ ଖଣ୍ଡି ପରିବେଶ ସୃଷ୍ଟି କରାଯାଏ । ଭୟଙ୍କର ରୂପଧାରୀ ତାଡ଼କା–ସୁବାହୁ ମାରିଚଙ୍କ ସହ ବିଶ୍ୱାମିତ୍ରଙ୍କ ଇଙ୍ଗିତରେ ଯୁଦ୍ଧ ହୁଏ ରାମଙ୍କର । ତା'ପରେ ଏକ କୃତ୍ରିମ ରାଜସଭାରେ ହୁଏ ଧନୁର୍ଭଙ୍ଗ । ପରବର୍ତ୍ତୀ ଦିନ ରାମବିଭା । ଏ ଦିନର ଲୋକ ଗହଳି ବେଶୀ; ବାସ୍ତବରେ ଏହି ଦିନଠାରୁ ଜମି ଉଠେ ଯାତ୍ରା । ଗାଁର ଗୋଟାଏ ପଟରେ କଳ୍ପିତ ହୁଏ ଅଯୋଧ୍ୟା । ମହାରାଜ ଦଶରଥ ଗୁରୁ, ପୁରୋହିତ ଓ ଭରତ ଶତ୍ରୁଘ୍ନଙ୍କ ସହ ବର ଯାତ୍ରା କରନ୍ତି । ଏକ ବାସ୍ତବ ବର ଯାତ୍ରା । ସୁସଜ୍ଜିତ ତିନି ଗ୍ରରୋଟି ପ୍ରଭାରେ ରାଜକୀୟ ଆଡ଼ମ୍ବର ବ୍ୟବସ୍ଥା, ଆଲୋକ, ଫୁଲ, ଫାନୁସ୍, ବାଜା, ନାଚ । ବାଣ ବି ଫୁଟେ, ଏ ବର୍ଷ ଆସିଥିଲା ଅଢ଼େଇ ହଜାର ଟଙ୍କାର ସମ୍ବଲପୁରୀ ବାଣ । ଶଙ୍ଖ ହୁଳହୁଳି ଘଣ୍ଟ ଘଣ୍ଟା ମଧ୍ୟରେ ବର ପ୍ରବେଶ କରନ୍ତି ମଣ୍ଡପରେ । ସେଠି ଆୟୋଜିତ ହୋଇଥାଏ ମିଥିଳାର ବେଦୀ । କଦଳୀ ପଣ, ପୂର୍ଣ୍ଣ କୁମ୍ଭ, ଦୀପ, ଲତା, ଫୁଲ କାହିଁରେ ଊଣା ନାହିଁ । ବୈଦିକ ରୀତିରେ ହୁଏ ବାହାଘର । ତାହାପରେ ବେଶ୍ ଭଲ ଧରଣର ଭୋଜି ବି ହୁଏ । ଜନକ ରାଜାଙ୍କ ଝିଅଙ୍କର ବାହାଘର । ଏକା ଥରକେ ଗ୍ରରି ଗ୍ରରିଟା ଝିଅର ବାହାଘର ଭୋଜି ତ ଚୌଗୁଣ ହେବା କଥା । ଏ ଦିନର ଖାକରା ପିଠା ଖାଇଥିବା ଲୋକେ ତା ମିଠା ଜାଣନ୍ତି । ସୀତା ଗ୍ରେରି ଦିନର ଯାତ୍ରା ଲୀଳା ମଧ୍ୟ ସେହିପରି ଜନପ୍ରିୟ । ରାବଣର ରାଜ ସଭାରେ ଶୂର୍ପଣଖାର ପ୍ରବେଶ, ମୃଗବେଶୀ ମଣିଷର ମାରୀଚ ଭୂମିକା, ରାବଣର କାଳୀ ପୂଜା, ରାବଣର ଜ୍ୟୋତି ରୂପ ଧାରଣ ଓ ସୀତା ହରଣ ପରେ ଜଟାୟୁ ବଧ ଏ ଦିନର ବିଶେଷ ଆକର୍ଷଣ । ଶେଷ ଦିନ ରାବଣ ବଧ ପରେ ପ୍ରଭାତ ସୂର୍ଯ୍ୟର ବନ୍ଦନା ସହିତ ହୁଏ ରାମାଭିଷେକ — ଲୀଳାର ଯବନିକା ପଡ଼େ ।

ଯାତ୍ରା, ଲୀଳା ଏକ ବାର୍ଷିକ ଧାରାବାହୀ ଉତ୍ସବ, କିନ୍ତୁ ଏହାର ଗତାନୁଗତିକ ରୂପ ନାହିଁ । ଲୀଳାର ପରମ୍ପରା ଅବଶ୍ୟ ସ୍ଥାୟୀ, କିନ୍ତୁ

ଆୟୋଜନ, ସାତପଦା, ନୂଆ ପତ୍ରିକାତାର ନିତ୍ୟ ନୂତନ ପ୍ରକାଶ ମଧ୍ୟରେ ପରିକଳ୍ପନା କମିଟି ପ୍ରାୟ ଅଧଲକ୍ଷେ ଟଙ୍କା ଖର୍ଚ୍ଚ କରି ଯାହା କରନ୍ତି ତାହାର ପ୍ରଶଂସା ଭାବ ନାହିଁ । ଶେଷରେ ଜନସମାଗମ; ଲୋକଙ୍କ ସହ ପରିଚୟ – ପରିଚୟର ନବୀକରଣ, ଆଦାନ ପ୍ରଦାନରେ ମଣିଷର ସାମାଜିକ ମନ ତ କେବେ କ୍ଳାନ୍ତ ; ହୋଇନାହିଁ । ତେଣୁ ବଡ଼ଗାଁର ଯାତ୍ରା ପାଇଁ ନିତ୍ୟ ନୂତନ । ଯେ ଏ ବର୍ଷ ନ ଦେଖିଛନ୍ତି, ଆର ବର୍ଷ ଆସନ୍ତୁ । ବିଫଳ ହୋଇ ଲେଉଟିବେ ନାହିଁ; ସ୍ମୃତି ପାଇଁ ଯେଉଁ ନୂତନ ସମ୍ପଦ ପାଇବେ ତା' ମଧ୍ୟରେ ଥାଉଛୁ ବିହ୍ବା ଓଡ଼ିଶାର ଛାୟା ସହିତ ବଡ଼ଗାଁର ମାଟ୍ଟା ମିଶି ତାହା ହେବ ଏକ ଅଭିନବ ସଂଯୋଗ – ସବୁଦିନ ପାଇଁ ଅବିସ୍ମରଣୀୟ ।

ଗୋପାଳମାଳ,
ସମ୍ବଲପୁର-୪ ।



ମେଳା ମଉଛବ ମାଧ୍ୟମରେ
ଶ୍ରୀଶ୍ରୀ ରାମଙ୍କ ବିବାହ ଶୋଭାଯାତ୍ରାର ଦୃଶ୍ୟ



• ଆଜିର ବିଜ୍ଞାନ

# ଦୈନନ୍ଦିନ ଖାଦ୍ୟରେ ଭିଟାମିନ୍‌ର ସ୍ଥାନ

*ଶ୍ରୀମତୀ ଶାଶ୍ୱତୀ ପରିଛା*

ମନୁଷ୍ୟର ଶାରୀରିକ ଓ ମାନସିକ ଅଭିବୃଦ୍ଧି ପାଇଁ ଭିଟାମିନ୍‌ର ଆବଶ୍ୟକତା ରହିଅଛି । ଭିଟାମିନ୍ ସାଧାରଣତଃ ଛଅ ପ୍ରକାରର, ଯଥା – ଏ, ବି, ସି, ଡି, ଇ ଓ କେ । ଶରୀରରେ ବିଭିନ୍ନ ପ୍ରକାର ଭିଟାମିନ୍‌ର କାର୍ଯ୍ୟ ଅଲଗା ଅଲଗା ହୋଇଥାଏ । ଗୋଟିଏ ଭିଟାମିନ୍‌ର ଅଭାବ ହେଲେ ଶରୀର ଉପରେ କୁପ୍ରଭାବ ପଡ଼ିଥାଏ । କେଉଁ ପ୍ରକାରର ଖାଦ୍ୟ ଖାଇଲେ କେଉଁ ଭିଟାମିନ୍ ମିଳିପାରିବ ଓ ସେହି ଭିଟାମିନ୍‌ର ଅଭାବ ହେଲେ ଶରୀରର କି କ୍ଷତି ହେବ ସେ ସମ୍ପର୍କରେ ସମସ୍ତେ ଜାଣିବା ଆବଶ୍ୟକ ।

କୌଣସି ଗୋଟିଏ ପ୍ରକାର ଖାଦ୍ୟରୁ ସବୁ ପ୍ରକାରର ଭିଟାମିନ୍ ମିଳିପାରିବ ନାହିଁ । ତେଣୁ ଛଅ ପ୍ରକାରର ଭିଟାମିନ୍ ପାଇବା ପାଇଁ ଆମକୁ ବିଭିନ୍ନ ପ୍ରକାରର ଖାଦ୍ୟ ଖାଇବାକୁ ପଡ଼ିବ । ଏହି ଛଅ ପ୍ରକାର ଭିଟାମିନ୍ ମଧ୍ୟରୁ ଏ, ଡି, ଇ ଓ କେ ତୈଳରେ ଦ୍ରବୀଭୂତ ହୋଇଥାଏ । ତେଣୁ ଏଥିରୁ ଅଧିକ ପରିମାଣରେ ଶରୀରରେ ଜମା ହୋଇ ରହିଲେ ଏହାର କୁପ୍ରଭାବ ଶରୀରରେ ଦେଖା ଦେଇଥାଏ । ବି ଓ ସି ଭିଟାମିନ୍ ପାଣିରେ ଦ୍ରବୀଭୂତ ହେଉଥିବାରୁ ଏହା ଶରୀରର ଆବଶ୍ୟକତା ଅନୁଯାୟୀ ବ୍ୟବହୃତ ହୋଇଥାଏ ।

ତେଣୁ ନିମ୍ନରେ ବିଭିନ୍ନ ପ୍ରକାର ଭିଟାମିନ୍‌ର ଆବଶ୍ୟକତା, ଏହାର ଅଭାବଜନିତ ଲକ୍ଷଣ ଓ ଏଥିପାଇଁ ଉପଯୁକ୍ତ ଖାଦ୍ୟ ସମ୍ପର୍କରେ କେତେକ ସୂଚନା ଦିଆଯାଉଅଛି :

## ଭିଟାମିନ୍ "ଏ"ର ଆବଶ୍ୟକତା :

ଏହା ଶରୀର ଗଠନ ଓ ଅଭିବୃଦ୍ଧିରେ ସାହାଯ୍ୟ କରିଥାଏ । ଚର୍ମକୁ ଚିକ୍କଣ ଓ ସୁସ୍ଥ ରଖେ, ଭଲ ଦୃଷ୍ଟି ଶକ୍ତି ତଥା ଆଖି ରୋଗ ନହେବା ପାଇଁ ଏହା ଦରକାର । ଭିଟାମିନ୍ "ଏ" ଶରୀରରେ ରୋଗ ପ୍ରତିରୋଧକ ଶକ୍ତି ବଢ଼ାଇ ଥାଏ । କ୍ଷତ ବା ଘାଣ୍ଟିଆ ଶୁଖାଇବାରେ ମଧ୍ୟ ଏହା ସାହାଯ୍ୟ କରିଥାଏ । ଭିଟାମିନ୍ "ଏ"ର ଅଭାବରେ ଶରୀରର ଅଭିବୃଦ୍ଧି ଭଲ ହୁଏ ନାହିଁ । ରାତିରେ ଅଳ୍ପ ଆଲୁଅରେ ଆଖିକୁ ଭଲ ଦେଖାଯାଏ ନାହିଁ ଓ ଦିନରେ ଉଜ୍ଜ୍ୱଳ ଆଲୋକରେ ଆଖିକୁ ଭଲ ଦେଖାଯାଏ ନାହିଁ । ଚର୍ମ ରୋଗ ମଧ୍ୟ ଦେଖାଦିଏ । ଏହାଛଡ଼ା ଆଉ କେତେକ ଆଖି ରୋଗ ଦେଖାଯାଏ ଓ ଆଖି ଚିକିତ୍ସା ନକଲେ ରୋଗୀ ଅନ୍ଧ ହୋଇଯାଏ ।

## ଭିଟାମିନ୍ "ଏ" ପାଇବା ପାଇଁ ଖାଦ୍ୟ :

ମାଛ କଲିଜା, Shark liver oil, କଡ୍ ଲିଭର୍ ତେଲ ଓ କଳିଜା (ଛେଳି, ମେଣ୍ଢା) ଇତ୍ୟାଦିରୁ ପ୍ରଚୁର ପରିମାଣରେ ଭିଟାମିନ୍ "ଏ" ମିଳିଥାଏ । ଏହାଛଡ଼ା ଲହୁଣୀ, ଘିଅ, ଦୁଧ, ଅଣ୍ଡା କେଶର, ଓ ସବୁଜ ଶାଗ ଯଥା – ସଜନା, ମୂଳା, ଧନିଆ ପତ୍ର, ଲେଉଟିଆ ଓ ପାଚିଲା ଅମ୍ବ ଓ ପାଚିଲା ଅମୃତଭଣ୍ଡା, ଗାଜର ତଥା ବନ୍ଧାକୋବିରୁ ମଧ୍ୟ ଭିଟାମିନ୍ "ଏ" ମିଳିଥାଏ ।

## ଭିଟାମିନ୍ "ଡି"ର ଆବଶ୍ୟକତା :

ଏହା ଶରୀର ଗଠନ ଓ ଅଭିବୃଦ୍ଧିରେ ସାହାଯ୍ୟ କରିଥାଏ । ଦାନ୍ତ ଓ ଶରୀରର ହାଡ଼କୁ ଶକ୍ତ ଓ ମଜଭୁତ୍ କରେ, ଶରୀରରେ ରୋଗ ବା infection ନହେବାରେ ସାହାଯ୍ୟ କରେ । ଭିଟାମିନ୍ "ଡି"ର ଅଭାବରେ ଶରୀରର ଅଭିବୃଦ୍ଧି କମିଯାଏ । ଶରୀରର ଦାନ୍ତ ଓ ହାଡ଼ ଦୁର୍ବଳ ହୋଇଯାଇଥାଏ । ଏହି ଭିଟାମିନ୍ "ଡି"ର ଅଭାବରେ ପିଲାମାନଙ୍କୁ "ରିକେଟସ୍" ରୋଗ ହୋଇଥାଏ । ଅତ୍ୟଧିକ ଅଭାବ ହେଲେ ଛାତି ହାଡ ଓ ଗୋଡ଼ର ହାଡ଼ ନରମ ହୋଇ ବଙ୍କା ହୋଇଯାଇଥାଏ । ବୟସ୍କମାନଙ୍କୁ "ଅଷ୍ଟିଓମାଲାସିଆ" ରୋଗ ହୋଇଥାଏ । ଏହି ରୋଗରେ ଗୋଡ଼ ଓ ଅଣ୍ଟା ହାଡଗୁଡ଼ିକ ଶରୀରର ଭାର ଯୋଗୁଁ ଧୀରେ ଧୀରେ ବଙ୍କା ହୋଇଯାଏ ।

## ଭିଟାମିନ୍ "ଡି" ପାଇବା ପାଇଁ ଖାଦ୍ୟ :

ଏହି ଭିଟାମିନ୍ "ଡି" କେବଳ ଆମିଷ ଜାତୀୟ ଖାଦ୍ୟ ପଦାର୍ଥରୁ ହିଁ ମିଳିଥାଏ । ମାଛ କଳିଜା ତେଲ ବା Fish liver oil, କଡ୍ ଲିଭର୍ ତେଲ, Shark liver oil ଇତ୍ୟାଦିରୁ ପ୍ରଚୁର ପରିମାଣରେ ମିଳିଥାଏ । ଏହାଛଡ଼ା ଅଳ୍ପ କିଛି ପରିମାଣରେ ଲହୁଣୀ, ଘିଅ, ମାଛ, ଅଣ୍ଡା କେଶର ଓ ସଢ ଦୁଧରୁ ମିଳିଥାଏ ।

କିନ୍ତୁ ପ୍ରାୟ ଖରାରେ କାମ କରୁଥିବା ଲୋକମାନଙ୍କର ଭିଟାମିନ୍ "ଡି" ଅଭାବ ହୋଇ ନଥାଏ । ପ୍ରତ୍ୟେକ ଦିନ ସକାଳେ ଉଜ୍ଜ୍ୱଳ ଖରାରେ

ମିଶି ପକ୍ଷା ପିଆ ହେଲେ ଆମ ଶରୀରର ଚର୍ମରେ ଯେଉଁ ତେଲ ଜାତୀୟ ପଦାର୍ଥ ଅଛି ତାହା ଆପେ ଆପେ ଭିଟାମିନ୍ "ଡି"ରେ ପରିଣତ ହୋଇଯାଏ ।

## ଭିଟାମିନ୍ "ଇ"ର ଆବଶ୍ୟକତା :

ଏହା ଜନନ ପ୍ରକ୍ରିୟା (Reproduction)ରେ ସାହାଯ୍ୟ କରେ । ସ୍ତ୍ରୀମାନଙ୍କର କ୍ରମାଗତ ଗର୍ଭପାତ ବା Abortion ନହେବାରେ ସାହାଯ୍ୟ କରେ । ଏହାର ଅଭାବରେ କ୍ରମାଗତ ଗର୍ଭନଷ୍ଟ ହୋଇଥାଏ । ସ୍ତ୍ରୀ ଓ ପୁରୁଷମାନଙ୍କର ପିଲା ହେବାର କ୍ଷମତା ହ୍ରାସ ପାଇଥାଏ ।

## ଭିଟାମିନ୍ "ଇ" ପାଇବା ପାଇଁ ଖାଦ୍ୟ :

Wheat germ oil ଓ Corn germ oilରୁ ପ୍ରଚୁର ପରିମାଣରେ ଭିଟାମିନ୍ "ଇ" ମିଳିଥାଏ । ତାଛଡ଼ା ସୂର୍ଯ୍ୟମୁଖୀ ତେଲ, ବାଦାମ ତେଲ, ସୋୟାବିନ୍ ଲହୁଣି, କପା ମଞ୍ଜି ତେଲ, ଦୁଧ ଇତ୍ୟାଦିରୁ ମଧ୍ୟ ଭିଟାମିନ୍ "ଇ" ମିଳିଥାଏ । ଯେହେତୁ ଆମେ ସମସ୍ତେ ପ୍ରତିଦିନ କିଛି ନା କିଛି ତେଲ ଜାତୀୟ ଖାଦ୍ୟ ଖାଇଥାଉ ତେଣୁ ଏହାର ଅଭାବ ଆମ ଶରୀରରେ କମ୍ ଦେଖାଯାଇଥାଏ ।

## ଭିଟାମିନ୍ "କେ"ର ଆବଶ୍ୟକତା :

ଏହା ରକ୍ତ ଜମାଟ ବାନ୍ଧିବାରେ ସାହାଯ୍ୟ କରିଥାଏ । ଆମମାନଙ୍କ ରକ୍ତରେ Prothrombin ନାମକ ଏକ ପ୍ରୋଟିନ୍ ଥାଏ । ଭିଟାମିନ୍ "କେ" ଏହି ପ୍ରୋଥୋସିନ୍ ତିଆରିକୁ ବଢ଼େଇ ଦିଏ । ଫଳରେ ପ୍ରୋଥୋସିନ୍ ରକ୍ତକୁ ଜମାଟ ବାନ୍ଧିବାରେ ସାହାଯ୍ୟ କରେ । ଏହାର ଅଭାବରେ ଆମର ରକ୍ତ ଜମାଟ ବାନ୍ଧିପାରେ ନାହିଁ । ରକ୍ତ ଜମାଟ ନ ବାନ୍ଧିଲେ କ୍ଷତିଆରୁ ରକ୍ତ ସ୍ରାବ ବନ୍ଦ ହୁଏ ନାହିଁ । ଫଳରେ ରୋଗୀ ସମୟ ସମୟରେ ମୃତ୍ୟୁ ମୁଖରେ ପଡ଼ିଥାଏ ।

## ଭିଟାମିନ୍ "କେ" ପାଇବା ପାଇଁ ଖାଦ୍ୟ :

ସଜନା ଶାଗ, ପାଳଙ୍ଗ ଶାଗ, ବନ୍ଧାକୋବି, ଫୁଲକୋବି, ଗାଜର, ଟମାଟୋ, ସୋୟାବିନ୍, ଆଳୁ, କଲିଜା, ଭେଜିଟେବୁଲ୍ ତେଲ ଓ ଅଣ୍ଡା କେଶର, କଲିଜା ଇତ୍ୟାଦିରୁ ଭିଟାମିନ୍ "କେ" ମିଳିଥାଏ ।

ଆମର ଅନ୍ତନଳୀରେ ବ୍ୟାକ୍ଟେରିଆ ଦ୍ୱାରା ଭିଟାମିନ୍ "କେ" ତିଆରି ହୋଇଥାଏ । ତେଣୁ ସାଧାରଣତଃ ଭିଟାମିନ୍ "କେ"ର ଅଭାବ ଆମ ଶରୀରରେ ଖୁବ୍ କମ୍ ହୋଇଥାଏ ।

## ଭିଟାମିନ୍ "ବି" :

ଭିଟାମିନ୍ "ବି"କୁ ଅନେକ ଭାଗରେ ବିଭକ୍ତ କରାଯାଇଥାଏ । ଏଠାରେ ମୁଖ୍ୟତଃ ଚାରି ପ୍ରକାରର ଭିଟାମିନ୍ "ବି" ସମ୍ପର୍କରେ ଆଲୋଚନା କରାଯାଉଛି । ଭିଟାମିନ୍ "ବି" ପାଣିରେ ଦ୍ରବୀଭୂତ ହୋଇଯାଇଥାଏ । ତେଣୁ ଭିଟାମିନ୍ "ବି" ଥିବା ଖାଦ୍ୟ ପଦାର୍ଥକୁ ରାନ୍ଧିଲା ବେଳେ ସୋଡ଼ାର ଅଳ୍ପ ପାଣି ବ୍ୟବହାର କରି ଓ ଅଳ୍ପ ଜାଳରେ ସିଝେଇ ରାନ୍ଧିଲେ ଭିଟାମିନ୍ "ବି" ନଷ୍ଟ ହୋଇ ଯାଇନଥାଏ। ପରିବା ସିଝା ପାଣିକୁ ଫୋପାଡ଼ି ନଦେଇ ଗୁପ୍ ବା କାଞ୍ଜିରେ ବା ତରକାରୀରେ ବ୍ୟବହାର କଲେ ଭଲ । ଖାଇବା ସୋଡ଼ା ପକାଇ ରାନ୍ଧିଲେ ଖାଦ୍ୟ ପଦାର୍ଥକୁ ଭିଟାମିନ୍ "ବି" ନଷ୍ଟ ହୋଇଯାଏ । ଯେହେତୁ ଭିଟାମିନ୍ "ବି" ଶରୀରରେ ଜମାହୋଇ ରହିପାରେ ନାହିଁ, ତେଣୁ ଆମକୁ ପ୍ରତ୍ୟହ ଭିଟାମିନ୍ "ବି" କିଛି ପରିମାଣରେ ଖାଇବାକୁ ପଡ଼େ ।

## ଭିଟାମିନ୍ "ବି"$_1$ ବା ଥାୟାମିନ୍‌ର ଆବଶ୍ୟକତା :

ବଢ଼ନ୍ତା ପିଲା ଓ ବୟସ୍କଙ୍କ ଶାରୀରିକ ଅଭିବୃଦ୍ଧିରେ ଏହା ସାହାଯ୍ୟ କରିଥାଏ । ଏହି ଭିଟାମିନ୍ "ବି"$_1$ର ଅଭାବରେ ଶାରୀରିକ ଅଭିବୃଦ୍ଧି ହ୍ରାସ ପାଇଥାଏ । କାମ କରିବାକୁ ଇଚ୍ଛା ହୁଏ ନାହିଁ । ଭୋକ ହୁଏ ନାହିଁ । କ୍ଳାନ୍ତି ଲାଗେ । କୋଷ୍ଠକାଠିନ୍ୟ ହୁଏ । ଶରୀରର ସ୍ନାୟୁଗୁଡ଼ିକ ଫୁଲିଯାଏ ଓ ଚିଡ଼ିଚିଡ଼ି ଲାଗେ । ବହୁତ ଦିନ ଧରି ମିଲ୍ ଚାଉଳ ଖାଇଲେ ଏହି ଭିଟାମିନ୍‌ର ଅଭାବ ହୋଇଯାଏ । ଏହାର ଅଭାବରେ "ବେରିବେରି" ରୋଗ ହୁଏ । ଏହାଦ୍ୱାରା ଶରୀରରେ ପାଣି ଜମିଯାଏ । ଗୋଡ଼ ଓ ହାତର ଆଂଶିକ ବା ସମ୍ପୂର୍ଣ୍ଣ ପକ୍ଷାଘାତ ରୋଗ ହୋଇଥାଏ ।

## ଭିଟାମିନ୍ "ବି"$_1$ ପାଇଁ ଖାଦ୍ୟ :

ଉଷୁନା ଢିଙ୍କିକୁଟା ଚାଉଳ, ଉଷୁନା ମିଲ୍ ଚାଉଳ, ଚକିପେଶା ଅଟା, ଡାଲି ଜାତୀୟ ଖାଦ୍ୟ ଯଥା – ହରଡ଼, ମୁଗ, ବୁଟ, ମଟର, ଚିନା ବାଦାମ, ସୋୟାବିନ୍, ଶାଗ, ଅଣ୍ଡା କେଶର ଇତ୍ୟାଦିରୁ ଭିଟାମିନ୍ ବି$_1$ ମିଳିଥାଏ । ସୁଖିଲା ଇଷ୍ଟ ଓ Wheat germରୁ ପ୍ରଚୁର ପରିମାଣରେ ଥାୟାମିନ୍ ମିଳିଥାଏ ।

## ଭିଟାମିନ୍ "ବି"$_2$ ବା ରିବୋଫ୍ଲାବିନ୍‌ର ଆବଶ୍ୟକତା :

ଶିଶୁ ଓ ପିଲାମାନଙ୍କ ପାଇଁ ଏହା ବହୁତ ଦରକାର । ଏହା ହଜମଶକ୍ତି ଓ ଦୃଷ୍ଟିଶକ୍ତିକୁ ବଢ଼ାଏ । ରିବୋଫ୍ଲାବିନ୍ ଅଭାବରେ ଦୃଷ୍ଟିଶକ୍ତି କମିଯାଏ । ଆଖିକୁ ଜାଲି ଜାଲି ଦିଶେ, ଆଖି କୁନ୍ଦେଇ ହୁଏ । ଆଖିପତା ଫୁଲିଯାଏ ଓ ପୋଡ଼େ । ମୁହଁ ଫୁଲିଯାଏ । ଦେହର ଚର୍ମ ଖଦଖଦଡ଼ିଆ ହୋଇଯାଏ । ଓଠ ଫାଟେ ଓ ଫୁଲିଯାଏ, ଜିଭ ବଢ଼ିଯାଏ । ଦେହର ଏହି ଅବସ୍ଥାକୁ "ଆଙ୍ଗୁଲାର୍ ଷ୍ଟୋମାଟାଇଟିସ୍" କୁହାଯାଏ ।

## ଭିଟାମିନ୍ "ବି"$_2$ ରିବୋଫ୍ଲାବିନ୍ ପାଇବା ପାଇଁ ଖାଦ୍ୟ :

କଲିଜା, ଦୁଧ ଓ ଶୁଖିଲା ଇଷ୍ଟରୁ ପ୍ରଚୁର ପରିମାଣରେ ଭିଟାମିନ୍ "ବି"$_2$ ବା ରିବୋଫ୍ଲାବିନ୍ ମିଳିଥାଏ । ଏହାଛଡ଼ା ଅଣ୍ଡା, ମାଂସ, ମାଛ, ଉଷୁନା ଚାଉଳ, ଚକି ପେଷା ଅଟା, ବୁଟ, ମଟର, ମୁଗ ଡାଲି, ବିରି ଡାଲି, ଚିନାବାଦାମ, ଶାଗ ଓ ବନ୍ଧାକୋବି ଇତ୍ୟାଦିରୁ ମଧ୍ୟ ଭିଟାମିନ୍ "ବି"$_2$ ମିଳିଥାଏ ।

## ନିଆସିନ୍ ବା ନିକୋଟିନ୍ ଏସିଡ୍ :

ଏହା ମଧ୍ୟ ଏକ ପ୍ରକାରର ଭିଟାମିନ୍ "ବି" । ଏହା ମଧ୍ୟ ପାଣିରେ ଦ୍ରବୀଭୂତ ହୋଇଥାଏ । ଶ୍ୱେତସାର ଜାତୀୟ ଖାଦ୍ୟରୁ ଶକ୍ତି ସଂଗ୍ରହ କରିବାରେ ଏହା ସାହାଯ୍ୟ କରିଥାଏ । ଏହାର ଅଭାବରେ "ପେଲାଗ୍ରା" ନାମକ ରୋଗ ହୋଇଥାଏ । ଏହି ରୋଗ ଦ୍ୱାରା ଚର୍ମରୋଗ ହୋଇଥାଏ । ନାଳ ରକ୍ତ ଝାଡ଼ା ହୋଇଥାଏ । ଏହି ଚର୍ମ ରୋଗ ପ୍ରଥମେ ନାଲି ନାଲି ହୋଇ ଦେହରେ ଦାଗ ରୂପେ ଦେଖାଯାଏ । ପାଟି ଭିତରେ ଘା ହୋଇଯାଏ, ଜିଭ ଲାଲ୍ ଦେଖାଯାଏ, ବଦହଜମି ହୁଏ, ପାଟିରୁ ମଳଦ୍ୱାର ପର୍ଯ୍ୟନ୍ତ ସମୁଦାୟ ଖାଦ୍ୟ ନଳୀରେ ଘା ହୋଇଯାଏ ।

ପେଲାଗ୍ରା ରୋଗ ଦ୍ୱାରା ସମସ୍ତ ସମସ୍ତରେ ମାନସିକ ବିକୃତି ମଧ୍ୟ ଦେଖାଯାଏ ।

## ନିଆସିନ୍ ପାଇବା ପାଇଁ ଖାଦ୍ୟ :

ଚିନାବାଦାମ ସବୁଜ ମଟର, ଶୁଖିଲା ଇଷ୍ଟ ଓ କଲିଜା ଇତ୍ୟାଦିରୁ ପ୍ରଚୁର ପରିମାଣରେ ନିଆସିନ୍ ମିଳିଥାଏ । ଏହାଛଡ଼ା ଚଣ୍ଡୁନା ଗୁଡ଼ଳ, ଚକି ପେଷା ଅଟା, ମାଛ, ମାଂସ, ମୁଗ, ବିରି ଡାଲି ଇତ୍ୟାଦିରୁ ନିଆସିନ୍ ମିଳିଥାଏ ।

## ଭିଟାମିନ୍ "ବି"୧୨ର ଆବଶ୍ୟକତା :

ଏହା ମଧ୍ୟ ପାଣିରେ ଦ୍ରବୀଭୂତ ହୋଇଥାଏ । ଏହା ଶରୀରରେ ରକ୍ତ ତିଆରି କରିବାରେ ସାହାଯ୍ୟ କରେ । ଶରୀରର ରକ୍ତରେ ଲୋହିତ ରକ୍ତ କଣିକାର Maturation ବା ବୃଦ୍ଧି କରିବାରେ ସାହାଯ୍ୟ କରେ । ଶ୍ୱେତ ରକ୍ତ କଣିକା ଓ Blood platelets ତିଆରି କରିବାରେ କାର୍ଯ୍ୟ କରେ । ତେଣୁ ଶରୀରରେ ରକ୍ତହୀନତା ବା Pernicious anaemia ଜନିତ ରୋଗକୁ ଦୂର କରେ । ଏହାର ଅଭାବ ହେଲେ ଶରୀରରେ ରକ୍ତହୀନତା ଦେଖାଦିଏ । ଜିଭରେ ଘା ଆଦି ହୁଏ, ଜିଭ ଫୁଲି ଯାଏ ।

## ଭିଟାମିନ୍ "ବି"୧୨ ପାଇବା ପାଇଁ ଖାଦ୍ୟ :

ଏହା ସାଧାରଣତଃ ଛେଳି, ମେଣ୍ଢା ଇତ୍ୟାଦିଙ୍କ କଲିଜାରେ ପ୍ରଚୁର ପରିମାଣରେ ଥାଏ । ଏହାଛଡ଼ା ଛେଳି ମାଂସ, ମାଛ ଓ ଅଣ୍ଡା ଇତ୍ୟାଦିରୁ ମଧ୍ୟ ଭିଟାମିନ୍ "ବି"୧୨ ମିଳିଥାଏ ।

## ଭିଟାମିନ୍ "ସି"ର ଆବଶ୍ୟକତା :

ଏହା ଭିଟାମିନ୍ "ବି" ଭଳି ପାଣିରେ ଦ୍ରବୀଭୂତ ହୋଇଥାଏ । ତେଣୁ ଭିଟାମିନ୍ ସବୁଜ ଶାଗ ବା ପନିପରିବାକୁ ଅଳ୍ପ ପାଣିରେ ଘୋଡ଼େଇ ସିଝାଇଲେ ଓ ବଳକା ସିଝା ପାଣିକୁ ଫିଙ୍ଗି ନଦେଇ ବ୍ୟବହାର କଲେ ଭଲ । କ୍ଷୀରରେ ଭିଟାମିନ୍ "ସି" ରହିଛି, କିନ୍ତୁ ସୂର୍ଯ୍ୟକିରଣ ପଡ଼ିଲେ ବା ବଲ୍‌ବ ଆଲୋକ ପଡ଼ିଲେ ଏହି ଭିଟାମିନ୍ "ସି" ନଷ୍ଟ ହୋଇଯାଏ ।

ଭିଟାମିନ୍ "ସି" ଦାନ୍ତ ମୂଳ ଓ ମାଡ଼ିକୁ ଶକ୍ତ କରେ । ଏହା ଘା ଶୁଖେଇବାରେ ସାହାଯ୍ୟ କରେ । ପ୍ରତ୍ୟେକ ଦିନ କିଛି ନା କିଛି ଭିଟାମିନ୍ "ସି" ଶରୀରକୁ ଗଲେ ସାଧାରଣ ଥଣ୍ଡା ଧରେ ନାହିଁ । ଭିଟାମିନ୍ "ସି" ଅଭାବରେ ସ୍କର୍ଭି Scurvy ରୋଗ ହୁଏ । ଏ ରୋଗ ହେଲେ ଦାନ୍ତ ମୂଳରୁ ରକ୍ତ ପଡ଼େ, ଭୋକ ହୁଏ ନାହିଁ, ମାଡ଼ି ଓ ଦାନ୍ତ ମୂଳ ଫୁଲିଯାଏ । ପରେ ଦାନ୍ତ ମୂଳ ଢ଼ିଲା ଓ ଦୁର୍ବଳ ହୋଇ ଶେଷରେ ଦାନ୍ତ ଝଡ଼ି ପଡ଼େ । ଦାନ୍ତ ମୂଳରୁ ଅନେକ ରକ୍ତ ଗଲେ ରକ୍ତ ହୀନତା ଦେଖାଯାଏ । ଆମ୍ଭ ଶକ୍ତି ଦରକାର ହୁଏ ।

## ଭିଟାମିନ୍ "ସି" ପାଇବା ପାଇଁ ଖାଦ୍ୟ :

ଅଁଳା କୋଳି ଓ ପିଜୁଳିରୁ ସବୁଠାରୁ ବେଶୀ ପରିମାଣରେ ଭିଟାମିନ୍ "ସି" ମିଳିଥାଏ । ଲେମ୍ବୁ, କମଳା ରସ, ପାଚିଲା ଆମ୍ବ, ବଢୁଆ ଗଜା ମୁଗ, ବଢୁଆ ଗଜା ବିରି, ସପୁରି, ଟମାଟୋ, ଧନିଆ ପତ୍ର, ସଜନା ଶାଗ, ମୂଳା ଶାଗ ଆଦିରୁ ମଧ୍ୟ ଅନେକ ପରିମାଣରେ ଭିଟାମିନ୍ "ସି" ମିଳିଥାଏ ।

ତେଣୁ ଆମେ ଖାଦ୍ୟ ପ୍ରସ୍ତୁତ କଲାବେଳେ କେବଳ ଗୋଟିଏ ଦୁଇଟି ପରିବା ନେଇ ରାନ୍ଧିବା ଅପେକ୍ଷା ଅନେକ ପ୍ରକାରର ପରିବାରୁ ଖାଦ୍ୟ ପ୍ରସ୍ତୁତ କଲେ ସବୁଦିନ ଆମ ଶରୀରକୁ ବିଭିନ୍ନ ପ୍ରକାରର ଭିଟାମିନ୍ ଓ ଖଣିଜ ଲବଣ ମିଳିଥାଏ ।

ବିଶେଷଜ୍ଞ,
ସମ୍ପ୍ରସାରଣ ଶିକ୍ଷା ବିଭାଗ,
ଓ: ୟୁ: ଏ: ଟି:,
ଭୁବନେଶ୍ୱର ।

ଗଣତନ୍ତ୍ର ଏକ ଶାସନ ପ୍ରଣାଳୀ, ଯାହାଦ୍ୱାରା ଅର୍ଥନୈତିକ ଓ ସାମାଜିକ ଜୀବନରେ ବିନା ରକ୍ତପାତ ସହିତ ଏକ ବୈପ୍ଳବିକ ପରିବର୍ତ୍ତନ ଅଣାଯାଇ ପାରେ ।

—ଡକ୍ଟର ଆମ୍ବେଦକର

**ସ୍ୱାସ୍ଥ୍ୟ ଓ ଚିକିତ୍ସା**

# ଯକ୍ଷ୍ମା ରୋଗ

*ଡାକ୍ତର ଦେବଦତ୍ତ ମିଶ୍ର*

ଆଜିକୁ ଠିକ୍ ୧୦୫ ବର୍ଷ ତଳେ ଗୋଟିଏ ରୋଗ ସମ୍ବନ୍ଧରେ ସାରା ବିଶ୍ୱରେ କେହି ଧାରଣା କରିପାରି ନଥିଲେ । ରୋଗୀର ହାଡ଼ ମାଉଁସ ମିଳେଇ ଯାଏ, ସଦ୍ୟ ରକ୍ତ ବାହାରେ ପଡ଼େ, ଦେହ ଶେତା ପଡ଼ିଯାଏ । ଲୋକେ କହୁଥିଲେ "ଶ୍ୱେତ ପ୍ଳେଗ୍" । ସାରା ବିଶ୍ୱରେ ଦୁଇଟି ବିଶ୍ୱଯୁଦ୍ଧରେ ଯେତିକି ଲୋକ ମରିଛନ୍ତି, କେବଳ ଯକ୍ଷ୍ମା ରୋଗରେ ସବୁଠାରୁ ଅଧିକ ଲୋକ ମୃତ୍ୟୁ ମୁଖରେ ପଡ଼ିଛନ୍ତି । ଏହି ରୋଗକୁ ଅଦ୍ୟାବଧି "ମୃତ୍ୟୁର ସେନାପତି ବା CAPTAIN OF DEATH" ବୋଲି କୁହାଯାଏ । ଏହା ଏକ ଆନ୍ତର୍ଜାତୀୟ ତଥା ଜାତୀୟ ସମସ୍ୟା । କଲମ୍ବସ୍‌ଙ୍କର ଆମେରିକା ଆବିଷ୍କାର ପୂର୍ବରୁ ପେରୁଠାରେ ଶିଶୁ ଯକ୍ଷ୍ମାର ପ୍ରାଦୁର୍ଭାବ ସମ୍ବନ୍ଧରେ ସୂଚନା ମିଳେ । ପ୍ରକୃତରେ ଋକ୍‌ବେଦରେ ଏହି ରୋଗକୁ କ୍ଷୟ ରୋଗର ରାଜା ବା "ରାଜ ଯକ୍ଷ୍ମା" ବୋଲି କୁହାଯାଏ । ହିପୋକ୍ରେଟିସ୍ ଖ୍ରୀ: ପୂ: ୪୬୦ରୁ ୩୭୫ ମଧ୍ୟରେ ଏହି ରୋଗର ଲକ୍ଷଣଗୁଡ଼ିକ ବର୍ଣ୍ଣନା କରି ଏହାକୁ "ଥାଇସିସ୍" ବୋଲି କହିଥିଲେ । ମଧ୍ୟ ମନୁଙ୍କ ସମୟରେ ଏହି ରୋଗ ସଂକ୍ରାମକ ଓ ରୋଗୀକୁ ଏକ ଅସାମାଜିକ ଘୃଣ୍ୟ ଜୀବ ବୋଲି ମନେ କରାଯାଉଥିଲା ଓ ସ୍ୱତନ୍ତ୍ର ସାମାଜିକ ଆଇନ ପ୍ରଣୟନ କରି ଏହି ରୋଗୀ ଓ ତା'ର ପରିବାର ଲୋକମାନଙ୍କୁ ବାସନ୍ଦ କରାଯାଉଥିଲା । ଫରାସୀ ବୈଜ୍ଞାନିକ ଥିଓଡର୍ ଲେନେକ୍ ଡାକ୍ତରମାନଙ୍କର ରୋଗୀ ଦେଖା ଯନ୍ତ୍ର "ଷ୍ଟେଥିସ୍କୋପ୍" ଆବିଷ୍କାର କରିଥିଲେ ଏବଂ ଅନେକ ଯକ୍ଷ୍ମା ରୋଗୀଙ୍କର ମୃତ ଦେହକୁ ବ୍ୟବଚ୍ଛେଦ କରି ରୋଗର ନିଦାନ ଲକ୍ଷ୍ୟ କରି ନିଜେ ମଧ୍ୟ ସେହି ରୋଗର ଶିକାର ହୋଇଥିଲେ । ଯଦିଓ ଏହା ସଂକ୍ରାମକ ବୋଲି ମତ ଦେଇଥିଲେ, ଏହା ଏକ ସ୍ୱତନ୍ତ୍ର ଜୀବାଣୁକୃତ ବୋଲି ମତ ଦେଇ ପାରି ନଥିଲେ, କିନ୍ତୁ ରୋଗର ନିଦାନର ଏକକକୁ "ଟ୍ୟୁବରକୁଲ୍" ନାମରେ ଅଭିହିତ କରିଥିଲେ । ଏହି ଶବ୍ଦରୁ ଯକ୍ଷ୍ମାର ଇଂରାଜୀ ନାମ "ଟ୍ୟୁବରକୁଲୋସିସ୍" ଆବିର୍ଭୂତ ହୋଇଅଛି । ୧୮୬୫ ମସିହାରେ ଭିଲେମିନ୍ ନାମକ ବୈଜ୍ଞାନିକ ଯଦିଓ ଜୀବାଣୁକୁ ଚିହ୍ନଟ କରି ପାରି ନଥିଲେ, ତେବେ ସୁଦ୍ଧା ଜଣଙ୍କଠାରୁ ଏହା ଆଉ ଜଣକୁ ଡିଏଁ ବୋଲି ପ୍ରମାଣ କରି ପାରିଥିଲେ । ତେବେ ୧୮୮୨ ମସିହାରେ ସମସ୍ତ ସନ୍ଦେହର ଅବସାନ ଘଟାଇ ଜୀବାଣୁ ବିଜ୍ଞାନର ଜନ୍ମଦାତା ଯୋଗଜନ୍ମା ଜଣେ ଜର୍ମାନ୍ ଜୀବାଣୁ ବିଜ୍ଞାନବିତ୍ ଏହି ରୋଗ ଘଟାଉଥିବା ଜୀବାଣୁକୁ ଚିହ୍ନଟୀକରଣ କରି ଆଲୋକୀୟ ଦୂରବୀକ୍ଷଣ ଯନ୍ତ୍ର ଜରିଆରେ ଦେଖାଇ ଦେଇ ପାରିଥିଲେ ଓ ଶରୀର ବାହାରେ ଏହି ଜୀବାଣୁକୁ କୃତ୍ରିମ ମାଧ୍ୟମରେ ବଢ଼ାଇ ପାରିଥିଲେ, ଯାହାକୁ ଇଂରାଜୀରେ"CULTURE" ବୋଲି କୁହାଯାଏ । ଏହି ମହାନ୍ ବୈଜ୍ଞାନିକଙ୍କ ନାମ "ରବର୍ଟ କକ୍" (ROBERT KOCH) । ତାଙ୍କର ନାମ ଅନୁସାରେ ଏହି ବେମାରୀକୁ KOCH'S DISEASE (କକ୍ ବେମାରୀ) ବୋଲି କୁହାଯାଏ । ଯଦିଓ ୧୮୮୨ ମସିହାରେ ଏହି ରୋଗ ଏକ ଜୀବାଣୁକୃତ ବୋଲି ସ୍ୱୀକୃତ ହେଲା ଓ ରବର୍ଟ କକ୍ ନୋବେଲ୍ ପୁରସ୍କାର ଲାଭ କଲେ ୧୮୯୫ରେ ରଞ୍ଜନରଶ୍ମିର ଆବିଷ୍କାର ଓ ୧୯୨୧ରେ ବି: ସି: ଜି: ଟୀକାର ପ୍ରସ୍ତୁତି ଓ ୧୯୪୪ଠାରୁ ୧୯୮୦ ମଧ୍ୟରେ ଏ ରୋଗର ମହୌଷଧି ଆବିଷ୍କୃତ ହେବା ପରେ ଓ ସର୍ବୋପରି ୧୯୬୨ ମସିହାରେ ଜାତୀୟ ଯକ୍ଷ୍ମା ନିୟନ୍ତ୍ରଣ କାର୍ଯ୍ୟକ୍ରମର ଅନ୍ତଂଆରମ୍ଭ ପରେ ଏହି ରୋଗର ନିରାକରଣ କାହିଁକି ରୋଗର ମୂଳୋତ୍ପାଟନ ଅଚିରେ ସମ୍ଭବ ।

ଯକ୍ଷ୍ମା ରୋଗ ଏକ ଜୀବାଣୁକୃତ ରୋଗ । ଏହି ରୋଗର ଜୀବାଣୁର ନାମ "(MYCOBACTERIUM TUBERCULOSIS)" (ମାଇକୋ ବ୍ୟାକ୍ଟେରିଅମ୍ ଟ୍ୟୁବରକୁଲୋସିସ୍) । ଏହି ରୋଗ ଶତକଡ଼ା ୮୦ରୁ ୯୦ ଭାଗ ଫୁସ୍‌ଫୁସ୍ (LUNGS)ରେ ସଂକ୍ରମଣ ଘଟାଇଥାଏ । ଏହା ବ୍ୟତୀତ ମସ୍ତିଷ୍କ, ମସ୍ତିଷ୍କ ପରଦା, ଯକୃତ, ପ୍ଲୀହା, ହାଡ, ଗଣ୍ଠି, ବୃକକ୍, ଚର୍ମ, ଲାସିକା ଗ୍ରନ୍ଥି ଓ ଜନନେନ୍ଦ୍ରିୟଠାରେ ଏହି ସଂକ୍ରମଣ ଘଟିଥାଏ । ଏହି ସଂକ୍ରମଣ ମଣିଷ ଶରୀରକୁ ବିନ୍ଦୁ ସଂକ୍ରମଣ (DROPLET INFECTION) ଜରିଆରେ ପ୍ରବେଶ କରେ । ଯକ୍ଷ୍ମା ରୋଗୀ ଖାସିଲା ବେଳେ, କଥା କହିଲା ବେଳେ, ଛିଙ୍କିଲା ବେଳେ ତଥା ଖଙ୍କାର ବାହାର କରି ପଦାରେ ପକାଇବା ସମୟରେ ଲକ୍ଷ ଲକ୍ଷ ଜୀବାଣୁ ତାର ମୁଖ ଗହ୍ୱରରୁ ନିର୍ଗତ ହୋଇ ବାୟୁମଣ୍ଡଳରେ ମିଶି ଥାଆନ୍ତି । ଏଗୁଡ଼ିକ ତଳେ ବା ଚଟାଣରେ ଥିବା ସମୟରେ ଧୂଳି ମଇଳା ସାଙ୍ଗରେ ଶୁଖି ପବନରେ ଉଡ଼ନ୍ତି ଓ ପ୍ରଶ୍ୱାସ ବାୟୁରେ ମନୁଷ୍ୟ ଶରୀରରେ ପ୍ରବେଶ କରନ୍ତି । ଏହା ନାଶା ପଥ, ପ୍ରସବୀ, ସ୍ୱରପେଟିକା ଦେଇ ଶ୍ୱାସ ନଳୀରେ ପ୍ରବେଶ କରେ । ଶ୍ୱାସନଳୀ ବା TRACHEA ଡାହାଣ କଡ଼ ଫୁସ୍‌ଫୁସ୍‌ରେ ୧୦ଟି ଓ ବାମ କଡ଼ ଫୁସ୍‌ଫୁସ୍‌ରେ ୯ଟି, ଏପରି ୧୯ଟି ଶାଖାରେ ବିଭକ୍ତ ହୋଇ ପୁନର୍ବାର ବିଭାଜିତ ହୋଇ ଅସଂଖ୍ୟ

ଶ୍ଳେଷ୍ମନଳୀରେ ବିଭାଜିତ ହୁଅନ୍ତି । ଏହା ଏହି ଶ୍ଳେଷ୍ମନଳୀରେ ଯାଇ ବାୟୁକୋଷ ମଧ୍ୟରେ ପ୍ରବେଶ କରେ । ଫୁସ୍‌ଫୁସ୍‌ର ତନ୍ତୁରେ ଏହି ଜୀବାଣୁଗୁଡ଼ିକୁ ପ୍ରତିରୋଧ କରୁଥିବା ରକ୍ତକୋଷ ଦ୍ୱାରା ସେହି ତନ୍ତୁର କେନ୍ଦ୍ରସ୍ଥଳ ପଚିଯାଏ ଓ ଲସିକାଗ୍ରନ୍ଥିଗୁଡ଼ିକୁ ଲସିକା ବାହିନୀ ନଳୀରେ ଜୀବାଣୁ ଆସି ଫୁସ୍‌ଫୁସ୍‌ର ପ୍ରବେଶ ଦ୍ୱାରରେ ଥିବା ଲସିକା ଗ୍ରନ୍ଥି (LYMPHNODE)କୁ ସଂକ୍ରମିତ କରନ୍ତି । ଏହି ରୋଗର ସଂକ୍ରମଣ ମଧ୍ୟ ମୁଖ ଗହ୍ୱରରେ ଥିବା TONSIL (ମୁଖ ଗହ୍ୱରର ଶେଷ ସୀମାରେ ପଶ୍ଚିମର ଉଭୟ ପାର୍ଶ୍ୱରେ ଥିବା ୨ଟି ଟନ୍‌ସିଲ୍ ଯାହା "ଆ" ବୋଲି ଜିଭ ପଦାକୁ ବାହାର କରି କହିଲେ ଦୃଷ୍ଟ ହୁଏ) ଟନ୍‌ସିଲ୍‌ରେ ହୋଇଥାଏ ଅର୍ଥାତ୍ ସଂକ୍ରମଣ ଶରୀର ମଧ୍ୟକୁ ଟନ୍‌ସିଲ୍ ମାଧ୍ୟମରେ ପ୍ରବେଶ କରେ । ଚର୍ମରେ ଯଦି ଘା' ହୋଇଥାଏ ବା ଖଣ୍ଡିଆ ଖାବରା ହୋଇଥାଏ, ତାହା ମଧ୍ୟ ଦେଇ ସଂକ୍ରମଣ ପ୍ରବେଶ କରେ । ଚକ୍ଷୁ ଓ ଜନନେନ୍ଦ୍ରିୟ ମଧ୍ୟ ଦେଇ ଶରୀର ମଧ୍ୟକୁ ସଂକ୍ରମଣ ପ୍ରବେଶ କରେ, ତେବେ ପ୍ରଧାନତଃ ରୋଗୀର ଖଙ୍କାରରୁ ଜୀବାଣୁ ସୁସ୍ଥ ଲୋକର ଶରୀରରେ ପ୍ରବେଶ କରେ । ଗୋଟିଏ ଥର ଜୋରରେ କାଶିଲେ ହୁଏତ ୫୦,୦୦୦ ଯକ୍ଷ୍ମା ଜୀବାଣୁ ଶରୀରରୁ ନିର୍ଗତ ହୁଅନ୍ତି ।

ଏହି ରୋଗର ଲକ୍ଷଣ ସମ୍ପର୍କରେ ପ୍ରତ୍ୟେକ ବ୍ୟକ୍ତି ଅବଗତ ହେବା ନିତାନ୍ତ ଆବଶ୍ୟକ । ସାଧାରଣତଃ ଅସ୍ୱାସ୍ଥ୍ୟକର ପରିବେଶ ମଧ୍ୟରେ ନାଳ ବା ସନ୍ତସନ୍ତିଆ ସ୍ଥାନରେ ଅଳିଆ ଆବର୍ଜନା ମଧ୍ୟରେ ଝୁମ୍ପୁଡ଼ିରେ ରହୁଥିବା ବ୍ୟକ୍ତି ଯେଉଁମାନେ ଅଳ୍ପ ସ୍ଥାନରେ ଖୁନ୍ଦାଖୁନ୍ଦି ହୋଇ ରହନ୍ତି, ଆର୍ଥିକ ଅବସ୍ଥା ଯେଉଁମାନଙ୍କର ସ୍ୱଚ୍ଛଳ ନୁହେଁ ବା ପୁଷ୍ଟିକର ଖାଦ୍ୟ ଖାଆନ୍ତି ନାହିଁ, ଯେଉଁ କଳ କାରଖାନା ଓ ଶିଳ୍ପାଞ୍ଚଳରେ ଧାତବ ଗୁଣ୍ଡ, ଧୂଆଁ ଓ ଗ୍ୟାସ୍ ପ୍ରଭୃତି ରହୁଥାଏ ସେ ସବୁ ପରିବେଶ ଯକ୍ଷ୍ମା ସଂକ୍ରମଣ ପାଇଁ ଅତ୍ୟନ୍ତ ଅନୁକୂଳ । ଛୋଟ ଛୁଆମାନଙ୍କୁ ବଡ଼ମାନେ ବା ଆୟାମାନେ ବା ପଡ଼ୋଶୀମାନେ ମୁହଁରେ ମୁହଁ ଲଗାଇ ଖେଳ କରନ୍ତି । ଗୋଟିଏ ଘରେ ଜଣେ ରୋଗୀ ବା ଗୋଟିଏ ଅଞ୍ଚଳରେ ରୋଗୀ ରହିଲେ ଦହନ ପରି ସମସ୍ତ ଅଞ୍ଚଳରେ ସଂକ୍ରମଣ ବ୍ୟାପିଯାଏ । ଶିଶୁମାନଙ୍କ କ୍ଷେତ୍ରରେ ୩ବର୍ଷ ମଧ୍ୟରେ ଏହି ସଂକ୍ରମଣର ପ୍ରାଦୁର୍ଭାବ ଅଧିକ ଦେଖାଯାଏ । ଏହି ସଂକ୍ରମଣ ଦେହର ପ୍ରତିରକ୍ଷା ଶକ୍ତି ଉତ୍ତମ ଥିଲେ ଭଲ ହୋଇଯାଏ, କିନ୍ତୁ ଭବିଷ୍ୟତରେ ପୁନର୍ବାର ସେହି ସଂକ୍ରମଣ ପୂର୍ଣ୍ଣତା ପ୍ରାପ୍ତି ହୋଇ ପାରେ । ବିଦ୍ୟାଳୟରେ ପିଲାମାନେ ଏକତ୍ର ପାଠ ପଢ଼ନ୍ତି । ଛାତ୍ରାବାସରେ ଏକତ୍ର ରହନ୍ତି । ଜଣଙ୍କଠାରୁ ସଂକ୍ରମଣ ଆଉ ଜଣକୁ ଡେଇଁ ଥାଏ । ଫୁସ୍‌ଫୁସ୍‌ର ଯକ୍ଷ୍ମା ରୋଗକୁ ସାଧାରଣ ଭାବରେ ସମସ୍ତେ ଯକ୍ଷ୍ମା ରୋଗ ବୋଲି ଜାଣନ୍ତି । ଗୋଟିଏ ରୋଗୀର ଇତିହାସ ସଂଗ୍ରହ କରି, ତାର ବୟସ, ସ୍ଥାନ ଇତ୍ୟାଦି ଖବର ବୁଝି ତାର ସ୍ୱାସ୍ଥ୍ୟକୁ ଯନ୍ତ୍ର ପକାଇ ତନ୍ନ ତନ୍ନ କରି ଓ ରୋଗର ବା ରୋଗୀର ଲକ୍ଷଣକୁ ଆଖିରେ ରଖି ଡାକ୍ତର ବାବୁ ହୁଏତ ଯକ୍ଷ୍ମା ରୋଗର ସନ୍ଦେହ କରି ପାରନ୍ତି । ରୋଗୀର ଦେହରେ ଉତ୍ତାପ ରହେ । ତାକୁ ଜ୍ୱର ହୁଏ । ଦେହରୁ ଝାଳ ବାହାରେ । ଏହି ଜ୍ୱରକୁ ଯେତେ ରକମର ଔଷଧ ଦେଲେ ମଧ୍ୟ ଉପଶମ ହୁଏ ନାହିଁ । ସାଧାରଣତଃ ଠିକ୍ ଉପରବେଳା ଶେଷ ହୋଇ ସନ୍ଧ୍ୟା ହଉଥିବା ସମୟରେ ଜ୍ୱର ଆସେ । କେବେକେବେ ଜ୍ୱରର ତାପମାତ୍ରା ସର୍ବୋଚ୍ଚ ସୀମା ସ୍ପର୍ଶ କରେ । ଖାଇବାକୁ ଇଚ୍ଛା ହୁଏ ନାହିଁ । କୌଣସି କାମ କରିବାକୁ ଇଚ୍ଛା ହୁଏ ନାହିଁ । ଶିଶୁ ବା ପିଲା ନଖେଳି ନିସ୍ତେଜ ହୋଇ ପଡ଼ନ୍ତି ଓ ସବୁବେଳେ ମା'ମାନଙ୍କୁ ହଇରାଣ କରନ୍ତି । ନାଡ଼ିର ସ୍ପନ୍ଦନ ବା ବେଗର ହାର ବୃଦ୍ଧି ପାଏ । ରକ୍ତହୀନତା ବୃଦ୍ଧି ପାଏ । ଦେହ ଦୁର୍ବଳ ହୋଇଯାଏ । ଗାଲ ପାଚି ପଶିଯାଏ । ଛାତିର ପଞ୍ଜରା ହାଡ଼ ଦେଖାଯାଏ । ଓଜନ କମିଯାଏ । ନିଶ୍ୱାସ ମାରିଲା ବେଳେ ଧଇଁସଇଁ ଲାଗେ ବା ଶ୍ୱାସରୁଦ୍ଧ ହେଲା ପରି ମନେ ହୁଏ । ଲଗାତାର କାଶ କଫ ହୁଏ । ଏହା ହେଉଛି ସବୁଠାରୁ ସାଧାରଣ ତଥା ଗୁରୁତ୍ୱପୂର୍ଣ୍ଣ ଲକ୍ଷଣ । ଯଦି ଲଗାତାର ଭାବରେ ୩ ସପ୍ତାହରୁ ଅଧିକ କାଳ ରୋଗୀ ଖୁଁ ଖୁଁ ହୋଇ କାଶେ ବା ରୋଗୀର ସ୍ୱରରେ ପରିବର୍ତ୍ତନ ହୋଇଯାଏ ବା ତଣ୍ଟି ବସେ, ତାହାହେଲେ ଯକ୍ଷ୍ମା ରୋଗର ସନ୍ଦେହ କରାଯାଏ । କାଶିଲା ବେଳେ ଖଙ୍କାର ପଡ଼ିବାରେ ଅନେକ ସମୟରେ ଟିକେ ଟିକେ ରକ୍ତ ପଡ଼େ । ଅନେକ ସମୟରେ ଫୁସ୍‌ଫୁସ୍‌ରେ ରୋଗ ଜୀବାଣୁ ଘର ଗୁଡ଼ିକରେ ବିଶେଷ ଓ ରକ୍ତବାହିନୀ ନଳୀଗୁଡ଼ିକରେ କ୍ଷୟ ବା ଛିଡ଼ିଯିବା ଦ୍ୱାରା ଶ୍ୱାସନଳୀ ଦେଇ ତାଜା ରକ୍ତ ବାହାରେ, ଏପରିକି ଆଞ୍ଜୁଳା ଆଞ୍ଜୁଳା ରକ୍ତ ବାହାରି ଜଳଧାରା ପରି ବୋହିଯାଏ ଓ ରୋଗୀ ତା'ଉପରେ ପଡ଼ିଯାଏ । ଅନେକ ସମୟରେ ଛେପ ଖଙ୍କାର ଅଙ୍ଗରେ ପାନ ଛେପ ପରି ରକ୍ତ ପଡ଼ିଲେ ଲୋକେ ଭୟଭୀତ ହୋଇଯାଆନ୍ତି । ଅନେକ ସମୟରେ ଛୁରୀ ମାରିଲା ପରି ବା ଛୁଞ୍ଚିରେ ବିନ୍ଧିଲା ପରି ଯନ୍ତ୍ରଣା ହୁଏ । ଫୁସ୍‌ଫୁସ୍ ଉପରେ ଦୁଇସ୍ତର ବିଶିଷ୍ଟ ପରଦା ବା ଝିଲ୍ଲୀର ସଂକ୍ରମଣ ଫଳରେ ଏପରି ହୋଇଥାଏ । ଅନେକ ସମୟରେ ଏହି ୨ ସ୍ତର ମଧ୍ୟରେ ପାଣି, ପୂଜ ଓ ପବନ ଜମିଯାଏ । ଯେଉଁ ପାଖରେ ଜମେ ସେ ପାଖରେ ଛାତି ଫୁଲିଯାଏ ଓ ନିଶ୍ୱାସ ନେବା ସମୟରେ ଛାତିର ପ୍ରସାରଣ ଓ ସଙ୍କୋଚନ ହୁଏ ନାହିଁ । ମସ୍ତିଷ୍କର ଯକ୍ଷ୍ମା ଜୀବାଣୁ ଦ୍ୱାରା ସଂକ୍ରମଣ ଫଳରେ ସ୍ନାୟୁଗତ ନିଦାନ ସୃଷ୍ଟି ହୁଏ ଓ ବେକ ବଙ୍କା ହୋଇଯାଏ । ପିଲାମାନଙ୍କର ଏହା ଅଧିକ ହୋଇଥାଏ । ହଠାତ୍ ଜ୍ୱର ୧୦୩° ବା ୧୦୪° ଫାରେନ୍‌ହିଟ୍ ହୋଇଯାଏ । ଶିଶୁ ବାନ୍ତି କରେ । ଆମେ ସାଧାରଣ ଭାବରେ ଯେପରି ଆମର ଥୋଡ଼ିକୁ ଛାତିରେ ଲଗାଇ ପାରୁଛୁ ସେପରି ଶିଶୁ ଲଗେଇ ପାରେ ନାହିଁ । ବେକ ପଛକୁ ବଙ୍କେଇ ହୋଇଯାଏ । ରୋଗୀକୁ ଚିତ୍ କରି ଶୁଆଇ ଆଣ୍ଠୁଠାରେ ଗୋଡ଼ ଭାଙ୍ଗି ଜଙ୍ଘକୁ ପେଟରେ ଲଗାଇଲେ ଗୋଡ଼ ୯୦° ବାଙ୍କେ ନାହିଁ । ଅନେକ ସମୟରେ ପିଲାମାନଙ୍କର ବେକରେ ୨ ପାଖରେ ବା ପଛ ପାଖରେ ଠିକ୍ ବୋଲି ପରି ବା ଗୁଆ ପରି ଗୋଟେ ବା ଏକା ଧାଡ଼ିରେ କେତେଗୁଡ଼ିଏ ଲସିକାଗ୍ରନ୍ଥି ବଡ଼ ହୋଇଯାଏ । ପ୍ରଥମେ ଏଗୁଡ଼ିକ ଇତସ୍ତତ କରିହୁଏ । ତାପରେ ସବୁ ମିଶି ଗୋଟା ପରି ହୋଇଯାଏ । ଏଗୁଡ଼ିକର ମୁହଁ ବାହାରି ସେ ବାଟରେ ପୂଜ ବାହାରେ । ଆଦୌ ଶୁଖେ ନାହିଁ । ମେରୁ ହାଡ଼ରେ ଯକ୍ଷ୍ମା ହୋଇ ମେରୁଦଣ୍ଡରେ ହାଡ଼ର ଦେହଗୁଡ଼ିକ ମିଶିଯାଏ । ରୋଗୀ କୁଜା ହୋଇଯାଏ । ଅଣ୍ଟାରେ ହାଡ଼ରେ ଏହି ସଂକ୍ରମଣ ହୋଇ ଜଙ୍ଘ ହାଡ଼ରେ ମୁଣ୍ଡ ଖଣ୍ଡିଆରୁ ଖସିଯାଏ । ଯକ୍ଷ୍ମା ଦ୍ୱାରା ନଷ୍ଟ ତନ୍ତୁ ଓ ଯକ୍ଷ୍ମା ଜୀବାଣୁ ଯେତେବେଳେ ରକ୍ତନଳୀ ଦ୍ୱାରା ସାରା ଦେହରେ ବହିଯାଏ, ରୋଗୀର ଅବସ୍ଥା ସଙ୍କଟାପନ୍ନ ହୋଇଥାଏ । ସମଗ୍ର ଫୁସ୍‌ଫୁସ୍‌ରେ ସାଗୁ ଦାନା ପରି ଉଠାଣି ବାହାରି ପଡ଼େ । ରଞ୍ଜନ ରଶ୍ମି ଦ୍ୱାରା ବା ଛାତିର ଫଟୋରେ ଏହା ସ୍ପଷ୍ଟ ବାରି ହୁଏ ଓ ଏହାକୁ "ଦାନାଦାର ଯକ୍ଷ୍ମା" ବା "ମିଲିଆରୀ ଟ୍ୟୁବରକୁଲୋସିସ୍" ବୋଲି କୁହାଯାଏ । ଶିଶୁମାନଙ୍କର ମିଳିମିଳା ତଥା ଲହରା କାଶ ହେଲେ ପ୍ରତିରୋଧ ଶକ୍ତି ହ୍ରାସ ପାଇ ଏହି ବେମାରୀ ହୋଇଥାଏ । ମଧୁମେହ ବା ଡାଇବେଟିସ୍ (DIABETES) ହେଲେ ରୋଗୀକୁ ଯକ୍ଷ୍ମା ସଂକ୍ରମଣ ହେବା ସ୍ୱାଭାବିକ୍ । ଜନନେନ୍ଦ୍ରିୟ ତଥା ବୃକ୍‌କରେ ଏହି ସଂକ୍ରମଣ ହେଲେ ପରିସ୍ରା ବହୁଥର ଦେଖାଏ ଓ ପରିସ୍ରାର ରଙ୍ଗ ଓ ରାସାୟନିକ ପରିବର୍ତ୍ତନ ହୁଏ । ରକ୍ତ ଓ ପୂଜ ଅଂଶ ବାହାରେ । ସ୍ତ୍ରୀ ଲୋକମାନଙ୍କର ଡିମ୍ବକୋଷ ଓ ଜରାୟୁ ସଂଲଗ୍ନ ନଳୀଟି ବନ୍ଦ ହୋଇଯାଏ ଓ ସେ ବନ୍ଧ୍ୟା ହୋଇଯାଏ । ଋତୁସ୍ରାବରେ ପରିବର୍ତ୍ତନ ଘଟେ ।

ଯେ କୌଣସି ବ୍ୟକ୍ତିଠାରେ ରୋଗର ଲକ୍ଷଣ ପରିଲକ୍ଷିତ ହେଲେ, ତାକୁ କେତେଗୁଡ଼ିଏ ପରୀକ୍ଷା କରିବାକୁ ହୋଇଥାଏ । ରୋଗୀକୁ ତାର କଫ ବା ଖଙ୍କାର (SPUTUM) ପରୀକ୍ଷା କରିବାକୁ କୁହାଯାଏ । ରୋଗୀ ଡାକ୍ତରଙ୍କ ଉପସ୍ଥିତିରେ କଫ କାଢ଼ିଦିଏ ବା ସନ୍ଧ୍ୟାରୁ ସକାଳ ବା ୨୪ ଘଣ୍ଟା କାଳ କଫ ଶିଶିରେ ଭର୍ତ୍ତିକରି ଆଣିଦିଏ । ତାକୁ ସ୍ଲାଇଡ୍‌ରେ ରଞ୍ଜିତ କରି ପରୀକ୍ଷା କରାଯାଏ । ଯକ୍ଷ୍ମା ରୋଗ ଜୀବାଣୁଗୁଡ଼ିକ ଥରେ ରଞ୍ଜିତ ହେଲା ପରେ ଏହାକୁ ଏସିଡ୍ ଦ୍ୱାରା ଧୋଇହୁଏ ନାହିଁ । ସେଥିପାଇଁ ଏହି ଯକ୍ଷ୍ମା ଜୀବାଣୁଗୁଡ଼ିକୁ "ଏସିଡ୍ ଫାଷ୍ଟ ବ୍ୟାସିଲାଇ" (ACID FAST BACILLUS) ବୋଲି କୁହାଯାଏ । ଏଗୁଡ଼ିକ ନାଳିଆ. ରୋଗ

ନିଶ୍ଚିତ ହେଉଥିବାରୁ । କଫରେ ଯଦି ଏହା ବାହାରେ ତାହାହେଲେ ରୋଗୀ ଯକ୍ଷ୍ମା ରୋଗଗ୍ରସ୍ତ ଏଥିରେ ସନ୍ଦେହ ନାହିଁ । ଛାତିର ଫଟୋ ଉଠାଯାଏ । ଯକ୍ଷ୍ମା ରୋଗ ଜନିତ ଫୁସ୍‌ଫୁସ୍‌ର ତନ୍ତୁ ଯେଉଁ ଯାଗାରେ ନଷ୍ଟ ହୋଇଯାଏ ତା ଦେହରେ ପବନ ରହେ ନାହିଁ ଓ ଫଟୋରେ ଧଳା ଦେଖାଯାଏ । ଛେନା ଛିଣ୍ଡିଲା ପରି ଧଳା ଦେଖାଯାଏ ଓ ଗର୍ତ୍ତ ସୃଷ୍ଟି ହୋଇଥିବାର ଦେଖାଯାଏ । ଏଗୁଡ଼ିକୁ ଡାକ୍ତରମାନେ "CAVITY" (କାଭିଟି) ବୋଲି କହନ୍ତି । ଅନେକ ସମୟରେ ଫୁସ୍‌ଫୁସ୍‌ର ବାହ୍ୟ ଆବରଣ ଉଭୟ ସ୍ତର ମଧ୍ୟରେ ପାଣି, ପବନ ଓ ପୂଜ ମିଶିଗଲେ ତାହା ଫଟୋରେ ଦେଖାଯାଏ । ଶିଶୁମାନଙ୍କର ଦେହରେ ସଂକ୍ରମଣ ଫଳରେ ଅତିସମ୍ବେଦନଶୀଳତା ବା ଆଲର୍ଜି ସୃଷ୍ଟି ହୁଏ । ତାଙ୍କର ହାତର ଉପରେ ମଧ୍ୟ ଭାଗରେ ଯକ୍ଷ୍ମା ଜୀବାଣୁଗୁଡ଼ିକରୁ ସଂଗୃହିତ ପ୍ରୋଟିନ୍ (P. P. D.) ଚର୍ମ ତଳେ ଫୋଡ଼ାଯାଏ, ଯାହାକୁ ଟ୍ୟୁବରକୁଲିନ୍ ପରୀକ୍ଷା ବା ମନଟୁକ୍ ପରୀକ୍ଷା (MONTOUS TEST) ବୋଲି କୁହାଯାଏ । ଏହାର ୪୮ ଘଣ୍ଟା ପରେ ଏହି ସ୍ଥାନ କେତେ ଫୁଲିଛି ମପାଯାଏ । ଶିଶୁମାନଙ୍କ କ୍ଷେତ୍ରରେ ଅର୍ଥାତ୍ ୫ ବର୍ଷରୁ କମ୍ ଶିଶୁମାନଙ୍କର ଏହା ପଜିଟିଭ୍ ହେଲେ ସଂକ୍ରମଣର ସମ୍ଭାବନାକୁ ଏଡ଼ାଇ ଦେଇ ହୁଏ ନାହିଁ । ତେବେ ଶିଶୁ ଯଦି ବି. ସି. ଜି. ଟୀକା ନେଇଥାଏ ଏହା ଦିଆଯାଏ ନାହିଁ । ଦେଲେ ସଂକ୍ରମଣ ନଥାଇ ମଧ୍ୟ ଫୁଲେ ବା ଫୋଟକା ପରି ହୋଇଯାଏ ବା ପଜିଟିଭ୍ ହୋଇଯାଏ । ଛୋଟ ପିଲାମାନଙ୍କର ଖଙ୍କାର ବାହାରୁ ନଥିବାରୁ ଜୀବାଣୁଯୁକ୍ତ କାଠି ତାର ସ୍ୱର ପେଟିକାରେ ପୁରାଇ ତାକୁ ପରୀକ୍ଷା କରାଯାଏ । କଫରେ ଯଦି ସାଧାରଣ ଆଲୋକୀୟ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ କଫ ନବାହାରେ ତାହାହେଲେ ତାକୁ ପ୍ରାୟୋଗିକ ମାଧ୍ୟମରେ ନିମ୍ନ ତାପମାତ୍ରାରେ ବଢ଼ାଯାଏ, ଯାହାକୁ ଇଂରାଜୀରେ "CULTURE" ବୋଲି କହନ୍ତି । ୧ ସି. ସି. କଫରେ ୧୦,୦୦୦ରୁ କମ୍ ଜୀବାଣୁ ଥିଲେ ତାହା ଅଣୁବୀକ୍ଷଣ ଯନ୍ତ୍ର "MICROSCOPE"ରେ ଦେଖାଯାଏ ନାହିଁ । ତେବେ CULTURE ଦ୍ୱାରା ଏହା ଧରାପଡ଼େ । ରଞ୍ଜନରଶ୍ମିର ବହୁ ଆଧୁନିକ ପରୀକ୍ଷା ଦ୍ୱାରା ସ୍ୱତନ୍ତ୍ର ଭାବରେ ଫୁସ୍‌ଫୁସ୍‌ରେ କୌଣସି ଅଂଶ ଦେଖୁ ହେଉଛି । ଏହା ଛଡ଼ା ରକ୍ତ, ଝାଡ଼ା ଓ ପରିସ୍ରା ମଧ୍ୟ ପରୀକ୍ଷା କରାଯାଏ । ଲସିକା ଗ୍ରନ୍ଥିର ତନ୍ତୁ ଓ ଅନ୍ୟାନ୍ୟ ଅଙ୍ଗର ତନ୍ତୁ ତଥା ରସକୁ ମଧ୍ୟ ପରୀକ୍ଷା କରି ଜୀବାଣୁ ଚିହ୍ନଟୀକରଣ କରାଯାଏ ।

୧୯୬୨ ମସିହାରେ ଭାରତରେ ଜାତୀୟ ଯକ୍ଷ୍ମା ନିରାକରଣ ଯୋଜନା ଆରମ୍ଭ କରାଗଲା । ପ୍ରତ୍ୟେକ ଜିଲ୍ଲା ସଦର ମହକୁମାରେ ଜିଲ୍ଲା ଯକ୍ଷ୍ମା ନିରାକରଣ କେନ୍ଦ୍ର ଥାଏ । ଏଠାରେ ରୋଗୀର ନାମ ରେଜିଷ୍ଟ୍ରିଭୁକ୍ତ କରାଯାଏ । ଏଠାରେ ଫଟୋ ଉଠାଇବା, କଫ ପରୀକ୍ଷା କରିବା, ଟ୍ୟୁବରକୁଲିନ୍ ପରୀକ୍ଷା କରିବା, ବିଶେଷଜ୍ଞଙ୍କ ଦ୍ୱାରା ସ୍ୱାସ୍ଥ୍ୟ ପରୀକ୍ଷା କରାଇବା ତଥା ମାସୁଆରୀ ମାଗଣା ଔଷଧ ନେବା ଓ ବି. ସି. ଜି. ଟୀକା ଶିଶୁକୁ ଦେବାର ବ୍ୟବସ୍ଥା ଅଛି । ଯଦି ଜିଲ୍ଲାର ବିଭିନ୍ନ ସ୍ଥାନରେ ଶାଖା ଥାଏ ତେବେ ଜିଲ୍ଲାର ବିଭିନ୍ନ ଅଞ୍ଚଳରୁ ରୋଗୀମାନଙ୍କୁ ସେଠାକୁ ପଠାଯାଏ । ରାଜ୍ୟର ଯେ କୌଣସି ସ୍ଥାନରେ ରୋଗୀ ଚିକିତ୍ସିତ ହେଲେ ମଧ୍ୟ ରୋଗୀକୁ ତାର ନାମ ଏଠାରେ ରେଜିଷ୍ଟ୍ରିଭୁକ୍ତ କରିବାକୁ ହୁଏ । ଏହାଦ୍ୱାରା ରୋଗୀ ବଞ୍ଚିଥିବା ପର୍ଯ୍ୟନ୍ତ ତାର ବିବରଣୀ ଚିକିତ୍ସିତ ଏଠାରେ ରହେ । ରୋଗୀକୁ ଗୋଟିଏ ନମ୍ବର ମିଳିଥାଏ ଓ କର୍ମଚାରୀ ଏମାନେ ତାର ଦାୟିତ୍ୱ ନିଅନ୍ତି । ଯଦି କଫରେ ଜୀବାଣୁ ଥିଲେ ରୋଗୀକୁ ଖଟିଆ ମିଳିଥାଏ । ସେ ତାର ଘର ଲୋକଙ୍କଠାରୁ ଅଲଗା ରହେ । ଆଜିକାଲି ରୋଗ ଜୀବାଣୁ ଶରୀରରେ ଥାଇ ମଧ୍ୟ ରୋଗୀ ଘରେ ରହି ଚିକିତ୍ସିତ ହୋଇ ପାରିବ ବୋଲି କୁହାଯାଉଛି । ଏହାକୁ ଘରୋଇ ଚିକିତ୍ସା ବା "DOMICILLIARY TREATMENT" ବୋଲି କୁହାଯାଏ । ଯଦିଓ ୧୮୮୨ ମସିହାରେ ଏହା ଏକ ଜୀବାଣୁଜନିତ ରୋଗ ବୋଲି ଜଣାଗଲା, ତେବେ ସୁଦ୍ଧା ୧୯୪୪ ପର୍ଯ୍ୟନ୍ତ ଏହାର କୌଣସି ଚିକିତ୍ସା ପଦ୍ଧତି ଆବିଷ୍କୃତ ହୋଇ ନଥିଲା । ୧୯୪୪ ମସିହାରେ "ଷ୍ଟ୍ରେପ୍‌ଟୋମାଇସିନ୍" (STREPTOMY-CIN) ୧୯୪୬ ମସିହାରେ "ପାସ୍" (PAS) ଓ ବିଶେଷ କରି ୧୯୫୨ରେ ଆଇ. ଏନ୍. ଏଚ୍. ଆବିଷ୍କୃତ ହେବା ପରେ ୧୯୬୨ ମସିହାରେ ଜାତୀୟ ଯକ୍ଷ୍ମାନିରାକରଣ କାର୍ଯ୍ୟକ୍ରମ ଆରମ୍ଭ ହେଲା । ୧୯୫୩ ମସିହାରେ "ପାଇରାଜିନାମାଇଡ୍" (PYRAZINAMIDE), ୧୯୬୧ରେ "ଇଥାମ୍ବ୍ୟୁଟଲ୍" (ETHAMBUTOL) ଓ ୧୯୬୬ ମସିହାରେ "ରିଫାମ୍ପିସିନ୍" (RIFAMPICIN) ଆବିଷ୍କୃତ ହେଲା । ପ୍ରଥମେ ଦୀର୍ଘ ମିଆଦି ସୂତ୍ରରେ ଚିକିତ୍ସା କରାଯାଉଥିଲା । ପ୍ରଥମ ୩ ମାସରେ ପ୍ରତ୍ୟହ ଏକାଧିକ ଔଷଧ ଦେଇ ତାପରେ ଦେଢ଼ ବର୍ଷ ପ୍ରତ୍ୟହ ଦୁଇଟି କରି ଔଷଧ ଦିଆଯାଉଥିଲା । ଯକ୍ଷ୍ମା ରୋଗର ସର୍ବାଧୁନିକ ଚିକିତ୍ସା ପଦ୍ଧତି ହେଲା "ସ୍ୱଳ୍ପ କାଳୀନ ଯକ୍ଷ୍ମା ରୋଗ ଚିକିତ୍ସା ପଦ୍ଧତି" (SHORT COURSE CHEMOTHERAPY) । ବର୍ତ୍ତମାନ ଯକ୍ଷ୍ମା ରୋଗ ବିରୁଦ୍ଧରେ ବ୍ୟବହାର କରାଯାଉଥିବା ଔଷଧଗୁଡ଼ିକୁ ଦୁଇ ଭାଗରେ ବିଭକ୍ତ କରାଯାଉଛି । ପ୍ରଥମ ଶ୍ରେଣୀ ହେଉଛି ଜୀବାଣୁ ଧ୍ୱଂସୀ (BACTERICIDAL) ଅର୍ଥାତ୍ ଯକ୍ଷ୍ମା ଜୀବାଣୁକୁ ସମ୍ପୂର୍ଣ୍ଣ ଭାବେ ଧ୍ୱଂସ କରିଦିଏ । ଏଗୁଡ଼ିକ ହେଲା – ରିଫାମ୍ପିସନ୍ (RIFAMPI-SIN), ଆଇ. ଏନ୍. ଏଚ୍. (I. N. H.), ଷ୍ଟ୍ରେପ୍‌ଟ୍ରୋମାଇସିନ୍ (STREPTROMYCIN) ଓ ପାଇରାଜିନାମାଇଡ୍ (PYRAZI-NAMIDE) । ଦ୍ୱିତୀୟ ଶ୍ରେଣୀଭୁକ୍ତ ଔଷଧ ହେଲା ଯିଏକି ଜୀବାଣୁର ବଂଶ ବୃଦ୍ଧିକୁ ରୋକିଦିଏ (BACTERIO-STATIC) । ଏଗୁଡ଼ିକ ହେଲା – ଇଥାମ୍ବ୍ୟୁଟଲ୍, ପାସ୍ ଓ ଥାଇଓସିଟାଜୋନ୍ । ଆଜିକାଲି ୨୪ ମାସ ବଦଳରେ ଏକାଧିକ ଜୀବାଣୁ ଧ୍ୱଂସୀ ଔଷଧ ଦିଆଯାଇ ୬ ମାସରୁ ୯ ମାସ ମଧ୍ୟରେ ରୋଗୀକୁ ସମ୍ପୂର୍ଣ୍ଣ ଭାବେ ଜୀବାଣୁମୁକ୍ତ କରାଯାଉଛି । ଯକ୍ଷ୍ମା ରୋଗ ଚିକିତ୍ସା କ୍ଷେତ୍ରରେ ପ୍ରଧାନ ପ୍ରତିବନ୍ଧକ ସୃଷ୍ଟି ହେଉଛି DRUG RESISTANCE ଅର୍ଥାତ୍ ଔଷଧକୁ ଉପେକ୍ଷା କରି ଜୀବାଣୁ ବଢ଼ି ଚାଲନ୍ତି । ଏହାର କାରଣ କେବଳ ଗୋଟିଏ ଔଷଧ ଦେବା, ଅନିୟମିତ ଭାବେ ଔଷଧ ଖାଇବା ଓ ଠିକ୍ ଭାଗ ମାପରେ ନଖାଇବା ବା ରୋଗୀର ପ୍ରତ୍ୟକ୍ଷ ସମ୍ପର୍କରେ ଆସିବା । ତେବେ ସ୍ୱଳ୍ପକାଳୀନ ଯକ୍ଷ୍ମା ଚିକିତ୍ସା ପଦ୍ଧତି ଦ୍ୱାରା ଏହା ଦୂରହୋଇ ଗଲାଣି । ଏହାଦ୍ୱାରା ରୋଗୀ ଜୀବାଣୁମୁକ୍ତ ହୋଇପାରୁଛି । ତେଣୁ ସଂକ୍ରମଣ ଅନ୍ୟମାନଙ୍କୁ ହେବାର ସମ୍ଭାବନା କମିଯାଉଛି । ଏହାଦ୍ୱାରା ରୋଗର ମୂଳୋତ୍ପାଟନ ଅଚିରେ ସମ୍ଭବ । ପୂର୍ବେ ଯେତେବେଳେ ଏହି ରୋଗର ଚିକିତ୍ସା ପଦ୍ଧତି ଜଣା ନଥିଲା, ଲୋକମାନେ ସ୍ୱାସ୍ଥ୍ୟନିବାସ ବା ସାନାଟୋରିୟମ୍ ଚିକିତ୍ସା ଉପରେ ନିର୍ଭର କରୁଥିଲେ । ଜନବସତିରୁ ବହୁ ଦୂରରେ ଝରଣା କୂଳରେ, ଖୋଲା ପବନରେ ପ୍ରାଚୁର୍ଯ୍ୟ, ଦାମିକା ପୁଷ୍ଟିକର ଖାଦ୍ୟ, ବ୍ୟାୟାମ, ଘୋଡ଼ା ଦୌଡ଼, ସମୁଦ୍ର ସ୍ନାନ, ସମୁଦ୍ର ବିହାର, ଛେଳି ଦୁଗ୍ଧ ପାନ, ତେଲ ମୂଳ ଭକ୍ଷଣ ଉପରେ ରୋଗ ଚିକିତ୍ସା ନିର୍ଭର କରୁଥିଲା । ବାଇରନ୍, ସେଲି, କିଟ୍‌ସ୍, ରାମାନୁଜମ୍, ମହମ୍ମଦ ଆଲ୍ଲୀ ଜିନ୍ନା, ବ୍ରୋଣ୍ଟ୍ ଭଗିନୀବୃନ୍ଦ ଓ କମଳା ନେହେରୁ ଏହି ଯକ୍ଷ୍ମା ରୋଗରେ ମୃତ୍ୟୁବରଣ କରିଥିଲେ । ବର୍ତ୍ତମାନ ସ୍ୱଳ୍ପକାଳୀନ ଚିକିତ୍ସା ପଦ୍ଧତି ଫଳରେ ରୋଗର ଚିକିତ୍ସା ପଦ୍ଧତି ଆବିଷ୍କୃତ ହୋଇପାରିଛି ସତ, କିନ୍ତୁ ରୋଗର ପ୍ରସାରକୁ ରୋକିବା, ଦୁଆର ଦୁଆର ବୁଲି ରୋଗର ଚିହ୍ନଟୀକରଣ କରିବା ଏକ ଜଟିଳ ବ୍ୟାପାର । ଉପଯୁକ୍ତ ସ୍ୱାସ୍ଥ୍ୟ ଶିକ୍ଷାର ପ୍ରସାରର ଅଭାବ, ଅଜ୍ଞତା, ଅନ୍ଧବିଶ୍ୱାସ, ସାମାଜିକ କୁସଂସ୍କାର ଲାଗି କେତେକ ରୋଗ ଲୁକ୍କାୟିତ ଅଛନ୍ତି । ରୋଗ ପୁରୁଣା ହୋଇ ଶରୀରରେ ଫୁସ୍‌ଫୁସ୍ ବା ଅନ୍ୟ ଅଂଶର କ୍ଷତି କଲାପରେ ରୋଗୀର ଚିକିତ୍ସା ସମସ୍ୟାଜନକ ହୋଇପଡ଼େ । ଅନେକ ବ୍ୟକ୍ତି ଅମୁକ ଅବସ୍ଥାରେ ବା ମସିହାରେ ମୋତେ ବା ତାଙ୍କୁ ରୋଗ ହୋଇଥିଲା ଓ ଭଲ ହୋଇଗଲା ବୋଲି ଯାହା କୁହନ୍ତି ତାହା ମୂଲ୍ୟହୀନ । ଗୋଟିଏ ମାତ୍ର ବା ଅଧିକ ଜୀବାଣୁ ନିଶ୍ଚିତ ଭାବେ ସକ୍ରିୟ ଅବସ୍ଥାରେ ରୋଗୀର ଚିକିତ୍ସା ପରେ ରହିବା ସ୍ୱାଭାବିକ । ଅନୁକୂଳ ଅବସ୍ଥାରେ ତାହାର ବହୁଗୁଣ ନଘଟି ପୁନଶ୍ଚ ରୋଗ ଘଟାଇଥାଏ ।

ସାରା ବିଶ୍ବରେ ରୋଗର ପ୍ରତିଷେଧର ହିସାବରେ ବି. ସି. ଜି. ଟୀକା ଆଦୃତ ହୋଇଅଛି । "ବି" ଅର୍ଥ ଜୀବାଣୁ ବା ବ୍ୟାସିଲସ୍, "ସି" ଓ "ଜି" ଯଥାକ୍ରମେ ୨ ଫରାସୀ ବୈଜ୍ଞାନିକ "କାଲ୍‌ମେଟ୍" ଓ "ଗେରିନ୍"ଙ୍କର ନାମ । ଦୀର୍ଘ ୧୩ ବର୍ଷ ୨୩୧ କ୍ରମର ବା ବଂଶାନୁକ୍ରମିକ ବିଜ୍ଞାନର ସୂତ୍ର ଅନୁସାରେ ଜୀବାଣୁକୁ ବଢ଼ାଇ ପଶୁ ଦେହରେ ସୃଷ୍ଟି କରୁଥିବା ଯକ୍ଷ୍ମା ଜୀବାଣୁ ଏହି ଟୀକା ପ୍ରସ୍ତୁତ କରିଥିଲେ । ୧୯୨୧ ମସିହାରେ ଏହା ପ୍ରସ୍ତୁତ କରାଗଲା । ଏଗୁଡ଼ିକରେ ପଶୁ ଦେହରେ ରୋଗ ରାଗ ସୃଷ୍ଟି କରୁଥିବା ଯକ୍ଷ୍ମା ଜୀବାଣୁ ଜୀବନ୍ତ ଅବସ୍ଥାରେ ଥାନ୍ତି କିନ୍ତୁ ଏଗୁଡ଼ିକର ଦୁଷ୍ଟ ପ୍ରକୃତିକୁ ନଷ୍ଟ କରିଦିଆଯାଏ । ଏଗୁଡ଼ିକ କାଚ ଆମ୍ପୁଲ୍‌ରେ ଶୀତଳୀକରଣ ପାଉଡର୍ ଆକାରରେ ଥାଏ ଓ ଆଲୋକଠାରୁ ଦୂରରେ ବରଫ ମଧ୍ୟରେ ରଖାଯାଏ । ଏହା ମଧ୍ୟରେ ଜୀବାଣୁମୁକ୍ତ ଲୁଣପାଣି ମିଶାଇ ବାହୁ ଦିଆଯାଏ । ଶିଶୁର ଜନ୍ମର ପରେ ଏହାକୁ ଦିଆଯାଏ, ଦେ ଜନସାଧାରଣଙ୍କୁ ଲୁଚ୍ଛା ଦିଆଯାଉଛି ଯେ, ଯେ କୌଣସିମତେ ଯକ୍ଷ ପୁରିବା ଆଗରୁ ଶିଶୁକୁ ଏହା ଦିଆଯାଏ ।

ମାର୍ଫତ୍ : ଦେବକାନ୍ତ ମିଶ୍ର,
ରେଭେନ୍‌ସା କଲେଜ୍,
କଟକ—୩ ।

ଏହା ସନ୍ଦେହଜନକ ଯଦି କେହି ହିନ୍ଦୁ ସ୍ଵାମୀ ବିବେକାନନ୍ଦଙ୍କର ନାମ ଜାଣିନଥାଏ । ଊନବିଂଶ ଶତାବ୍ଦୀରେ ଜଡ଼ ବିଜ୍ଞାନର ଅତ୍ୟଧିକ ପ୍ରଗତି ହୋଇଥିଲା । ଏଭଳି ପରିସ୍ଥିତିରେ ହଜାର ହଜାର ବର୍ଷ ଧରି ଭାରତରେ ପ୍ରଚଳିତ ଆଧ୍ୟାତ୍ମିକ ବିଜ୍ଞାନକୁ ସୁନ୍ଦର ଭାବରେ ପରିବେଷଣ କରି ଏବଂ ତଦ୍ଦ୍ୱାରା ପାଶ୍ଚାତ୍ୟ ଦେଶର ବିଦ୍ୱାନମାନଙ୍କ ମଧ୍ୟରେ ଭାରତ ପ୍ରତି ସଶ୍ରଦ୍ଧ ଦୃଷ୍ଟି ଓ ସମ୍ମାନ ଜାଗ୍ରତ କରିବା ଏବଂ ତତ୍ ସଙ୍ଗେ ସଙ୍ଗେ ଆଧ୍ୟାତ୍ମିକ ବିଜ୍ଞାନର ଜନନୀ ଭାରତ ପ୍ରତି ସହାନୁଭୂତି ସଂପନ୍ନ ଦୃଷ୍ଟିଭଙ୍ଗୀ ସୃଷ୍ଟି କରିବା ଅତିମାନୁଷିକ ଶକ୍ତି ବଳରେ ହିଁ ସମ୍ଭବ । ଇଂରାଜୀ ଶିକ୍ଷା ଫଳରେ ଜଡ଼ ବିଜ୍ଞାନର ବନ୍ୟା ଏଭଳି ଭାବରେ ପ୍ରବାହିତ ହେଲା ଯେ ତାହା ପ୍ରତିରୋଧ କରି ଗତିପଥ ପରିବର୍ତ୍ତନ କରିବା ପାଇଁ ଅତ୍ୟଧିକ ସାହସ ଏବଂ ଅତ୍ୟଧିକ ପ୍ରଜ୍ଞାର ଆବଶ୍ୟକତା ଥିଲା । ଏହି ଘଟଣା ବିରୁଦ୍ଧରେ ଛିଡ଼ା ହେବାପାଇଁ ଏବଂ ଏହାର ଦିଗ ପରିବର୍ତ୍ତନ କରିବା ପାଇଁ ସ୍ଵାମୀ ବିବେକାନନ୍ଦଙ୍କ ପୂର୍ବରୁ ବ୍ରହ୍ମବିଦ୍ୟା ସମିତି ଏହି କାର୍ଯ୍ୟ ଆରମ୍ଭ କରି-ଥିଲା କିନ୍ତୁ ଏହା ନିର୍ଦ୍ଦ୍ୱନ୍ଦରେ କୁହାଯାଇପାରେ ଯେ ସ୍ଵାମୀ ବିବେକାନନ୍ଦ ସର୍ବ ପ୍ରଥମେ ହିନ୍ଦୁ ଧର୍ମର ବୈଜୟନ୍ତୀ ପାଶ୍ଚାତ୍ୟ ଦେଶର ଜଡ଼ ବିଜ୍ଞାନ ବିରୁଦ୍ଧରେ ଉଡ଼ାଇ ଥିଲେ । ........ସ୍ଵାମୀ ବିବେକାନନ୍ଦ ନିଜ ଉପରେ ଏହି ବିରାଟ ଭାର ବହନ କରି ହିନ୍ଦୁ ଧର୍ମର ଗୌରବ ଭାରତ ବାହାରେ ବିଭିନ୍ନ ଦେଶରେ ସ୍ଥାପନ କରିଥିଲେ ଏବଂ ସେ ଏହା ତାଙ୍କର ପାଣ୍ଡିତ୍ୟ ବାଗ୍ମୀତା ଉତ୍ସାହ, ଏବଂ ଅନ୍ତର୍ନିହିତ ଶକ୍ତି ବଳରେ ଏହାର ଦୃଢ଼ ଭିତ୍ତି ସ୍ଥାପନ କରିପାରିଥିଲେ । ଦ୍ୱାଦଶ ଶତାବ୍ଦୀ ପୂର୍ବରୁ ଶଙ୍କରାଚାର୍ଯ୍ୟ ହେଉଛନ୍ତି ସେହି ବିରାଟ ବ୍ୟକ୍ତିତ୍ୱ, ଯେ କେବଳ ଆମ ଧର୍ମର ପବିତ୍ରତା ବିଷୟରେ କହି ନଥିଲେ, ଯେ କେବଳ କଥାରେ ଏହି ଧର୍ମ ଆମର ଶକ୍ତି ଓ ସଂପଦ ବୋଲି କହି ନଥିଲେ, ଯେ କେବଳ କଥାରେ ଏହା ହେଉଛି ଆମର ପବିତ୍ର କର୍ତ୍ତବ୍ୟ ଓ ଏହି ଧର୍ମକୁ ପୃଥିବୀର ସର୍ବତ୍ର ପ୍ରଚାର କରିବା ଉଚିତ ବୋଲି କହି ନ ଥିଲେ ବରଂ ଏହାକୁ କାର୍ଯ୍ୟରେ ପରିଣତ କରିଥିଲେ । ସ୍ଵାମୀ ବିବେକାନନ୍ଦ ସେହି ଭଳି ଏକ ମହାନ ବ୍ୟକ୍ତି—ଯେ ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧରେ ଆବିର୍ଭୂତ ହୋଇଥିଲେ ।

ବାଳ ଗଙ୍ଗାଧର ତିଳକ

OGP—VI/P.T.S. (I. & P. R.) 1—6,000—5-5-1990



ଅମ୍ବେଦକରଙ୍କ ଶତବାର୍ଷିକୀ ପାଳନ ଉପଲକ୍ଷେ ଭୁବନେଶ୍ୱର 'ସୂଚନା ଭବନ'ରେ ଆୟୋଜିତ ସମାରୋହରେ ରାଜ୍ୟପାଳ ଶ୍ରୀ ଯଜ୍ଞଦତ୍ତ ଶର୍ମା



ବାଲେଶ୍ୱରରେ ଓଡ଼ିଶା ପ୍ରଶାସନିକ ସେବାର ସଦସ୍ୟମାନଙ୍କୁ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଉଦ୍‌ବୋଧନ

VOL. XLVI No. 10 UTKAL PRASANGA Regd. No. O-05/90

Licence No. C.R.N.P. 5—Licenced to post without Pre-Payment



ଲଣ୍ଡନର ବକିଂହମ୍ ପେଲେସ୍‌ରେ ରାଷ୍ଟ୍ରପତି ଆର୍. ଭେଙ୍କଟରମଣ ଏବଂ କମନ୍‌ୱେଲ୍‌ଥ୍ ସେକ୍ରେଟେରୀ ଜେନେରାଲ୍ ସାର୍ ସୋନି ରାମ୍‌ଫାଲ୍ ଆଳାପରତ

PRINTED AT ORISSA GOVERNMENT PRESS, CUTTACK


ପୁରାଣ ପ୍ରସଙ୍ଗ
ରଥଯାତ୍ରା ବିଶେଷାଙ୍କ